# ଧର୍ମର ଉର୍ଦ୍ଧ୍ୱରେ

ଅନୁବାଦ ଓ ରଚନା
ଧନେଶ୍ୱର ସାହୁ



ଧର୍ମର ଊର୍ଦ୍ଧ୍ୱରେ

ଅନୁବାଦ ଓ ରଚନା :
**ଧନେଶ୍ୱର ସାହୁ**
ପ୍ରାଧ୍ୟାପକ, ଦର୍ଶନ ବିଭାଗ
ଢେଙ୍କାନାଳ ମହାବିଦ୍ୟାଳୟ, ଢେଙ୍କାନାଳ

ପ୍ରକାଶକ :
**ଇନଷ୍ଟିଚ୍ୟୁଟ ଅଫ୍ ଓରିଏଣ୍ଟାଲ ଏଣ୍ଡ ଓରିଶାନ ଷ୍ଟଡ଼ିଜ**
ଦି ୟୁନିଭର୍ସ, ମୈତ୍ରୀ ସରଣୀ, କଟକ-୧

ପ୍ରଥମ ସଂସ୍କରଣ : **୨୦୦୦**



ମୁଦ୍ରଣ :
**ଦି ପ୍ରିଣ୍ଟୋଭର୍ସ**
ମୈତ୍ରୀ ସରଣୀ, କଟକ-୧

ମୂଲ୍ୟ : **୩୫ ଟଙ୍କା** (ପଞ୍ଚତିରିଶ ଟଙ୍କା ମାତ୍ର)

**DHARMARA URDHWARE**

Translation and author :
**Dhaneswar Sahoo**
Reader, Deptt. of Philosophy
Dhenkanal College, Dhenkanal

Publisher :
**Institute of Oriental and Orissan Studies**
The Universe, Maitree Sarani, Cuttack-1

First Edition : **2000**



Price : **Rs. 35/- (Thirtyfive only)**

ଆମ ସଂସାରର ଅନେକ ସୁନ୍ଦର ବସ୍ତୁ ହେଉଛି
ମେହନତୀ ମଣିଷ ହାତର କରାମତି.......
ଲହୁ ଲୁହ ବିନିମୟରେ, ଯେଉଁମାନେ
ସେମାନଙ୍କର ବିଚାର ଓ ମେହନତଦ୍ୱାରା
ଏ ସଂସାରକୁ ସୁନ୍ଦର କରିବାକୁ
ପ୍ରୟାସ କରି ଆସୁଛନ୍ତି
ସେହିମାନଙ୍କ ହାତରେ
ଏହି ପୁସ୍ତକଟିକୁ
ଉତ୍ସର୍ଗ କରୁଛି ।

— ଲେଖକ

# ସୂଚୀପତ୍ର





# ମୁଖବନ୍ଧ

ଚଳିତ ବର୍ଷ 'ଦି ୟୁନିଭର୍ସ' ଦ୍ୱାରା ଆୟୋଜିତ ''ବିଶ୍ୱନୀଡ଼ ବକ୍ତୃତାମାଳା''କୁ ମୁଁ ନିମନ୍ତ୍ରିତ ହୋଇ ସେଠାରେ ଦୁଇଟି ପ୍ରବନ୍ଧ ପାଠ କରିଥିଲି । ସେହି ଅବସରରେ ପଠିତ ପ୍ରବନ୍ଧ ଦୁଇଟି ସହ ଅନ୍ୟ କେତୋଟି ପ୍ରବନ୍ଧକୁ ମିଶାଇ ଏକ ପୁସ୍ତକ ପ୍ରକାଶ କରିବାକୁ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ମୋତେ କହିଲେ ଓ ଦି ୟୁନିଭର୍ସ ଦ୍ୱାରା ପୁସ୍ତକଟିର ପ୍ରକାଶନ ହେବ ବୋଲି ପ୍ରତିଶ୍ରୁତି ଦେଲେ । କଥା ପ୍ରସଙ୍ଗରେ କେତେକ ବିଶିଷ୍ଟ ଲେଖକଙ୍କର କିଛି ଇଂରାଜୀ ପ୍ରବନ୍ଧର ଓଡ଼ିଆ ଅନୁବାଦ ବିଷୟ ମଧ୍ୟ ଆମେ ଆଲୋଚନା କରିଥିଲୁ । ଏହି ପୁସ୍ତକଟି ପାଞ୍ଚୋଟି ଇଂରାଜୀ ପ୍ରବନ୍ଧର ଅନୁବାଦ ସହିତ ବକ୍ତୃତାମାଳାର ମୋର ପ୍ରବନ୍ଧ ଦୁଇଟି ମିଶାଇ ଏବେ ଆମ୍ଭ ପ୍ରକାଶ କରିବାକୁ ଯାଉଛି ।

ପ୍ରତି ଯୁଗରେ କେତେକ ପ୍ରଗତିଶୀଳ ବିଚାରକ ସମାଜର ପ୍ରଚଳିତ ବିଶ୍ୱାସ ଓ ମୂଲ୍ୟବୋଧ ଉପରେ ଗଭୀର ଚିନ୍ତା ପ୍ରକଟ କରିଥାନ୍ତି । ସମାଜର ପାରମ୍ପରିକ ଜୀବନଧାରା ଓ ବୌଦ୍ଧିକ ଆଦର୍ଶଚୟ ଉପରେ ଗଭୀର ଅନୁଶୀଳନ କରି ସେମାନେ ନୂଆ ଚିନ୍ତନର ମାର୍ଗ ଦେଖାଇଥାନ୍ତି । ଜୀବନର ଗୁଣାତ୍ମକ ବିକାଶ କ୍ଷେତ୍ରରେ ଏହି ନୂତନ ବିଚାର ବେଳକେ ପଥପ୍ରଦର୍ଶକ ହୋଇଥାଏ । ବୌଦ୍ଧିକ ଓ ବୈଚାରିକ ଆଲୋଡ଼ନ ଜରିଆରେ ସଭ୍ୟତାର ରଥକୁ ସେମାନେ ଆଗେଇ ନେଇଥାନ୍ତି ।

ଯୁଗ ଯୁଗ ଧରି ଧର୍ମ, ଈଶ୍ୱର ଇତ୍ୟାଦି ପାରଲୌକିକ ଭାବନା ସାମାଜିକ ନିୟନ୍ତ୍ରଣ କ୍ଷେତ୍ରରେ ମୁଖ୍ୟ ଭୂମିକା ନେଇ ଆସିଛି । କିନ୍ତୁ ୟୁରୋପୀୟ ପୁନର୍ଜାଗରଣ ଓ ନବସଂସ୍କାର ଯୁଗର ପରବର୍ତ୍ତୀ ସୋପାନରେ ଯେଉଁ ବୈଜ୍ଞାନିକ କ୍ରିୟାଶୀଳତାର ଉଦ୍ଭବ ହେଲା ତାହା ବୈଚାରିକ ସ୍ତରରେ ନୂତନ ଆଲୋଡ଼ନ ଆଣିବା ସହ ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଜୀବନଧାରାରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ କରାଇଲା । ପରିଣାମତଃ ଧର୍ମ ଓ ଧର୍ମ ସହ ସଂଶ୍ଳିଷ୍ଟ ଥିବା ପାରଲୌକିକ ବିଶ୍ୱାସ ପ୍ରତି ସନ୍ଦେହର ବୀଜ ବପନ ହେଲା । ବିଚାରଶୀଳତାର ସାର୍ବଭୌମ ମହତ୍ତ୍ୱ ଅଧିକରୁ ଅଧିକ ଚିନ୍ତାରାଜ୍ୟରେ ଗୃହୀତ ହେବା ସହ ଧର୍ମଗ୍ରନ୍ଥର ବାଣୀ ଯେ ଅକାଟ୍ୟ ଓ ଶାଶ୍ୱତ ଏହାକୁ ସନ୍ଦେହ ଦୃଷ୍ଟିରେ ଦେଖାଗଲା । ମୁକ୍ତ ମନ ନେଇ ଧର୍ମଧାରଣାଗୁଡ଼ିକୁ ବିଶ୍ଳେଷଣ ଓ ସମୀକ୍ଷା କରି କେତେକ ଦାର୍ଶନିକ ସେସବୁର

ତ୍ରୁଟି ବିଚ୍ୟୁତି ବ୍ୟକ୍ତ କରିବାକୁ ଲାଗିଲେ । ଧର୍ମର ପ୍ରଭାବ କ୍ଷେତ୍ରରେ ଭଟ୍ଟା ଆସିବା ସହ ଧର୍ମନିରପେକ୍ଷତାକୁ ସଭ୍ୟ ଜୀବନଧାରାର ଅବିଚ୍ଛେଦ୍ୟ ଅଙ୍ଗ ଭାବରେ ଗ୍ରହଣ କରାଗଲା ।

ଧର୍ମୀୟ ମାନଦଣ୍ଡରୁ ସାମାଜିକ ବିକାଶଧାରାକୁ ପ୍ରାକ୍ ଧର୍ମୀୟ (pre religious), ଧର୍ମୀୟ (religious), ଧର୍ମ ନିରପେକ୍ଷୀୟ (secular) ଓ ଧର୍ମୋତ୍ତର (Post religious) ଏପରି ବିଭାଜନ କରାଯାଏ । ଆଗାମୀ ବିଶ୍ୱ ଏକ ଧର୍ମୋତ୍ତର ସମାଜ ଦିଗରେ ଅଗ୍ରଗତି କରୁଛି ବୋଲି କେତେକ ମତବ୍ୟକ୍ତ କରିଥାନ୍ତି । ସାଂପ୍ରତିକ ପରିସ୍ଥିତିରୁ ଏହି ଅନୁମାନ କରାଯାଉଛି । ସଂପ୍ରତି ଆନ୍ତର୍ଜାତିକ ମନୋଭାବ ଓ ସାର୍ବଜନୀନ ଦୃଷ୍ଟିକୋଣର ଦ୍ରୁତ ବିକାଶ ଘଟୁଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିଜ୍ଞାନ ସମଗ୍ର ବିଶ୍ୱକୁ ବାସ୍ତବପକ୍ଷେ ଗୋଟିଏ ପରିବାରରେ ପରିଣତ କରିବା ପାଇଁ ପରିବେଶ ସୃଷ୍ଟି କରିପାରିଛି । ପରିଣାମତଃ ଧର୍ମ ପରିବର୍ତ୍ତେ ମାନବତାବାଦ ଓ ସମ୍ବେଦନଶୀଳ ଆଭିମୁଖ୍ୟ ସକଳ ମୂଲ୍ୟବୋଧର ଯେ ଆଧାର ହେବ ଏହା ଆଶା କରାଯାଇପାରେ ।

ଆମ ସଂସାରରେ ବହୁ ମଣିଷ ଧର୍ମ ଓ ଈଶ୍ୱର ଭାବନାକୁ ଜୀବନର ଶ୍ରେୟ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଦେଇଥାନ୍ତି । କିନ୍ତୁ ସମାଜର କେତେକ କ୍ରାନ୍ତିକାରୀ ଚିନ୍ତାନାୟକ ଧର୍ମ ଓ ଈଶ୍ୱରଙ୍କୁ ବାଦ୍‌ଦେଇ ଯେଉଁ ଶୁଦ୍ଧି ମାନବିକ ସଂପ୍ରୀତିର ଜୟଗାନ କରିଛନ୍ତି ଓ ସତ୍ୟାଧାରିତ ମୂଲ୍ୟଚୟକୁ ସାମାଜିକ ଶ୍ରେୟ ଭାବରେ ନେଇଛନ୍ତି ତାହା ପ୍ରକୃତରେ ମହତ୍ତର ଜୀବନ ଓ ଆନ୍ତର୍ବ୍ୟକ୍ତିକ ସମ୍ବନ୍ଧ କ୍ଷେତ୍ରରେ ନୂତନ ଦିଗନ୍ତର ସନ୍ଧାନ ଦେଇଥାଏ ।

ଏହି ପୁସ୍ତକଟିରେ ଯେଉଁ ଲେଖକମାନଙ୍କର ପ୍ରବନ୍ଧର ଅନୁବାଦ ସ୍ଥାନ ପାଇଛି ସେମାନେ ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ଊଣା ଅଧିକେ ପ୍ରାୟ ପରିଚିତ । 'ମୁଁ କାହିଁକି ନିରୀଶ୍ୱରବାଦୀ' (Why I am an Atheist) ର ଲେଖକ ଭଗତ ସିଂହ ଭାରତୀୟ ଜାତୀୟ ଆନ୍ଦୋଳନର ଜଣେ ବିପ୍ଳବୀ ଯୋଦ୍ଧା ଯେ କି ମାତ୍ର ୨୩ ବର୍ଷ ବୟସରେ ଫାଶୀ ଖୁଣ୍ଟରେ ଝୁଲିଥିଲେ । ଏହି ତରୁଣଙ୍କର ଜୀବନ ଦୀପ ଅକାଳରେ ପ୍ରଶମିତ ହୋଇଯାଇଥିଲେ ବି ତାଙ୍କ ଚିନ୍ତାର ଯେଉଁ ଝଲକ ତାଙ୍କର ଅଳ୍ପ କେତେକ ଲେଖାରେ ବ୍ୟକ୍ତ ହୋଇଛି ତାହା ତାଙ୍କୁ ସ୍ୱାଧୀନ ବିଚାରର ବିକାଶ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନ ଦେଇପାରିଛି । ଡଃ ରମେନ୍ଦ୍ର ଯାହାଙ୍କର ପ୍ରବନ୍ଧ ( ୧ ) ମୁଁ କାହିଁକି ହିନ୍ଦୁ ନୁହେଁ (Why I am not a Hindu) ଓ ( ୨ ) ମୁଁ କାହିଁକି ରାମରାଜ୍ୟ ଚାହେଁ ନାହିଁ (Why I do not want Ramrajya) ଏହି ପୁସ୍ତକରେ ସ୍ଥାନ ପାଇଛି, ପାଟଣା ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗରେ ଜଣେ ପ୍ରତିଭାବାନ ଅଧ୍ୟାପକ । ବିହାର ବୁଦ୍ଧିବାଦୀ ଫାଉଣ୍ଡେସନ ନାମରେ ଏକ ସଂଗଠନ ପ୍ରତିଷ୍ଠା କରି ହେତୁବାଦ ଓ ମାନବବାଦର ପ୍ରସାର ପାଇଁ ଉତ୍ସର୍ଗୀକୃତ ଭାବେ ସେ କାର୍ଯ୍ୟ କରୁଛନ୍ତି । ଦୁଇଥର ନୋବେଲ ପୁରସ୍କାର ପ୍ରାପ୍ତ ରସେଲ ବିଂଶ ଶତାବ୍ଦୀର ଜଣେ ଖ୍ୟାତିସଂପନ୍ନ ଦାର୍ଶନିକ ଭାବରେ ଆନ୍ତର୍ଜାତିକ ସ୍ତରରେ ସୁପରିଚିତ । ତାଙ୍କର ଦୁଇଟି ପ୍ରବନ୍ଧ ( ୧ ) ମୁଁ କାହିଁକି ଖ୍ରୀଷ୍ଟିଆନ ନୁହେଁ (Why I am not a Christian) ଓ ( ୨ ) ଜଣେ ହେତୁବାଦୀର ବିଶ୍ୱାସ (The

Faith of a Rationalist) ଏଥିରେ ସ୍ଥାନ ପାଇଛି । ରସେଲ ତାଙ୍କର ପ୍ରଥମ ପ୍ରବନ୍ଧଟିର ଭାବନାକୁ ବିସ୍ତାର କରି ପରେ ଏକ ପୁସ୍ତକ "Why I am not a Christian" ଲେଖିଛନ୍ତି ଯାହା ସ୍ୱାଧୀନ ବିଚାରର ବିକାଶ କ୍ଷେତ୍ରରେ ଏକ ଅନବଦ୍ୟ କୀର୍ତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରତ୍ୟେକ ଧର୍ମରେ ସଂସ୍କାରକ ରହିଛନ୍ତି ଯେଉଁମାନେ ଧର୍ମର ପରିଧିଟି ଭିତରେ ରହି ଧର୍ମର ଅନ୍ଧବିଶ୍ୱାସକୁ ପରିବର୍ତ୍ତନ କରିବାକୁ ପ୍ରୟାସ କରିଛନ୍ତି । ସେହିମାନଙ୍କର ସଂସ୍କାରଧର୍ମୀ ଭାବନା ସେମାନଙ୍କର ସମସାମୟିକ ସମାଜରେ ପ୍ରଗତିଶୀଳ ଭାବନାର ସୂତ୍ରପାତ କରିବାରେ ସହାୟକ ହୋଇଛି । କିନ୍ତୁ ସଂପ୍ରତି ଧର୍ମକୁ ପ୍ରତ୍ୟାଖ୍ୟାନ କରି ମାନବିକ ସଂପ୍ରୀତି ଆଧାରରେ ସାଂସ୍କୃତିକ ଉତ୍ତୋରଣର ଏକ ନୂତନ ଦିଗନ୍ତ ସୃଷ୍ଟି ହୋଇଛି । ବୈଚାରିକ ସ୍ତରରେ ଏହି ନୂତନ ଆଲୋଡ଼ନଟି ନାନା ସମ୍ଭାବନାର ସ୍ୱାକ୍ଷର ବହନ କରେ ।

ରସେଲଙ୍କର ''ମୁଁ କାହିଁକି ଖ୍ରୀଷ୍ଟିଆନ ନୁହେଁ'' ପୁସ୍ତକଟି ପ୍ରକାଶ ପାଇବା ପରେ ବିଭିନ୍ନ ଧର୍ମ ପରମ୍ପରାର ପ୍ରଗତିଶୀଳ ଲେଖକମାନେ ନିଜ ଧର୍ମ ବିରୁଦ୍ଧରେ ମଧ୍ୟ ସ୍ୱର ଉତ୍ତୋଳନ କରିଛନ୍ତି । ମୋ ଜାଣିବାରେ ଡଃ ରମେନ୍ଦ୍ରଙ୍କ ପ୍ରବନ୍ଧ ପରି ଦଳିତ ସାମାଜିକ ପରିବେଶରୁ ଆସିଥିବା ଜଣେ ବୁଦ୍ଧିଜୀବୀ, କାଞ୍ଚା ଇଲାୟା ''ମୁଁ କାହିଁକି ହିନ୍ଦୁ ନୁହେଁ'' (Why I am not a Hindu) ନାମରେ ଏକ ଚମତ୍କାର ପୁସ୍ତକ ଲେଖିଛନ୍ତି । ସେହିପରି ଇବନ ୱାରକ ''ମୁଁ କାହିଁକି ମୁସଲମାନ ନୁହେଁ'' (Why I am not a Muslim) ନାମରେ ଏକ ପୁସ୍ତକ ଆମେରିକାରେ ପ୍ରକାଶ କରିଛନ୍ତି । ସଂପ୍ରତି ତାରିକ୍ ଇସମେଲ୍ ନାମକ ଅନ୍ୟ ଜଣେ ବ୍ୟକ୍ତି ସେହି ଶିରୋନାମାରେ (Why I am not a Muslim) ଏକ ପୁସ୍ତକ ମଧ୍ୟ ଫ୍ରାନ୍ସରେ ପ୍ରକାଶ କରିଛନ୍ତି । ଉଭୟ ପୁସ୍ତକର ବିବରଣୀ ଜାଣିବାର ଅବକାଶ ପାଇଥିଲେ ମଧ୍ୟ ଏହି ବହି ଦୁଇଟି ପଢ଼ିବାର ସୌଭାଗ୍ୟ ମୁଁ ଏପର୍ଯ୍ୟନ୍ତ ପାଇ ନାହିଁ । ମୋଟ ଉପରେ ପୃଥିବୀର ବିଭିନ୍ନ ଧର୍ମରେ ଯେ ପ୍ରଗତିଶୀଳ ଚିନ୍ତାନାୟକମାନେ ନିଜ ନିଜ ପରିସରରେ ବୌଦ୍ଧିକ ଜାଗରଣ ପାଇଁ ପ୍ରୟାସ କରୁଛନ୍ତି ଏହା ଆମ ବୌଦ୍ଧିକ ଉତ୍ତୋରଣର ସ୍ୱାକ୍ଷର ବହନ କରେ !

ଓଡ଼ିଆରେ ଏହି ବହିଟି ପ୍ରକାଶ କରିବାରେ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ସବୁଠାରୁ ଅଧିକ ଆଗ୍ରହ ପ୍ରକାଶ କରିଛନ୍ତି । ତାଙ୍କୁ ଏହି ଅବସରରେ ମୋର କୃତଜ୍ଞତା ଜ୍ଞାପନ କରୁଛି । ମୋର ପାଣ୍ଡୁଲିପିଟିକୁ ଶୁଦ୍ଧ ନକଲ କରିବାରେ ମୋର ସ୍ତ୍ରୀ ପ୍ରତିମାଙ୍କର ସହଯୋଗ ପାଇଁ ମୁଁ ତାଙ୍କୁ ଧନ୍ୟବାଦ ଦେଉଛି । ରସେଲଙ୍କର ଦର୍ଶନ ସମ୍ବନ୍ଧରେ ଅଧ୍ୟାପକ ବନ୍ଧୁ ଡଃ କୈଳାସ ଚନ୍ଦ୍ର ଦାଶଙ୍କ ସହ ଆଲୋଚନାରେ ମୁଁ ଉପକୃତ ହୋଇଥିବାରୁ ତାଙ୍କୁ ମଧ୍ୟ ଆନ୍ତରିକ ଧନ୍ୟବାଦ୍ ଦେଉଛି ।

ଏହି ପୁସ୍ତକଟି ଓଡ଼ିଶାର ସୁଧୀ ପାଠକମାନଙ୍କଦ୍ୱାରା ଆଦୃତ ହେଲେ ମୁଁ ଆନନ୍ଦିତ ହେବି ।

**ଧନେଶ୍ୱର ସାହୁ**

# ମୁଁ କାହିଁକି ନିରୀଶ୍ୱରବାଦୀ

**ଭଗତ ସିଂହ**

ଏକ ନୂତନ ପ୍ରଶ୍ନ ଉଠିଛି । କ'ଣ ଅହଂକାରର ବଶବର୍ତ୍ତୀ ହୋଇ ମୁଁ ଏକ ସର୍ବଶକ୍ତିମାନ, ସର୍ବଜ୍ଞ ଓ ସର୍ବବିଦ୍ୟମାନ ଈଶ୍ୱରଙ୍କର ଅସ୍ତିତ୍ୱକୁ ବିଶ୍ୱାସ କରୁନାହିଁ ? ଏହି ପ୍ରକାର ଏକ ପ୍ରଶ୍ନର ଯେ ଦିନେ ସମ୍ମୁଖୀନ ହେବାକୁ ପଡ଼ିବ ଏହା ମୋର କଳ୍ପନାରେ ମଧ ନ ଥିଲା । କିନ୍ତୁ କେତେକ ବନ୍ଧୁମାନଙ୍କ ସହ ସ୍ୱଚ୍ଛ ସମ୍ବନ୍ଧ ଓ କିଞ୍ଚିତ ଆଲୋଚନା ଭିତରେ ସେମାନେ ମତ ଦେଇଥିଲେ ଯେ ଈଶ୍ୱରଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରିବା ମୋ ପାଇଁ ଠିକ୍ ନୁହେଁ ଓ ମୋର ଏହି ଅବିଶ୍ୱାସ ପଶ୍ଚାତରେ ମୋର କିଛିଟା ଅହମିକା ରହିଛି । ପ୍ରଶ୍ନଟି ନିଶ୍ଚୟ ଗୁରୁତର । ମୋ ଭିତରେ ଯେ ମାନବିକ ଦୋଷ ଦୁର୍ବଳତା ନାହିଁ ତାହା ନୁହେଁ । ମୁଁ ଜଣେ ସାଧାରଣ ମଣିଷ ଓ ସମସ୍ତ ମାନବିକ ଦୁର୍ବଳତା ମୋର ରହିଛି । ହୁଏତ ମୋର ସ୍ୱଭାବରେ ଗର୍ବ ବା ଅହମିକା ଥାଇପାରେ । ଏପରିକି ମୋର କେତେକ ସଂଗ୍ରାମୀ ବନ୍ଧୁ ମୋତେ କିଛିଟା ସ୍ୱେଚ୍ଛାଚାରୀ ମନେ କରୁଥିଲେ । ମୋର ବନ୍ଧୁ ବି.କେ. ଦତ୍ତ ବେଳେବେଳେ ମୋତେ ସେପରି କହୁଥିଲେ । ମୁଁ ଅନିଚ୍ଛାକୃତ ଭାବେ ମୋର ମତାମତକୁ ଅନ୍ୟମାନଙ୍କ ଉପରେ ଲଦିଦେଇ ମୋର ପ୍ରସ୍ତାବକୁ ଗ୍ରହଣ କରାଇନିଏ ବୋଲି କେତେକ ଗୁରୁତର ଅଭିଯୋଗ ମୋ ବିରୁଦ୍ଧରେ ବନ୍ଧୁମାନେ କରିଥାନ୍ତି । ଏହି ଅଭିଯୋଗରେ ମଧ କିଛିଟା ସତ୍ୟତା ରହିଛି ଓ ମୁଁ ଏହା ଅସ୍ୱୀକାର କରୁନାହିଁ । ଏହା ଅବଶ୍ୟ ଏକ ଆତ୍ମମ୍ଭରିତା । ଆମର ମତବାଦ ଅନ୍ୟ କେତେକ ସାଧାରଣ ମତବାଦଠାରୁ ପୃଥକ ହେବା ପୃଷ୍ଠଭୂମିରେ ମୋ ଭିତରେ କିଛି ଅହଂକାର ହୁଏତ ରହିଛି । କିନ୍ତୁ ଏହା ବ୍ୟକ୍ତିଗତ ଗର୍ବ ବା ଆତ୍ମଶ୍ଳାଘା ନୁହେଁ । ଆମ ଗୋଷ୍ଠୀର ମତକୁ ଗ୍ରହଣ କରିବା କ୍ଷେତ୍ରରେ ମୋ ଭିତରେ ସ୍ୱାଭିମାନ ରହିଛି ଓ ଏହା ଅହଂକାର ନୁହେଁ । ଗର୍ବ ବା ଅହଙ୍କାର ନିଜର ଅଯଥା ଆତ୍ମବନ୍ଦିମା ବା ବାହାଦୁରୀ ବ୍ୟକ୍ତ କରିବା ସହିତ ସମ୍ପୃକ୍ତ । ପ୍ରକୃତରେ ମୁଁ ଗର୍ବର [illegible] ।

ନିରୀଶ୍ୱରବାଦୀ ହୋଇଛି ନା କିଛି ଗଭୀର ଅଧ୍ୟୟନ ଓ ଏ ପ୍ରସଙ୍ଗ ଉପରେ ନିଷ୍ଠାପର ଚିନ୍ତନ ମଧ୍ୟଦେଇ ଈଶ୍ୱରଙ୍କର ଅସ୍ତିତ୍ୱକୁ ଅବିଶ୍ୱାସ କରୁଛି, ମୁଁ ଏଠାରେ ଆଲୋଚନା କରିବାକୁ ଯାଉଛି । ମୁଁ ପ୍ରଥମରୁ ଏହା ସ୍ପଷ୍ଟ କରିବା ଠିକ୍ ହେବ ଯେ ସ୍ୱାଭିମାନ ଓ ଅହଂକାର ପରସ୍ପରଠାରୁ ଭିନ୍ନ ଅଟେ ।

ପ୍ରଥମତଃ ଗର୍ବ ବା ଅହଂକାର ଈଶ୍ୱର ବିଶ୍ୱାସ କ୍ଷେତ୍ରରେ କିପରି ଅନ୍ତରାୟ ତାହା ମୁଁ ବୁଝିପାରୁନାହିଁ । କୌଣସି ବ୍ୟକ୍ତି ପ୍ରତିଭାବାନ ନ ହୋଇ କିମ୍ବା ସାମାଜିକ ପ୍ରତିଷ୍ଠା ପାଇଁ ଯେଉଁ ଗୁଣ ଆବଶ୍ୟକ ତାହାର କୌଣସି ଅଧିକାରୀ ନ ହୋଇ ଯଦି ସମାଜରେ ଜନପ୍ରିୟତା ହାସଲ କରେ ତେବେ ସେହି ବ୍ୟକ୍ତି ଜଣେ ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କର ପ୍ରତିଭାକୁ ଅସ୍ୱୀକାର କରିପାରେ । ଏହା ମୁଁ ବେଶ୍ ଅନୁଭବ କରୁଛି । କିନ୍ତୁ ଜଣେ ଈଶ୍ୱରବିଶ୍ୱାସୀ ବ୍ୟକ୍ତି ଅହମିକାପୂର୍ଣ୍ଣ ହେଲେ କିପରି ତାର ଈଶ୍ୱର ବିଶ୍ୱାସ ହରାଇବ ? ଏହା ଦୁଇଟି ସମ୍ଭାବନାଦ୍ୱାରା ସମ୍ଭବ ହୋଇପାରେ, ହୁଏତ ସେହି ବ୍ୟକ୍ତି ନିଜକୁ ଈଶ୍ୱରଙ୍କର ପ୍ରତିଦ୍ୱନ୍ଦ୍ୱୀ ବୋଲି ଭାବିପାରେ କିମ୍ବା ସେ ନିଜେ ହିଁ ଈଶ୍ୱର ବୋଲି ବିଶ୍ୱାସ କରିବାକୁ ଆରମ୍ଭ କରେ । କିନ୍ତୁ ଏହା ଭିତରୁ କୌଣସି ସମ୍ଭାବନାରେ ମଧ୍ୟ ସେ ନିରୀଶ୍ୱରବାଦୀ ହୁଏ ନାହିଁ ।

ପ୍ରଥମ ସମ୍ଭାବନା କ୍ଷେତ୍ରରେ ସେ ତାର ଜଣେ ପ୍ରତିଦ୍ୱନ୍ଦ୍ୱୀଙ୍କୁ ଅସ୍ୱୀକାର କରେ ନାହିଁ । ଦ୍ୱିତୀୟ କ୍ଷେତ୍ରରେ ପ୍ରାକୃତିକ କ୍ରିୟାଶୀଳତା ପଶ୍ଚାତରେ ଏକ ସଚେତନ ସତ୍ତାର ହାତ ରହିଥିବା କଥାକୁ ସେ ଗ୍ରହଣ କରେ । ସେ ନିଜକୁ ଏକ ପରମ ସତ୍ତା ବୋଲି ଭାବୁ କିମ୍ବା ସେହି ପରମ ସତ୍ତା ତାହାଠାରୁ ପୃଥକ ବୋଲି ଗ୍ରହଣ କରୁ, କୌଣସି କ୍ଷେତ୍ରରେ ସେ ଜଣେ ସଚ୍ଚା ନିରୀଶ୍ୱରବାଦୀ ହୁଏ ନାହିଁ । ଏକ ପରମ ସତ୍ତାରେ ମୌଳିକତଃ ବିଶ୍ୱାସ ରଖିବା ଦ୍ୱାରା ଜଣେ ନିରୀଶ୍ୱରବାଦୀ ହୋଇପାରେ ନାହିଁ । କିନ୍ତୁ ମୁଁ ଜଣେ ନିରୀଶ୍ୱରବାଦୀ କାରଣ ମୁଁ କେବେ ଉଲ୍ଲିଖିତ କୌଣସି ସମ୍ଭାବନାକୁ ଗ୍ରହଣ କରେ ନାହିଁ । ଏକ ସର୍ବଶକ୍ତିମାନ ପରମ ସତ୍ତାର ଅସ୍ତିତ୍ୱକୁ ମୁଁ ଅସ୍ୱୀକାର କରେ । ମୁଁ କାହିଁକି ଏହାକୁ ଅସ୍ୱୀକାର କରୁଛି ତାହା ମୁଁ ନିମ୍ନରେ ଆଲୋଚନା କରିବି । କିନ୍ତୁ ଗୋଟିଏ କଥା ମୁଁ ପ୍ରଥମରୁ ସ୍ପଷ୍ଟ କରିବାକୁ ଚାହେଁ ଯେ କୌଣସି ଅହମିକାର ବଶବର୍ତ୍ତୀ ହୋଇ ମୁଁ ନିରୀଶ୍ୱରବାଦକୁ ଗ୍ରହଣ କରୁନାହିଁ । ମୁଁ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ, ଅବତାର ବା ନିଜେ ହିଁ ପରମସତ୍ତା ଏପରି କିଛି ଭାବୁନାହିଁ । କିନ୍ତୁ ମୁଁ ନିରୀଶ୍ୱରବାଦକୁ ଗ୍ରହଣ କରିବା କ୍ଷେତ୍ରରେ କୌଣସି ଅହମିକା ବା ଗର୍ବର ଯେ ବଶବର୍ତ୍ତୀ ନୁହଁ ଏହା ସ୍ପଷ୍ଟ । ଯେଉଁମାନେ ମୋ ସମ୍ବନ୍ଧରେ ଏହି ମତ ପୋଷଣ କରନ୍ତି ଯେ ମୁଁ ଅହମିକାର ବଶବର୍ତ୍ତୀ ହୋଇ ଏପରି କରୁଛି ସେମାନଙ୍କର ମୋ ସମ୍ପର୍କିତ ଧାରଣା ଠିକ୍ ନୁହେଁ । ସେହି ବନ୍ଧୁମାନଙ୍କ

ମତରେ ଦିଲ୍ଲୀ, ବମ୍ବେ ଓ ଲାହୋର ଷଡ଼ଯନ୍ତ୍ର ଘଟଣାରେ ମୋତେ ନେଇ ବିଚାରାଳୟରେ ଯେଉଁ ମକଦମା ଚାଲିଲା ଓ ସେ ସମୟରେ ମୁଁ ଯେଉଁ ଅନାବଶ୍ୟକ ଜନପ୍ରିୟତା ହାସଲ କଲି ତାହା ଫଳରେ ମୁଁ ଗର୍ବୀ ପାଲଟିଗଲି । କିନ୍ତୁ ବନ୍ଧୁମାନଙ୍କର ଏହି ଭାବନା ଯଥାର୍ଥ ନୁହେଁ । ମୁଁ ନିକଟରେ ଅର୍ଥାତ୍ ଏହିସବୁ ଘଟଣା ପରଠୁ ନିରୀଶ୍ୱରବାଦୀ ହୋଇନାହିଁ । ମୁଁ କିଶୋର ବୟସରୁ ଈଶ୍ୱରଙ୍କ ଅସ୍ତିତ୍ୱକୁ ବିଶ୍ୱାସ କରୁନାହିଁ । ମୋର ଏହି ଭାବନା ବିଷୟରେ ହୁଏତ ମୋର ବନ୍ଧୁମାନେ ଜାଣନ୍ତି ନାହିଁ । ଜଣେ ମହାବିଦ୍ୟାଳୟ ଛାତ୍ର ଏପରି କୌଣସି ଘଟଣାରେ ଅଯଥା ଅହମିକାପୂର୍ଣ୍ଣ ହୋଇ ଈଶ୍ୱର ବିଶ୍ୱାସ ହରାଇବା ସମ୍ଭବ ନୁହେଁ । ଅନେକ ଅଧ୍ୟାପକଙ୍କର ମୁଁ ପ୍ରିୟପାତ୍ର ଥିଲି ଓ କେତେକ ମୋତେ ମଧ ଭଲ ପାଉ ନ ଥିଲେ । ହେଲେ ଜଣେ ଛାତ୍ର ଭାବରେ ମୁଁ ବିଶେଷ ପରିଶ୍ରମୀ ବା ଅଧ୍ୟବସାୟୀ ନ ଥିଲି । ଏକ ଅହମିକାପୂର୍ଣ୍ଣ ଭାବନାର ବଶବର୍ତ୍ତୀ ହେବାରେ ମୋର ସେପରି କିଛି ଉଲ୍ଲେଖନୀୟ ସଫଳତା ନ ଥିଲା । ବରଂ ମୁଁ ଜଣେ ଲାଜକୁଳା ଛାତ୍ର ଥିଲି ଓ ମୋର ଭବିଷ୍ୟତ କର୍ମସଂସ୍ଥାନ ନେଇ ମୁଁ ନୈରାଶ୍ୟବାଦୀ ହୋଇ ପଡ଼ିଥିଲି । ସେହି ସମୟରେ ମୁଁ ନିରୀଶ୍ୱରବାଦୀ ନ ଥିଲି । ମୋର ଜେଜେବାପା ଜଣେ ରକ୍ଷଣଶୀଳ ଆର୍ଯ୍ୟସମାଜୀ ଥିଲେ ଓ ତାଙ୍କ ପ୍ରଭାବରେ ହିଁ ମୁଁ ଗଢ଼ି ଉଠିଥିଲି । ଜଣେ ଆର୍ଯ୍ୟସମାଜୀ ଅନ୍ୟ ଯାହା ପଛେ ହୋଇପାରନ୍ତି, କିନ୍ତୁ ସେ କେବେ ନିରୀଶ୍ୱରବାଦୀ ନୁହନ୍ତି । ମୋର ପ୍ରାଥମିକ ଶିକ୍ଷା ସମାପ୍ତ ପରେ ମୁଁ ଲାହୋରସ୍ଥିତ ଦୟାନନ୍ଦ ଆଙ୍ଗ୍ଲୋ ବେଦିକ, ଡି.ଏ.ଭି. ବିଦ୍ୟାଳୟରେ ଯୋଗଦେଲି ଓ ସେଠାରେ ଥିବା ଛାତ୍ରାବାସରେ ଗୋଟିଏ ପୂରା ବର୍ଷ ରହିଥିଲି । ଛାତ୍ରାବାସରେ ସକାଳ ଓ ସନ୍ଧ୍ୟାରେ ପ୍ରାର୍ଥନା କାର୍ଯ୍ୟକ୍ରମରେ ଯୋଗଦେବା ସହ ମୁଁ ଘଣ୍ଟା ଘଣ୍ଟା ଧରି ଗାୟତ୍ରୀ ମନ୍ତ୍ର ଜପ କରୁଥିଲି । ମୁଁ ସେହି ସମୟରେ ସଂପୂର୍ଣ୍ଣ ଈଶ୍ୱରବିଶ୍ୱାସୀ ଥିଲି । ତା'ପରେ ମୁଁ ମୋ ବାପାଙ୍କ ସହିତ ଏକାଠି ରହିଲି । ଧର୍ମୀୟ ଭାବନା କ୍ଷେତ୍ରରେ ସେ ବହୁତ ଉଦାର ଥିଲେ । ତାଙ୍କର ପ୍ରେରଣାରେ ପ୍ରଭାବିତ ହୋଇ ମୁଁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବାକୁ ଅଭିନିବେଶ ପାଇଲି । କିନ୍ତୁ ମୋର ବାପା ନିରୀଶ୍ୱରବାଦୀ ନ ଥିଲେ । ସେ ଥିଲେ ପୂରା ଈଶ୍ୱରବିଶ୍ୱାସୀ । ପ୍ରତ୍ୟହ ପ୍ରାର୍ଥନା କରିବା ପାଇଁ ସେ ମୋତେ ପ୍ରେରଣା ଦେଉଥିଲେ । ମୋର ପିଲାଦିନ ଏହିପରି କଟିଥିଲା । ଯେତେବେଳେ ଅସହଯୋଗ ଆନ୍ଦୋଳନ ଚାଲିଥିଲା ମୁଁ ''ନେସନାଲ କଲେଜ''ରେ ଯୋଗଦେଲି । ସେହ ସମୟରେ ମୁଁ ଉଦାର ଭାବରେ ଚିନ୍ତା କରିବାକୁ ଲାଗିଲି ଓ ଧର୍ମୀୟ ବିଶ୍ୱାସ ସକଳକୁ ଓ ଏପରିକି ଈଶ୍ୱର ଭାବନାକୁ ନେଇ ଆଲୋଚନା ଓ ସମାଲୋଚନା କଲି । କିନ୍ତୁ ତଥାପି ମୁଁ ଜଣେ ସଚ୍ଚା ଆସ୍ତିକ

ଥିଲି । ମୁଁ ସେଠାରେ ଲମ୍ବା ଚୁଟି ରଖିଲି ଓ ମୁଁ ଶିଖଧର୍ମର ବା ଅନ୍ୟ ଧର୍ମମାନଙ୍କର ଭାବନା ବା ପୌରାଣିକ କାହାଣୀ ସକଳକୁ ବିଶ୍ୱାସ କରିପାରୁ ନ ଥିଲି । କିନ୍ତୁ ମୋର ଈଶ୍ୱରଙ୍କ ଅସ୍ତିତ୍ୱ ଉପରେ ପୂର୍ଣ୍ଣ ବିଶ୍ୱାସ ଥିଲା ।

ମୁଁ ଏହାପରେ ବିପ୍ଲବୀ ଦଳ (ରେଭୁଲେସନାରୀ ପାର୍ଟି)ରେ ଯୋଗଦେଲି । ମୁଁ ପ୍ରଥମେ ଯେଉଁ ନେତାଙ୍କର ସଂସ୍ପର୍ଶରେ ଆସିଲି ସେ ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ସ୍ପଷ୍ଟ ଧାରଣା ରଖି ନ ଥିଲେ ମଧ ତାଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରିବା କ୍ଷେତ୍ରରେ ସାହସୀ ନ ଥିଲେ । ମୁଁ ଯେତେବେଳେ ଈଶ୍ୱରଙ୍କ ସଂପର୍କରେ ତାଙ୍କର ମତାମତ ଜାଣିବାକୁ ବାରମ୍ବାର ପ୍ରଶ୍ନ କରୁଥିଲି ସେ କହୁଥିଲେ, ''ତୁମେ ଯେତେବେଳେ ଚାହଁ ଈଶ୍ୱରଙ୍କୁ ପ୍ରାର୍ଥନା କର'' । ସୁତରାଂ ନିରୀଶ୍ୱରବାଦୀ ଭାବଧାରାକୁ ଗ୍ରହଣ କରିବା କ୍ଷେତ୍ରରେ ଅନେକ ସାହସ ଆବଶ୍ୟକ । ଏହାପରେ ମୁଁ ଯେଉଁ ଦ୍ୱିତୀୟ ନେତାଙ୍କର ସଂସ୍ପର୍ଶରେ ଆସିଲି ସେ ଥିଲେ ସଂପୂର୍ଣ୍ଣ ଆସ୍ତିକ । ସେ ହେଉଛନ୍ତି ସଚ୍ଚୀନ୍ଦନାଥ ସାନ୍ୟାଲ, ଯେ କି କରାଚୀ ଷଡ଼ଯନ୍ତ୍ର ଘଟଣାରେ ସଂପୃକ୍ତ ବୋଲି ଆଜୀବନ ନିର୍ବାସିତ ହୋଇଛନ୍ତି । ତାଙ୍କର ଏକମାତ୍ର ଅଥଚ ଅତି ଆଦୃତ ପୁସ୍ତକ ''ବନ୍ଦୀ ଜୀବନ''ର ପ୍ରଥମ ପୃଷ୍ଠାରେ ସେ ଈଶ୍ୱରଙ୍କର ଜୟଗାନ କରିଛନ୍ତି । ସେହି ଚମତ୍କାର ବହିର ଦ୍ୱିତୀୟ ଭାଗର ଶେଷ ପୃଷ୍ଠାରେ ସେ ବେଦାନ୍ତ ଭାବନାରେ ଅନୁପ୍ରାଣିତ ହୋଇ ଏକ ରହସ୍ୟବାଦୀ ଭାବେ ଈଶ୍ୱରଙ୍କ ଭାବନା ମଧରେ ତାଙ୍କ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି । ତାଙ୍କର ନିର୍ବାସନ ଦଣ୍ଡ ବିଷୟରେ ସେ ଯେଉଁ ''ବିପ୍ଲବୀ ପତ୍ର'' ଲେଖାଟି ପ୍ରସ୍ତୁତ କରିଥିଲେ ଓ ଯାହା ସମଗ୍ର ଦେଶରେ ୧୯୨୫ ମସିହା ଜାନୁଆରୀ ୨୮ରେ ବିତରଣ କରାଯାଇଥିଲା ତାହା ତାଙ୍କ ବୌଦ୍ଧିକ କସରତର ପରିଚୟ ବହନ କରେ । ତାଙ୍କର ଭାବନାକୁ ନେଇ ସେହି ମହାନ ନେତା ଦେଶରେ ଗୁପ୍ତ ବୈପ୍ଲବିକ କାର୍ଯ୍ୟର ସୂଚନା ଦେଇଥିଲେ । ଅନ୍ୟମାନଙ୍କର ତାଙ୍କ ସହିତ ହୁଏତ କେତେକ କ୍ଷେତ୍ରରେ ମତ ପାର୍ଥକ୍ୟ ରହିଥିଲେ ମଧ ତାଙ୍କ ଲେଖାର ବକ୍ତବ୍ୟ ପ୍ରତି ଅନ୍ୟ ସମସ୍ତ କର୍ମୀଙ୍କର ସମର୍ଥନ ରହିଥିଲା । ସେହି ଲେଖାରେ ଗୋଟିଏ ପୂର୍ଣ୍ଣ ଅନୁଚ୍ଛେଦରେ ଈଶ୍ୱରଙ୍କର ଉଦ୍ଦେଶ୍ୟ ଓ କାର୍ଯ୍ୟ ନେଇ ପ୍ରଶଂସା କରାଯାଇଥିଲା । ଏ ସବୁ ରହସ୍ୟବାଦୀ ଭାବନା ଅଟେ । ଏଠାରେ ମୁଁ ଏହା ସୂଚିତ କରିବାକୁ ଚାହେଁ ଯେ, ବିପ୍ଲବୀ ଦଳର କୌଣସି କାର୍ଯ୍ୟସୂଚୀରେ ନିରୀଶ୍ୱରବାଦୀ ଭାବନାର ସାମାନ୍ୟତମ ଅଭିବ୍ୟକ୍ତି ବା ଅଙ୍କୁରୋଦ୍‌ଗମ ହୋଇ ନ ଥିଲା । ବିଶିଷ୍ଟ କାକୋରୀ ଶହୀଦ୍‌ବୃନ୍ଦ, ଯେଉଁଥିରେ ଚାରିଜଣ ଶହୀଦ୍ ହୋଇଥିଲେ, ସେମାନଙ୍କର ଶେଷ ଦିନଗୁଡ଼ିକ କେବଳ ପ୍ରାର୍ଥନା ମଧରେ କଟାଇଥିଲେ । ରାମପ୍ରସାଦ ବିସବିଲ ଥିଲେ ଜଣେ ରକ୍ଷଣଶୀଳ

ଆର୍ଯ୍ୟସମାଜୀ । ରାଜେନ ଲାହିରି ତାଙ୍କର ସମାଜବାଦ ଓ କମ୍ୟୁନିଷ୍ଟ ଭାବନା ଉପରେ ଗଭୀର ଅଧ୍ୟୟନ ସତ୍ତ୍ୱେ ଶେଷ ଦିନଗୁଡ଼ିକରେ ଉପନିଷଦ ଓ ଗୀତାର ଶ୍ଳୋକ ଆବୃତ୍ତି କରିବାର ଇଚ୍ଛାକୁ ଦମନ କରିପାରି ନ ଥିଲେ । ସେମାନଙ୍କ ମଧ୍ୟରେ କିନ୍ତୁ ଜଣେ ବ୍ୟକ୍ତିଙ୍କୁ ପ୍ରାର୍ଥନା ନ କରିବାର ମୁଁ ଦେଖିଛି । ସେ କହୁଥିଲେ ମାନବିକ ଦୋଷ ଦୁର୍ବଳତା ତଥା ଜ୍ଞାନର ଅପରିପକ୍ୱତା ମଧ୍ୟରୁ ଈଶ୍ୱର ବିଶ୍ୱାସ ଜନିତ ଦାର୍ଶନିକ ଭାବନାର ସୃଷ୍ଟି ହୋଇଥାଏ । ସେ ମଧ୍ୟ ସାରାଜୀବନ ପାଇଁ ନିର୍ବାସନ ଦଣ୍ଡ ଭୋଗ କରୁଛନ୍ତି । କିନ୍ତୁ ସେ ବି ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରିବାର ସାହସ ଦେଖାଇ ନାହାନ୍ତି ।

ସେତେବେଳ ପର୍ଯ୍ୟନ୍ତ ମୁଁ କେବଳ ଜଣେ କଳ୍ପନାବିଳାସୀ ଆଦର୍ଶବାଦୀ ବିପ୍ଳବୀ ଥିଲି । ଆମେ କେବଳ ନିର୍ଦ୍ଦେଶ ପାଳନକାରୀ ଥିଲୁ । ବର୍ତ୍ତମାନ ପରିସ୍ଥିତିରେ ସମସ୍ତ ଦାୟିତ୍ୱ ନିଜ ମୁଣ୍ଡକୁ ନେବାକୁ ପଡ଼ିଲା । କେତେକ ଅପରିହାର୍ଯ୍ୟ ପ୍ରତିକ୍ରିୟା ଯୋଗୁଁ ଗୋଟିଏ ସମୟରେ ଦଳର ଅସ୍ତିତ୍ୱକୁ ନେଇ ଘୋର ସନ୍ଦେହ ସୃଷ୍ଟି ହେଲା । ଉତ୍ସାହୀ ସାଥୀ ଓ ଏପରିକି ନେତାମାନେ କିଛିଟା ବିଦ୍ରୂପ ମଧ୍ୟ କରିବାକୁ ଲାଗିଲେ । ଏପରିକି ଆମର କାର୍ଯ୍ୟସୂଚୀର ବ୍ୟର୍ଥତା ନେଇ ମୋ ମନରେ ସନ୍ଦେହ ସୃଷ୍ଟି ହେଲା । ମୋର ବୈପ୍ଳବିକ ଜୀବନଧାରାରେ ତାହା ଥିଲା ଏକ ବଡ଼ ସନ୍ଧିକ୍ଷଣ । ଏହି ସନ୍ଧିକ୍ଷଣରେ ''ଅଧ୍ୟୟନ'' ଦ୍ୱାରା ସମସ୍ତ ସଂକଟକୁ ଯେ ମୁଁ ଅତିକ୍ରମ କରିପାରିବି ଏହି ଭାବନା ମୋ ମନକୁ ଆସିଲା । ମୋ ମନରେ ସୃଷ୍ଟ ଏହି ଭାବନା ମୋତେ ପ୍ରେରଣା ଦେଲା, ''ଅଧ୍ୟୟନ କର, ଅଧ୍ୟୟନ ଦ୍ୱାରା ହିଁ କେବଳ ନିଜର ପ୍ରତିଦ୍ୱନ୍ଦ୍ୱୀଙ୍କର ଯଥାର୍ଥ ମୁକାବିଲା କରିହେବ । ତୋର ମତକୁ ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠା କରିବାକୁ ହେଲେ ଗଭୀର ଅଧ୍ୟୟନ କର ।'' ଫଳରେ ଅଧ୍ୟୟନରେ ମୁଁ ମନନିବେଶ କଲି । ଏହାଦ୍ୱାରା ମୋର ପୂର୍ବ ବିଶ୍ୱାସ ଓ ଧାରଣାଗୁଡ଼ିକରେ ତୁମୁଳ ପରିବର୍ତ୍ତନ ସୃଷ୍ଟି ହେଲା । ଆମର ପୂର୍ବସୂରୀମାନେ ଯେପରି କେବଳ ହିଂସାତ୍ମକ ପନ୍ଥା ପ୍ରୟୋଗ କରୁଥିଲେ ଓ ସେଥିରେ ମଜ୍ଜି ରହିଥିଲେ ସେଥିରେ ମୋର ଘୋର ସନ୍ଦେହ ସୃଷ୍ଟି ହେଲା । କୌଣସି ଅନ୍ଧାନୁକରଣ ବା ରହସ୍ୟବାଦୀ ଭାବନା ମୋ ମନରୁ ଅପସରି ଗଲା । ବାସ୍ତବତାକୁ ସ୍ୱୀକାର କରିବା ମୁଁ ଯଥାର୍ଥ ମନେକଲି । ଅତ୍ୟନ୍ତ ଅପରିହାର୍ଯ୍ୟ ନ ହେଲେ କୌଣସି ହିଂସାତ୍ମକ ପନ୍ଥା ପ୍ରୟୋଗ କରିବା ମୋତେ ଯଥାର୍ଥ ମନେହେଲା ନାହିଁ । କୌଣସି ଗଣ ଆନ୍ଦୋଳନ ପାଇଁ ଅହିଂସାତ୍ମକ ପଦ୍ଧତି ମୋତେ ଅପରିହାର୍ଯ୍ୟ ଓ ସର୍ବୋତ୍କୃଷ୍ଟ ମନେହେଲା । ଆମେ ଯେଉଁ ଆଦର୍ଶ ବା ଲକ୍ଷ୍ୟ ନେଇ ସଂଗ୍ରାମ କରିବୁ ସେ ବିଷୟରେ ଏକ ସ୍ୱଚ୍ଛ ଧାରଣା ପ୍ରଥମେ ରହିବା ଆବଶ୍ୟକ ବୋଲି ମୁଁ ଭାବିଲି ।

ବାସ୍ତବ କର୍ମପନ୍ଥା ନେଇ ଯେହେତୁ ସେପରି କିଛି କାର୍ଯ୍ୟସୂଚୀ ଆମ ପାଖରେ ନ ଥିଲା ତେଣୁ ପୃଥିବୀରେ ସୃଷ୍ଟି ହୋଇଥିବା ବିଭିନ୍ନ ବିପ୍ଳବ ପଶ୍ଚାତରେ ପ୍ରୟୋଗ ହୋଇଥିବା ପନ୍ଥା ସମ୍ପର୍କରେ ମୁଁ ଅଧ୍ୟୟନ କରିବାକୁ ଲାଗିଲି । ମୁଁ ବିପ୍ଳବୀ ଓ ନୈରାଶ୍ୟବାଦର ପ୍ରବକ୍ତା ବାକୁନିନଙ୍କୁ ପଢ଼ିଲି । କମ୍ୟୁନିଜମ୍‌ର ଜନକ ମାର୍କସ୍ ଓ ନିଜ ନିଜ ରାଷ୍ଟ୍ରମାନଙ୍କରେ ସମାଜବାଦୀ ବିପ୍ଳବ କରି ସଫଳ ହୋଇଥିବା ମହାନ ନେତୃବୃନ୍ଦ ଲେନିନ, ଟ୍ରଟସ୍କି ଓ ଅନ୍ୟମାନଙ୍କୁ ମଧ୍ୟ ପଢ଼ିଲି । ଉଲ୍ଲେଖନୀୟ ବିଷୟ ହେଉଛି ସେମାନେ ସମସ୍ତେ ଥିଲେ ନିରୀଶ୍ୱରବାଦୀ । ବାକୁନିନଙ୍କର ପୁସ୍ତକ "ଈଶ୍ୱର ଓ ରାଷ୍ଟ୍ର" (God and State) ଯଦିବା ଏକ ବିଖଣ୍ଡିତ ରଚନା ତାହା ବେଶ୍ ଭାବଗର୍ଭକ ଥିଲା । ପରେ ନିର୍ଲମ୍ବ ସ୍ୱାମୀଙ୍କର ପୁସ୍ତକ "ସାଧାରଣ ଜ୍ଞାନ" (Common Sense) ସମ୍ପର୍କରେ ମୁଁ ଆସିଲି । ଏହି ପୁସ୍ତକ ନିରୀଶ୍ୱରବାଦ ସମ୍ପର୍କରେ ରୋମାଞ୍ଚକର ଥିଲା । ଏହିସବୁ ବିଷୟ ମୋତେ ବହୁତ ପ୍ରେରଣା ଦେଇଥିଲା । ସମଗ୍ର ବିଶ୍ୱକୁ ସୃଷ୍ଟିକରି ନିୟନ୍ତ୍ରଣ କରୁଥିବା ଏକ ସର୍ବଶକ୍ତିମାନ ସତ୍ତାରେ ମୋର ବିଶ୍ୱାସ ୧୯୨୬ ମସିହା ଶେଷଆଡ଼କୁ ଅପସରିଗଲା । ଅର୍ଥାତ୍ ଈଶ୍ୱର ସୃଷ୍ଟିକର୍ତ୍ତା, ରକ୍ଷାକର୍ତ୍ତା ଓ ସଂହର୍ତ୍ତା ବୋଲି ରହିଥିବା ଧାରଣା ଯେ ସଂପୂର୍ଣ୍ଣ ଭିତ୍ତିହୀନ ମୁଁ ଏହା ଗ୍ରହଣ କଲି । ମୁଁ ଏହି ପ୍ରସଙ୍ଗ ଉପରେ ମୋର ବନ୍ଧୁମାନଙ୍କ ସହିତ ଆଲୋଚନା କଲି । ମୁଁ ଅସନ୍ଦିଗ୍ଧ ନିରୀଶ୍ୱରବାଦୀ ପାଲଟିଗଲି । ନିରୀଶ୍ୱରବାଦ କ'ଣ ମୁଁ ତାହା ନିମ୍ନରେ ଆଲୋଚନା କରିବି ।

୧୯୨୭ ମେ' ମାସରେ ମୁଁ ଲାହୋର ଠାରେ ଗିରଫ ହେଲି । ଏହି ଗିରଫ ମୋ ପାଇଁ ଥିଲା ଏକ ବିସ୍ମୟ । ପୋଲିସ ଯେ ମୋତେ ଖୋଜୁଛି ମୁଁ ଏହା ଆଦୌ ଜାଣି ନ ଥିଲି । ହଠାତ୍ ଏକ ଉଦ୍ୟାନ ମଧ୍ୟ ଦେଇ ଯିବାବେଳେ ମୋର ଚତୁଃପାର୍ଶ୍ୱରେ ମୁଁ ପୋଲିସମାନଙ୍କୁ ଦେଖିଲି । ଆଶ୍ଚର୍ଯ୍ୟଜନକ ଭାବରେ ମୁଁ ସେତେବେଳେ ଅତି ଶାନ୍ତ ରହିଥିଲି । ମୋ ଭିତରେ ସେପରି କିଛି ପ୍ରତିକ୍ରିୟା ବା ଗଭୀର ଉତ୍ତେଜନା ଦେଖାଦେଇ ନ ଥିଲା । ମୋତେ ପୋଲିସ ଅଧୀନରେ ରଖାଗଲା । ତା ପରଦିନ ମୋତେ ରେଲୱେ ପୋଲିସ ଥାନାକୁ ନିଆଯାଇ ସେଠାରେ ଗୋଟିଏ ଦିନ ବନ୍ଦୀଗୃହରେ ଆବଦ୍ଧ କରାଗଲା । ପୋଲିସ ଅଫିସରମାନେ ଅନେକ ଦିନ ଧରି ମୋତେ ନାନା ବିଷୟରେ ପ୍ରଶ୍ନ କରିବାକୁ ଲାଗିଲେ । କାକୋରି ଦଳ ତଥା ଅନ୍ୟାନ୍ୟ ବୈପ୍ଳବାତ୍ମକ କାର୍ଯ୍ୟକ୍ରମ ଓ ସଂଗଠନ ସହିତ ମୋର ସମ୍ପର୍କ ସମ୍ବନ୍ଧରେ ପୋଲିସ କିଛି ତଥ୍ୟ ପାଇଥିବା ମୁଁ ଅନୁମାନ କଲି । ସେମାନେ ମୋତେ କହିଲେ ଯେ ଯେତେବେଳେ ଲକ୍ଷ୍ନୌରେ ସେହି ମାମଲା ବିଚାରାଧୀନ ଥିଲା ସେତେବେଳେ ମୁଁ ସେଠାକୁ ଯାଇଥିଲି ।

ବିପ୍ଳବୀମାନଙ୍କର ମୁକ୍ତି ପାଇଁ ଏକ ଯୋଜନା ବିଷୟରେ ମୁଁ ସେଠାରେ ଆଲୋଚନା କରିଥିଲି । ସାଥୀମାନଙ୍କର ସମ୍ମତି ପାଇବା ପରେ ଆମେ କେତେକ ବୋମା ସଂଗ୍ରହ କରିଥିଲୁ । ବୋମାକୁ ପରୀକ୍ଷା କରିବାକୁ ଯାଇ ୧୯୨୬ରେ ଦଶହରାଯାତ୍ରା ସମୟରେ ଲୋକମାନଙ୍କ ଉପରକୁ ଏହା ଫିଙ୍ଗା ଯାଇଥିଲା । ସେମାନେ ମୋତେ ଏକଥା ମଧ୍ୟ କହିଲେ ଯେ ମୁଁ ଯଦି ବିପ୍ଳବୀମାନଙ୍କର କାର୍ଯ୍ୟକ୍ରମ ସମ୍ପର୍କରେ ପୋଲିସକୁ ଅଧିକ ତଥ୍ୟ ଦେବାକୁ ଚାହିଁବି ତେବେ ତାହା ମୋର ଉପକାରରେ ଆସିବ । ଏପରିକି ମୁଁ ଯଦି ବିପ୍ଳବୀମାନଙ୍କ ସମ୍ପର୍କରେ ସବୁକଥା ପ୍ରକାଶ କରିବି ତେବେ ମୋତେ ଖଲାସ କରାଯିବା ସହିତ ମୋତେ ପୁରସ୍କୃତ କରାଯିବ । ମୁଁ ଏହାଦ୍ୱାରା ପୋଲିସର ଅଭିଯୋଗକୁ ସ୍ୱୀକାର କରୁଥିଲେ ମଧ୍ୟ ମୋତେ ବିଚାରାଳୟରେ ହାଜର କରା ନ ଯାଇ ଛାଡ଼ିଦିଆଯିବ । ସେମାନଙ୍କର ଏହି ପ୍ରସ୍ତାବ ବିଷୟ ଶୁଣି ମୋତେ ହସ ଲାଗିଲା । ବ୍ୟାପାରଟି ଅତି ପ୍ରବଞ୍ଚନାପୂର୍ଣ୍ଣ ଥିଲା । ଯେଉଁମାନେ ଆମ ଭାବଧାରା ବା ଆଦର୍ଶରେ ଅନୁପ୍ରାଣିତ ସେମାନେ ନିଜ ମାଟିର ସାଧାରଣ ନିରୀହ ଲୋକମାନଙ୍କ ଉପରକୁ ବୋମା ଫିଙ୍ଗିବେ ଏହା କଳ୍ପନାତୀତ ଥିଲା । ଦିନେ ସକାଳେ ଗୁଇନ୍ଦା ବିଭାଗର ବରିଷ୍ଠ ଅଧୀକ୍ଷକ ମିଷ୍ଟର ନିଉମାନ ମୋ ପାଖରେ ଆସି ପହଞ୍ଚିଲେ । ପ୍ରଥମେ ସେ ମୋ ସହିତ ବହୁତ ସହାନୁଭୂତିମୂଳକ ବ୍ୟବହାର କଲେ । ପରେ ସେ ମୋତେ ଜଣାଇଲେ ଯେ ଯଦି ସେ ଚାହିଁବା ମୁତାବକ ବିବୃତି ମୁଁ ନ ଦିଏ ତେବେ କାକୋରି ଷଡ଼ଯନ୍ତ୍ର ତଥା ଦଶହରାଯାତ୍ରାରେ ବୋମା ନିକ୍ଷେପଜନିତ ମୃତ୍ୟୁ ଘଟଣାରେ ମୋତେ ଦାୟୀ କରି ମୋ ନାମରେ କେସ୍ ରୁଜୁ କରାଯିବ । ସେ ମୋତେ ପୁନଶ୍ଚ ଧମକ ଦେଲେ ଯେ ମୋତେ ଏହି ସବୁ ଘଟଣାରେ ଦୋଷୀ ସାବ୍ୟସ୍ତ କରି ମୃତ୍ୟୁଦଣ୍ଡରେ ଦଣ୍ଡିତ କରିବା ଭଳି ସାକ୍ଷ୍ୟ ପ୍ରମାଣ ପୋଲିସ ହାତରେ ରହିଛି । ମୁଁ ଯଦିବା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ଥିଲି ତଥାପି ମୁଁ ବିଶ୍ୱାସ କରୁଥିଲି ଯେ ଯଦି ପୋଲିସ ଚାହିଁବ ତେବେ ଯେକୌଣସି ଘଟଣାକୁ ମୋଡ଼ଦେଇ ଜଣକୁ ଅକ୍ଳେଶରେ ସମ୍ପୃକ୍ତ କରାଇଦେବ । ସେହିଦିନ ଆଉ କେତେକ ବରିଷ୍ଠ ପୋଲିସ କର୍ମଚାରୀ ମୋତେ ସାକ୍ଷାତ କରି ପ୍ରତ୍ୟହ ଦୁଇଥର ଲେଖାଏଁ ପ୍ରାର୍ଥନା କରିବାକୁ ପ୍ରବର୍ତ୍ତାଇଲେ । ମୁଁ ତ ଏବେ ପୂରା ନିରୀଶ୍ୱରବାଦୀ ହୋଇ ଯାଇଥିଲି । ସୁତରାଂ ସେମାନଙ୍କର କଥାରେ ମୁଁ ପ୍ରଭାବିତ ହେଲି ନାହିଁ ବରଂ ଏହା ମୋ ପାଇଁ ଏକ ପରୀକ୍ଷା ବୋଲି ଭାବିଲି । ଅର୍ଥାତ୍ ଶାନ୍ତିରେ ତଥା ମଉଜ ମଜଲିସରେ ଥିବାବେଳେ ମୁଁ ନିରୀଶ୍ୱରବାଦୀ ହେବି ନା ଜୀବନର ସବୁଠାରୁ ସଂକଟଜନକ ପରିସ୍ଥିତିରେ ମଧ୍ୟ ମୋର ଆଦର୍ଶକୁ ରକ୍ଷା କରିବି । ଏହି ବିଷୟ ଉପରେ ଗଭୀର ଚିନ୍ତାକରି ମୁଁ ନିଷ୍ପତ୍ତି

କଲି ଯେ, ମୁଁ କୌଣସି ପରିସ୍ଥିତିରେ ବି ଆଦର୍ଶଚ୍ୟୁତ ହୋଇ ଈଶ୍ୱରଙ୍କୁ ପ୍ରାର୍ଥନା କରିବି ନାହିଁ । ମୋ ନିଷ୍ପତ୍ତିରେ ମୁଁ ଅଟଳ ରହିଲି ଓ ମୋର ଏହି ସଂକଳ୍ପରେ ମୁଁ ମଧ୍ୟ ସଫଳ ହେଲି । କିଛି ବିନିମୟରେ ମୋର ଜୀବନକୁ ରକ୍ଷା କରିବା ନେଇ ଭାବନା ମୋତେ ସ୍ପର୍ଶ କଲାନାହିଁ । ମୁଁ ଅତ୍ୟନ୍ତ ଦୃଢ଼ତାର ସହ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କଲି ଓ ମୋର ସେହି ମନୋଭାବ ଏ ପର୍ଯ୍ୟନ୍ତ ମଧ୍ୟ ଅଟଳ ରହିଛି । ଏଭଳି ଏକ କଠିନ ପରିସ୍ଥିତିର ସମ୍ମୁଖୀନ ହୋଇ ଦୃଢ଼ରହିବା ମୋ ପାଇଁ ଏକ ପରୀକ୍ଷା ଥିଲା । ମଣିଷର ପ୍ରତିକୂଳ ଅବସ୍ଥାରେ ଈଶ୍ୱର ବିଶ୍ୱାସ ସହାୟକ ହୋଇଥାଏ ଓ ଏପରିକି ଦୁର୍ଦ୍ଦଶା ସମୟରେ ଜୀବନର ଘଟଣା ପ୍ରବାହକୁ କିଛି ସୁଖମୟ କରିଥାଏ । ଈଶ୍ୱର ବିଶ୍ୱାସ ଭିତରେ ମଣିଷ ଅନେକ ସାନ୍ତ୍ୱନା ଓ ସାମର୍ଥ୍ୟ ପାଏ ବୋଲି ସାଧାରଣରେ ବିଶ୍ୱାସ କରାଯାଏ । ଏହି ବିଶ୍ୱାସ ନ ରହିଲେ ମଣିଷ ନିଜ ଉପରେ ଭରସା ରଖେ । ପ୍ରବଳ ଝଡ଼ ଓ ବାତ୍ୟାରେ ତଥାପି ନିଜ ଗୋଡ଼ରେ ଛିଡ଼ାହୋଇ ପରିସ୍ଥିତିର ମୁକାବିଲା କରିବାର ବିଶ୍ୱାସ ଏକ ପିଲାଖେଳ ନୁହେଁ । ଏହିପରି ବିପଦପୂର୍ଣ୍ଣ ତଥା ପରୀକ୍ଷାଜନିତ ମୁହୂର୍ତ୍ତରେ ମଣିଷର ଯଦି କିଛି ଅହମିକା ଥାଏ ତାହା ଚାଲିଯାଏ । ସାଧାରଣ ବିଶ୍ୱାସକୁ ପ୍ରତ୍ୟାଖ୍ୟାନ କରିବାର ସାହସ ମଣିଷ ଏହି ସମୟରେ କରିପାରେ ନାହିଁ । କିନ୍ତୁ ଯଦି ସେ କରେ, ତେବେ ଏ କ୍ଷେତ୍ରରେ ତାହାର ଅହଙ୍କାର ପରିବର୍ତ୍ତେ ସେ ଅନ୍ୟ କିଛି ଉତ୍ସରୁ ତା'ର ଆତ୍ମଶକ୍ତି ପାଉଛି ବୋଲି ଧରିବାକୁ ହେବ । ବର୍ତ୍ତମାନର ସ୍ଥିତି ମୋ ପାଇଁ ଏହିପରି ଏକ ସମୟ ଅଟେ । ମୋ ବିଷୟରେ ଅଦାଲତ କ'ଣ ନିଷ୍ପତ୍ତି ଦେବ ତାହା ତ ବେଶ୍ ଜଣାଶୁଣା । ଏହା କେବଳ ଏକ ସପ୍ତାହ ଭିତରେ ପ୍ରକାଶ ପାଇଯିବ । କେବଳ ଗୋଟିଏ ଲକ୍ଷ୍ୟ ପାଇଁ ମୋର ଜୀବନ ଯେ ବଳିପଡ଼ିବାକୁ ଯାଉଛି ଏହା ଛଡ଼ା ମୋ ପାଇଁ ଅନ୍ୟ କ'ଣ ସାନ୍ତ୍ୱନା ରହିଛି ? ଜଣେ ଈଶ୍ୱର ବିଶ୍ୱାସୀ ହିନ୍ଦୁ ମୃତ୍ୟୁ ପରେ ହୁଏତ ଏକ ରାଜପରିବାରରେ ଜନ୍ମ ନେବାର ସ୍ୱପ୍ନ ଦେଖିପାରେ, ଜଣେ ମୁସଲମାନ ବା ଖ୍ରୀଷ୍ଟିଆନ ନିଜର ଯନ୍ତ୍ରଣା ଓ ତ୍ୟାଗର ପ୍ରତି ବଦଳରେ ମୃତ୍ୟୁପରେ ସ୍ୱର୍ଗପ୍ରାପ୍ତି ହେବାର କଳ୍ପନା କରିପାରେ । କିନ୍ତୁ ମୁଁ କ'ଣ୍ ପାଇବାକୁ କଳ୍ପନା କରିବି ? ଯେଉଁ ମୁହୂର୍ତ୍ତରେ ମୋର ବେକରେ ଫାଶୀର ଦଉଡ଼ି ଝୁଲାଇ ଦିଆଯିବ ଓ ମୋର ଗୋଡ଼ତଳୁ କାଠପଟାକୁ ଘୁଞ୍ଚାଇ ନିଆଯିବ ତାହା ହିଁ ହେବ ମୋର ଶେଷ ମୁହୂର୍ତ୍ତ । 'ମୁଁ' କିମ୍ବା ତତ୍ତ୍ୱଜ୍ଞାନର ବର୍ଣ୍ଣନା ଅନୁଯାୟୀ 'ମୋର ଆତ୍ମା' ସେହି ମୁହୂର୍ତ୍ତରେ ବିଲୋପ ହୋଇଯିବ । ଏହାଛଡ଼ା ଆଉ କ'ଣ ଘଟିବ ! ମୋର ଜୀବନର ଘଟଣା ପ୍ରବାହକୁ ମୁଁ ଯଦି ଠିକ୍ ଭାବରେ ଗ୍ରହଣ କରେ, ତେବେ ମୋର କ୍ଷୁଦ୍ର ବିପ୍ଳବୀ ଜୀବନର ଏହାହିଁ ହେବ ଅଭବ୍ୟ ଅନ୍ତିମ ପରିଣତି । ମୋର ସାହସ

ହିଁ ମୋର ପୁରସ୍କାର, କୌଣସି ପ୍ରକାର ବ୍ୟକ୍ତିଗତ ସ୍ୱାର୍ଥ ବା ପୁରସ୍କାର ଏହି ଜନ୍ମରେ ହେଉ ବା ମୃତ୍ୟୁପରେ ହେଉ ମୁଁ କେବେ ବି କାମନା କରିନାହିଁ । ମୁଁ କେବଳ ଦେଶର ସ୍ୱାଧୀନତା ସଂଗ୍ରାମରେ ନିଜକୁ ଉତ୍ସର୍ଗ କରି କିଞ୍ଚିତ କାର୍ଯ୍ୟ କରିଛି, ତା' ଛଡ଼ା ମୁଁ ଅନ୍ୟ କିଛି କରିନାହିଁ । ଯେଉଁଦିନ ଏହି ପ୍ରକାର ମାନସିକତାଦ୍ୱାରା ପରିଚାଳିତ ହୋଇ ଅନେକ ନରନାରୀ ମଣିଷର ସେବାରେ ନିଜକୁ ଉତ୍ସର୍ଗ କରିବେ ଓ ଦୁର୍ଦ୍ଦଶାଗ୍ରସ୍ତ ଜନତାର ମୁକ୍ତି ପାଇଁ ଆଗଭର ହେବେ ସେହିଦିନ ମୁକ୍ତିଯୁଗର ଆବାହନ ଶୁଣାଯିବ । ଜୀବନକାଳ ଭିତରେ ବା ମୃତ୍ୟୁପରେ କିଛି ସୁଖମୟ ପ୍ରାପ୍ତି ଆଶା କରିବା, ରାଜା ହୋଇ ଜନ୍ମ ହେବା, ସ୍ୱର୍ଗ ପ୍ରାପ୍ତି ହେବା ମୋ ଦୃଷ୍ଟିରେ ସେପରି ମହତ୍ତ୍ୱପୂର୍ଣ୍ଣ ନୁହେଁ । ଅତ୍ୟାଚାରୀ, ଶୋଷଣକାରୀ, ସ୍ୱେଚ୍ଛାଚାରୀମାନଙ୍କୁ ଆହ୍ୱାନ ଦେବା, ମଣିଷ ଜାତିର ବେକରେ ଯେଉଁ ଦାସତ୍ୱର ଶୃଙ୍ଖଳ ରହିଛି ତାହାକୁ ଛିଡ଼ାଇବାକୁ ପ୍ରଯତ୍ନ କରିବା ବ୍ୟକ୍ତିର ମହତ୍ତର କର୍ତ୍ତବ୍ୟ ବୋଲି ମୁଁ ମନେକରେ । ସେହି କାର୍ଯ୍ୟ ଶାନ୍ତି ଓ ମୁକ୍ତିର ମାର୍ଗରେ ପ୍ରେରଣାଦାୟକ ହେବ । ସକଳ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ବ୍ୟକ୍ତି ଓ ବ୍ୟଷ୍ଟି ଜୀବନଧାରାରେ ଏହି ଲକ୍ଷ୍ୟ ପୋଷଣ କରିବା ଏକ ସ୍ୱାଭିମାନର ପ୍ରଶ୍ନ ଅଟେ । ଏହି ଲକ୍ଷ୍ୟଜନିତ ସ୍ୱାଭିମାନକୁ ଅହଂକାର କୁହାଯିବ କି ? ଏହାକୁ ଏହିପରି ଏକ ଘୃଣିତ ପଦବୀରେ ବ୍ୟକ୍ତ କରିବାକୁ କେଉଁମାନେ ସାହସ କରିବେ ? ଯଦି ସେପରି କେହି କରୁଥାନ୍ତି ତେବେ ମୋ ଦୃଷ୍ଟିରେ ସେ ଜଣେ ନିର୍ବୋଧ କିମ୍ୱା ପ୍ରତାରକ । ତାହାଙ୍କୁ ଆମେ କ୍ଷମା କରିବା ଆବଶ୍ୟକ, କାରଣ ଅନ୍ୟ ହୃଦୟର ଗଭୀରତା, ଅନୁରାଗ ଓ ମହତ୍ତର ଅନୁଭବକୁ ସେ ହୃଦୟଙ୍ଗମ କରିବାକୁ ଅସମର୍ଥ । ତାହାର ହୃଦୟବତ୍ତା ନାହିଁ, ତାହାର ଦୃଷ୍ଟି ଅତି ଦୁର୍ବଳ । ଏକ ମହତ୍ତର ଭାବାବେଗ ପରିବର୍ତ୍ତେ ମନ୍ଦ ଭାବନା ତାର ଅନ୍ତରାତ୍ମାକୁ ଆଚ୍ଛନ୍ନ କରି ରଖିଛି । ଆତ୍ମ ନିର୍ଭରଶୀଳତା ଓ ସ୍ୱାଭିମାନକୁ ବେଳକେ ଅହଂକାର ଭାବରେ ଚିତ୍ରଣ କରାଯାଏ । ଏହାକୁ ଦୁଃଖଦାୟକ ଓ ଦୁର୍ଭାଗ୍ୟଜନକ ବୋଲି କହିବା ଛଡ଼ା ଅନ୍ୟ ପନ୍ଥା ନାହିଁ ।

ତୁମେ ଯଦି କୌଣସି ପ୍ରଚଳିତ ବିଶ୍ୱାସକୁ ବିରୋଧ କର, ସମାଲୋଚନାର ଊର୍ଦ୍ଧ୍ୱରେ ବୋଲି ସାଧାରଣରେ ଧରାଯାଉଥିବା କୌଣସି ବିଶିଷ୍ଟ ନେତାଙ୍କ ମତକୁ ଅସ୍ୱୀକାର କର ବା ସମାଲୋଚନା କରିବାରେ ପ୍ରୟାସୀ ହୁଅ, ତେବେ ତୁମ ଯୁକ୍ତିକୁ ଅନ୍ୟମାନେ ଅହଂକାର ବୋଲି କହି ତୁମର ନିନ୍ଦା କରିଥାନ୍ତି । ଏହା ମାନସିକ ଜଡ଼ତାର ପ୍ରମାଣ ଦେଇଥାଏ । ସମାଲୋଚନା ଓ ସ୍ୱାଧୀନ ଚିନ୍ତା ଜଣେ ବିପ୍ଳବୀଙ୍କ ପାଇଁ ଅପରିହାର୍ଯ୍ୟ ଗୁଣ ଅଟେ । ମହାତ୍ମାଜୀ ଜଣେ ମହାନ ପୁରୁଷ ହୋଇଥିବାରୁ ତାଙ୍କୁ କେହି ସମାଲୋଚନା କରି ପାରିବେ ନାହିଁ । ସେ ଯେହେତୁ ସାଧାରଣ

ମଣିଷର ସ୍ତରଠାରୁ ଊର୍ଦ୍ଧ୍ୱରେ ତେଣୁ ରାଜନୀତି, ଧର୍ମ, ଅର୍ଥନୀତି ବା ନୀତିବୋଧ ଯେକୌଣସି କ୍ଷେତ୍ରରେ ସେ ଯାହା କହିଛନ୍ତି ତାହା ଯଥାର୍ଥ । ତାଙ୍କର ମତ ତୁମର ହୃଦ୍‌ବୋଧ ହେଉ ବା ନ ହେଉ ଯେହେତୁ ଏହା ମହାତ୍ମାଙ୍କାଙ୍କର ମତ ତେଣୁ "ତାହା ନିଶ୍ଚୟ ଠିକ୍" ବୋଲି ଭାବିବା ଏକ ଯଥାର୍ଥ ଭାବନାର ପରିଚାୟକ ନୁହେଁ । ଏହି ଦୃଷ୍ଟିଭଙ୍ଗୀ ପ୍ରଗତିଶୀଳତାର ପରିପନ୍ଥୀ । ଏହା ସଂପୂର୍ଣ୍ଣ ଏକ କ୍ଷୟଶୀଳ ଭାବନା ।

ଆମର ପୂର୍ବପୁରୁଷମାନେ ଏକ ପରମ ସତ୍ତାରେ ବିଶ୍ୱାସ କରି ତାହାକୁ ସର୍ବଶକ୍ତିମାନ ଈଶ୍ୱର ବୋଲି ଚିତ୍ରଣ କରୁଥିଲେ । ସେହି ବିଶ୍ୱାସର ପ୍ରାସଙ୍ଗିକତାକୁ ଯଦି କେହି ପ୍ରଶ୍ନକରେ କିମ୍ବା ସେହି ଈଶ୍ୱରଙ୍କର ଅସ୍ତିତ୍ୱ ନେଇ ପ୍ରଶ୍ନ ଉଠାଏ ତେବେ ତାଙ୍କୁ ପାପୀ ଓ ଧର୍ମଦ୍ରୋହୀ ବୋଲି ଚିତ୍ରଣ କରାଯାଏ । ଯଦି ତାଙ୍କର ଯୁକ୍ତି ଅକାଟ୍ୟ ହୋଇଥାଏ ଯାହା ବିରୁଦ୍ଧରେ କୌଣସି ପ୍ରତିଯୁକ୍ତି ଦିଆଯାଇ ନ ପାରେ କିମ୍ବା ତାଙ୍କର ବଳିଷ୍ଠ ଯୁକ୍ତି କାହାର ବଶ୍ୟତା ସ୍ୱୀକାର ନ କରେ ଓ ଏପରିକି କଳ୍ପିତ ସର୍ବଶକ୍ତିମାନ ଈଶ୍ୱରଙ୍କର ଶାସ୍ତି ପ୍ରତି ଭ୍ରୂକ୍ଷେପ ନ କରି ତାହାକୁ ଅସ୍ୱୀକାର କରେ ତେବେ ତାହାକୁ ଅହଂକାରୀ ଏବଂ ତାଙ୍କର ମନୋଭାବକୁ ବୃଥା ଆସ୍ଫାଳନ ବୋଲି କୁହାଯାଇଥାଏ । କିନ୍ତୁ ଏହା ଯଥାର୍ଥ କି ? ସେପରି ହେଲେ ଏପରି ସବୁ ଆଲୋଚନାର କ'ଣ ଆବଶ୍ୟକତା ରହିଛି ? ଏ ବିଷୟରେ ଏହି ବୌଦ୍ଧିକ କସରତର କ'ଣ ମୂଲ୍ୟ ଅଛି ? ଏହିସବୁ ପ୍ରଶ୍ନ ପ୍ରଥମଥର ପାଇଁ ଜନସାଧାରଣଙ୍କ ସମ୍ମୁଖକୁ ଆସିଛି ଯାହାର ବିଶ୍ଳେଷଣ ବସ୍ତୁନିଷ୍ଠ ଆଧାରରେ କରିବାକୁ ଉଦ୍ୟମ ହୋଇଛି ଓ ଏହାର ପରିଣାମ ହେଉଛି ଏହି ବିସ୍ତୃତ ଆଲୋଚନା ।

ପ୍ରଥମ ପ୍ରସଂଗ ଉପରେ ଏହା କହିବା ଯଥାର୍ଥ କି କୌଣସି ଅହଂକାରର ବଶବର୍ତ୍ତୀ ହୋଇ ମୁଁ ନିରୀଶ୍ୱରବାଦକୁ ଗ୍ରହଣ କରିଛି ? ମୋର ଯୁକ୍ତି ଯଥାର୍ଥ କି ନୁହଁ ତାହା ପାଠକମାନେ ବିବେଚନା କରିବେ, ମୁଁ ନୁହେଁ । ସାମ୍ପ୍ରତିକ ପରିସ୍ଥିତିରେ ହୁଏତ ମୋର ଈଶ୍ୱର ବିଶ୍ୱାସ ମୋର ଜୀବନକୁ ଅଧିକ ସରଳ କରିପାରନ୍ତା, ମୋର ବୋଝକୁ ଲାଘବ କରିବାରେ ସହାୟକ ହୁଅନ୍ତା । କିନ୍ତୁ ମୋର ଅବିଶ୍ୱାସ ମୋର ଜୀବନଧାରାକୁ ଓ ଘଟଣାପ୍ରବାହକୁ ଅତି ଶୁଷ୍କ ଓ ନୀରସ କରିଦେଇଛି । ସାଧାରଣ କିଛିଟା ରହସ୍ୟବାଦୀ ଭାବନା ହୁଏତ ଜୀବନକୁ କାବ୍ୟମୟ କରିପାରନ୍ତା ।କିନ୍ତୁ ମୋ ଭାଗ୍ୟର ପରିଣତିକୁ ସମ୍ମୁଖୀନ ହେବାକୁ ମୋର କୌଣସି ଉଲ୍ଲାସ ଜନିତ ଉତ୍ତେଜନାର ଆବଶ୍ୟକତା ନାହିଁ । ମୁଁ ଜଣେ ପୂର୍ଣ୍ଣ ବାସ୍ତବବାଦୀ । ବିଚାରବୁଦ୍ଧି ସାହାଯ୍ୟରେ ମୁଁ ମୋର ପ୍ରବୃତ୍ତିକୁ ନିୟନ୍ତ୍ରଣ କରିବା ପାଇଁ ପ୍ରୟାସ କରି ଆସୁଛି । ଏହି ଲକ୍ଷ୍ୟ ହାସଲ କ୍ଷେତ୍ରରେ ମୁଁ ସର୍ବଦା ସଫଳ ହୋଇନାହିଁ । ସଫଳ

ନ ହେଲେ ମଧ ମଣିଷର କର୍ତ୍ତବ୍ୟ ହେଉଛି ପ୍ରୟାସ କରିବା । ପ୍ରୟାସ ବା ପ୍ରଚେଷ୍ଟା ଅବ୍ୟାହତ ରଖିବା ମଣିଷର କର୍ତ୍ତବ୍ୟ କିନ୍ତୁ ସଫଳତା ଏକ ଆକସ୍ମିକ ଘଟଣା ଯାହା ପରିସ୍ଥିତି ଉପରେ ନିର୍ଭରଶୀଳ ହୋଇଥାଏ ।

ଦ୍ୱିତୀୟ ପ୍ରଶ୍ନଟି ବିଚାରକୁ ନିଆଯାଉ । ଯଦି ନିରୀଶ୍ୱରବାଦ କ୍ଷେତ୍ରରେ ଅହଂକାର ନାହିଁ, ତେବେ ଏ କ୍ଷେତ୍ରରେ ଅନ୍ୟ କିଛି କାରଣ ରହିଛି । ଅର୍ଥାତ୍ ଈଶ୍ୱର ଅସ୍ତିତ୍ୱ ନେଇ ପୁରାତନ ବିଶ୍ୱାସ ଓ ବର୍ତ୍ତମାନ ସୁଦ୍ଧା ପ୍ରଚଳିତ ରହିଥିବା ଏହି ଭାବନା ପୃଷ୍ଠଭୂମିରେ ଏହାକୁ ଅସ୍ୱୀକାର କରିବା ପଶ୍ଚାତରେ ଅନ୍ୟକିଛି କାରଣ ରହିଛି । ମୋ ମତରେ ଯେଉଁ ବ୍ୟକ୍ତିର ବିଚାର କରିବାର ସାମର୍ଥ୍ୟ ରହିଛି ସେ ନିଜ ପରିବେଶକୁ ଯୁକ୍ତିଶୀଳ ଭାବରେ ଅବବୋଧ କରିବାକୁ ପ୍ରୟାସୀ ହୋଇଥାଏ । ଯେଉଁ କ୍ଷେତ୍ରରେ ପ୍ରତ୍ୟକ୍ଷ ପ୍ରମାଣର ଅଭାବ ରହିଛି, ସେଥିରେ ଧର୍ମୀୟ କଳ୍ପନା ବା ଆନ୍ଦୋଳନ ଦ୍ୱାରା କୌଣସି କିଛି କାରଣକୁ ଅବବୋଧ କରାଯାଇଛି । କେତେକ ସଂଗ୍ରାମୀ ବନ୍ଧୁ ମତ ଦିଅନ୍ତି ଯେ ମାନବିକ ଦୁର୍ବଳତା ମଧ୍ୟରୁ ଧର୍ମର ଉଦ୍ଭବ ହୁଏ । ଆମର ପୂର୍ବସୂରିମାନେ ଯେତେବେଳେ ପ୍ରଚୁର ଅବସର ପାଇଛନ୍ତି ସେମାନେ ଜଗତର ରହସ୍ୟ ବିଷୟରେ ଚିନ୍ତାକରି କାଳ୍ପନିକ ସମାଧାନମାନ ବାହାର କରିଛନ୍ତି । ଜଗତର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ତଥା ଏହାର ଉତ୍ପତ୍ତି, ସ୍ଥିତି ଇତ୍ୟାଦି ଜଟିଳ ପ୍ରଶ୍ନ ନେଇ ସେମାନେ ଯେତେବେଳେ ପ୍ରତ୍ୟକ୍ଷ ଜ୍ଞାନ ପାଇବାକୁ ସମର୍ଥ ହୋଇ ନାହାନ୍ତି, ପ୍ରତ୍ୟେକ ନିଜ ନିଜ ଶୈଳୀରେ ଏହି ସମସ୍ୟାମାନଙ୍କର ସମାଧାନ ବାହାର କରିବାକୁ ପ୍ରୟାସୀ ହୋଇଛନ୍ତି । ସୁତରାଂ ବିଭିନ୍ନ ଧର୍ମମାନଙ୍କର ମୌଳିକ ଭାବନା କ୍ଷେତ୍ରରେ ବହୁ ପାର୍ଥକ୍ୟ ଦୃଷ୍ଟିଗୋଚର ହୋଇଥାଏ । ଧର୍ମମାନଙ୍କର ତାତ୍ତ୍ୱିକ ସ୍ତରରେ ଏପରି ପରସ୍ପର ବିରୋଧୀ ଭାବନା ସବୁ ରହିଛି ଯାହା ବେଳକେ ଧର୍ମଗୋଷ୍ଠୀମାନଙ୍କ ମଧ୍ୟରେ ଅସୂୟା ତଥା ସଂଘର୍ଷ ଜନିତ ପରିବେଶ ସୃଷ୍ଟି କରିଥାଏ । କେବଳ ଯେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଧର୍ମ ଦର୍ଶନ କ୍ଷେତ୍ରରେ ପ୍ରଭେଦ ରହିଛି ତାହା ନୁହେଁ, ଏପରିକି ପ୍ରତ୍ୟେକ ଭୂଖଣ୍ଡର ଦାର୍ଶନିକ ବିଦ୍ୟାଳୟଗୁଡ଼ିକରେ ବହୁ ମତ ପାର୍ଥକ୍ୟ ରହିଛି । ପ୍ରାଚ୍ୟ ଭୂଖଣ୍ଡର ଧର୍ମମାନଙ୍କ ମଧ୍ୟରେ ମୁସଲମାନ ଧର୍ମ ଓ ହିନ୍ଦୁଧର୍ମ ଭିତରେ କୌଣସି ମେଳ ନାହିଁ । ଭାରତବର୍ଷରେ ବୌଦ୍ଧଧର୍ମ ଓ ଜୈନଧର୍ମ ବ୍ରାହ୍ମଣବାଦଠାରୁ ସମ୍ପୂର୍ଣ୍ଣ ପୃଥକ ମନେହୁଏ । ପୁନଶ୍ଚ ବ୍ରାହ୍ମଣବାଦୀ ପରମ୍ପରାରେ ଆର୍ଯ୍ୟସମାଜ ସନାତନ ଧର୍ମ ପରି ବହୁ ପରସ୍ପର ବିରୋଧୀ ଆଦର୍ଶ ଦେଖିବାକୁ ମିଳିଥାଏ । ଭାରତବର୍ଷରେ ଚାର୍ବାକ ମତବାଦ ଅତୀତର ଏକ ସ୍ୱାଧୀନ ମତବାଦ ଭାବେ ମୁଣ୍ଡ ଟେକିଥିଲା । ପ୍ରାଚୀନ ଯୁଗରେ ଈଶ୍ୱର ଭାବନାକୁ ଚାର୍ବାକ ମଧ

ଆହ୍ୱାନ ଦେଇଥିଲେ । ଏହି ସମସ୍ତ ସମ୍ପ୍ରଦାୟ ମୌଳିକ ପ୍ରଶ୍ନଗୁଡ଼ିକ ଉପରେ ପରସ୍ପରଠାରୁ ଭିନ୍ନ ମତ ପୋଷଣ କରିଥାନ୍ତି ଓ ସେମାନଙ୍କ ଭିତରେ ପ୍ରଭେଦ ଅତି ସୁସ୍ପଷ୍ଟ । ପୁନଶ୍ଚ ପ୍ରତ୍ୟେକ ଗୋଷ୍ଠୀ ନିଜ ମତକୁ ଯଥାର୍ଥ ବୋଲି ମନେ କରିଥାନ୍ତି ଏହା ହିଁ ହେଉଛି ସବୁଠାରୁ ଦୁର୍ଭାଗ୍ୟଜନକ ଘଟଣା । ପ୍ରାଚୀନ ବିଦ୍ୱାନ ଓ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଜ୍ଞାନ ଓ ଅନୁଭୂତିକୁ ଆଧାର କରି ଅଜ୍ଞତାକୁ ଦୂର କରିବା ପାଇଁ ପ୍ରୟାସ କରିବା ପରିବର୍ତ୍ତେ ଆମେ ପରସ୍ପରକୁ ବିରୋଧ କରିବାରେ ଓ ଆମର ପାର୍ଥକ୍ୟ ନେଇ ତୁମ୍ଭି ତୋଫାନ କରିବାରେ ବ୍ୟସ୍ତ । ଆମେ ନିଶ୍ଚେଷ୍ଟ ଭାବରେ ସେହି କେତେକ ପ୍ରାଚୀନ ବିଶ୍ୱାସର ଗଣ୍ଡି ଭିତରେ ରହି ପରିବର୍ତ୍ତନରୋଧୀ ହେବା ସହ ବୌଦ୍ଧିକ ଉତ୍କର୍ଷ ସାଧନ ଦିଗରେ ପ୍ରୟାସୀ ହେଉନାହୁଁ । ବରଂ କେତେକ ତୁଚ୍ଛା ଭୂତୀବାଦୀ ଭାବନା ଭିତରେ ମଜ୍ଜି ରହି ମାନବିକ ପ୍ରଗତିର ପ୍ରତିବନ୍ଧକ ହୋଇଥାଉ ।

ସାମାଜିକ ପ୍ରଗତି ପ୍ରତି ଉତ୍ତରଦାୟୀ ଥିବା ବ୍ୟକ୍ତି ପ୍ରାଚୀନ ବିଶ୍ୱାସ ଓ ଚଳଣି ସକଳକୁ ସମାଲୋଚନା କରିବା, ଅବିଶ୍ୱାସ କରିବା ଓ ଆହ୍ୱାନ ଦେବା ସ୍ୱାଭାବିକ ଅଟେ । ପ୍ରଚଳିତ ବିଶ୍ୱାସ ସକଳକୁ ପୁଙ୍ଖାନୁପୁଙ୍ଖ ଭାବରେ ସେ ଅନୁଶୀଳନ କରିଥାଏ । ଏକ ଅନୁଶୀଳନାତ୍ମକ ବିଶ୍ଳେଷଣଦ୍ୱାରା ସେସବୁର ସାରବତ୍ତା ସାବ୍ୟସ୍ତ କରିବା ଦରକାର । ବିଚାରଶୀଳ ଭାବରେ ଯଦି କୌଣସି ଯୁକ୍ତିସମ୍ମତ ସିଦ୍ଧାନ୍ତ ବା ଦର୍ଶନରେ ସେ ଉପନୀତ ହୁଏ ତେବେ ତାହା ଅତ୍ୟନ୍ତ ସ୍ୱାଗତଯୋଗ୍ୟ । କିନ୍ତୁ ବେଳେବେଳେ ବିଚାରକ୍ଷେତ୍ରରେ ତ୍ରୁଟି ହେବା, ଭ୍ରମ ସୃଷ୍ଟିହେବା ଓ ଏପରିକି ତର୍କଦୋଷ ହେବା ମଧ୍ୟ ସମ୍ଭବ । କିନ୍ତୁ ଯେହେତୁ ସେ ଜୀବନରେ ବିଚାରଶୀଳ ତାର୍କିକ ମାନଦଣ୍ଡର ଅନୁଗାମୀ, ତେଣୁ ନିଜର ଭ୍ରାନ୍ତି ବା ତ୍ରୁଟିକୁ ଅକ୍ଳେଶରେ ସେ ସଂଶୋଧିତ କରିଦେଇ ପାରିବେ । କିନ୍ତୁ କେବଳ ମାତ୍ର ବିଶ୍ୱାସ ଓ ଅନ୍ଧବିଶ୍ୱାସ ଅତି ବିପଦଜନକ, ଏହା ମଣିଷର ମାନସିକ ସାମର୍ଥ୍ୟକୁ ପଙ୍ଗୁ କରିଦିଏ ଓ ଜଣେ ବ୍ୟକ୍ତିକୁ ପ୍ରତିକ୍ରିୟାଶୀଳ କରିଥାଏ । ଯେଉଁ ବ୍ୟକ୍ତି ନିଜକୁ ବାସ୍ତବବାଦୀ ବୋଲି ଦାବିକରେ ସେ ପ୍ରାଚୀନ ବିଶ୍ୱାସ ସକଳକୁ ଅନୁଶୀଳନ କରିବାରେ ବ୍ରତୀ ହେବା ଆବଶ୍ୟକ । ଯେଉଁ ଭାବନା ଯୁକ୍ତିର କଷଟିରେ ପରୀକ୍ଷିତ ହୋଇପାରେ ନାହିଁ ତାହାକୁ ପ୍ରତ୍ୟାଖ୍ୟାନ କରାଯିବା ଦରକାର । ନିଜ ମନରୁ ଅଯୌକ୍ତିକ ଭାବନା ସକଳକୁ ପରିହାର କରିବା ଦ୍ୱାରା ଏକ ନୂତନ ଦର୍ଶନ ପାଇଁ ସ୍ଥାନ ମିଳିପାରେ । ଏହା ଏହାର ନକାରାତ୍ମକ ଦିଗ ଅଟେ । ଏହାପରେ ସକାରାତ୍ମକ ଭାବେ ପ୍ରାଚୀନ ବିଶ୍ୱାସରେ କୌଣସି ପ୍ରସଙ୍ଗର ଯଥାର୍ଥତା ଥିଲେ ତାହାକୁ ଗ୍ରହଣ କରି କୌଣସି ନୂତନ ସିଦ୍ଧାନ୍ତର ଅବତାରଣା କରାଯାଇପାରେ ।

ମୁଁ ପ୍ରଥମରୁ କହିରଖେ ଯେ ମୁଁ ଏହି ପ୍ରସଙ୍ଗ ଉପରେ ଅନେକ କିଛି ଅଧ୍ୟୟନ କରିବାର ଅବକାଶ ପାଇନାହିଁ । ପ୍ରାଚ୍ୟ ଦର୍ଶନ ପଢ଼ିବାରେ ମୋର ବହୁତ ଆଗ୍ରହ ଥିଲା କିନ୍ତୁ ଏଥିପାଇଁ ମୁଁ କୌଣସି ଅବକାଶ ବା ସୁଯୋଗ ପାଇଲି ନାହିଁ । କିନ୍ତୁ ନକାରାତ୍ମକ ଅଧ୍ୟୟନ ପରିପ୍ରେକ୍ଷୀରେ ଏହା କହିବା ଯଥାର୍ଥ ଯେ, ପ୍ରାଚୀନ ବିଶ୍ୱାସଗୁଡ଼ିକ ସନ୍ଦେହଜନକ ଓ ସେଗୁଡ଼ିକର ଯୁକ୍ତିଶୀଳ ଆଧାର ଆଦୌ ଅକାଟ୍ୟ ନୁହେଁ । ପ୍ରକୃତିକୁ ପରିଚାଳିତ କରୁଥିବା ଓ ନିର୍ଦ୍ଦେଶ ଦେଉଥିବା ଏକ ସର୍ବଶକ୍ତିମାନ ସଚେତନ ସତ୍ତାର ସ୍ଥିତିକୁ ମୁଁ ଗ୍ରହଣ କରିପାରୁନାହିଁ । ଆମ ଚତୁଃପାର୍ଶ୍ୱରେ ରହିଥିବା ପ୍ରକୃତିକୁ ଆମେ ବିଶ୍ୱାସ କରୁ । ପ୍ରକୃତି ଉପରେ ମଣିଷର କର୍ତ୍ତୃତ୍ୱ ସ୍ଥାପନ ଦ୍ୱାରା ପ୍ରଗତିର ରଥଚକ ଆଗକୁ ଯିବା ସମ୍ଭବ ହୋଇଛି । ପ୍ରକୃତି ଉପରେ ମଣିଷ କ୍ରମବର୍ଦ୍ଧିଷ୍ଣୁ ନିୟନ୍ତ୍ରଣ ଜାହିର କରିଚାଲିଛି । ପ୍ରକୃତିକୁ ନିର୍ଦ୍ଦେଶ ଦେଉଥିବା କୌଣସି ଅଦୃଶ୍ୟ ସଚେତନ ଶକ୍ତି ନାହିଁ । ଏହାହିଁ ହେଉଛି ଆମର ସୁଚିନ୍ତିତ ମତ ।

ନକାରାତ୍ମକ ଦୃଷ୍ଟିକୋଣରୁ ଆସ୍ତିକମାନଙ୍କ ଉଦ୍ଦେଶ୍ୟରେ ମୁଁ ଏହି ପ୍ରଶ୍ନ ପଚାରୁଛି :

ଆପଣମାନେ ଏହି ବିଶ୍ୱକୁ ସୃଷ୍ଟି କରିଥିବା ଏକ ସର୍ବବିଦ୍ୟମାନ, ସର୍ବଜ୍ଞ ଓ ସର୍ବଶକ୍ତିମାନ ଈଶ୍ୱରଙ୍କୁ ବିଶ୍ୱାସ କରୁଛନ୍ତି । କିନ୍ତୁ ସେ କାହିଁକି ଏହିପରି ଏକ ସୃଷ୍ଟି ସର୍ଜନା କଲେ ? ଆମ ସଂସାରରେ ଏତେ ଦୁଃଖ, ଯନ୍ତ୍ରଣା କାହିଁକି ରହିଛି ? ଅପରିସୀମ ଦୁର୍ଦ୍ଦଶା ଓ ସଂକଟ ଥାଇ ଏପରି ସର୍ଜନା କରିବା ପଶ୍ଚାତରେ କ'ଣ ଉଦ୍ଦେଶ୍ୟ ରହିଛି ? କୌଣସି ଗୋଟିଏ ଆତ୍ମା ମଧ୍ୟ ସନ୍ତୋଷ ପାଇପାରୁ ନାହିଁ ।

ଏହା ଯେ ତାଙ୍କର ନିୟମ ଏହା କହିବା ଠିକ୍ ନୁହେଁ । ଯଦି ସେ ନିୟମର ଅଧୀନ ତେବେ ସେ ସର୍ବଶକ୍ତିମାନ ନୁହନ୍ତି । ସେ ଆମମାନଙ୍କ ପରି ପରିସ୍ଥିତିର କ୍ରୀଡ଼ନକ । ଏହା ଯେ ତାଙ୍କର ଆନନ୍ଦ ଏହା କହିବାରେ କିଛି ଅର୍ଥନାହିଁ । ଗୋଟିଏ ରୋମକୁ ନିରୋ ଧ୍ୱଂସ କରିଦେଇଥିଲେ । ସେ ଏକ ସୀମିତ ସଂଖ୍ୟକ ଲୋକମାନଙ୍କୁ ହତ୍ୟା କରିଥିଲେ । ନିଜର ଆନନ୍ଦ ଓ ଉପଭୋଗ ପାଇଁ ସେ ସୀମିତ ଶୋକାତ୍ମକ ଘଟଣା ସୃଷ୍ଟି କରିଥିଲେ, ହେଲେ ଇତିହାସରେ ତାଙ୍କର ସ୍ଥାନ କେଉଁଠି ? ଐତିହାସିକମାନେ କେଉଁ ବିଶେଷଣ ଦେଇ ତାଙ୍କୁ ବର୍ଣ୍ଣନା କରିଥାନ୍ତି ? ତାଙ୍କୁ ସମସ୍ତ ମନ୍ଦ ଉପାଧି ଦେଇ ବର୍ଣ୍ଣନା କରାଯାଇଥାଏ । ଅତ୍ୟାଚାରୀ ନିରୋଙ୍କୁ ପାଷାଣ୍ଡ ଓ ଦୁରାଚାରୀ କହି ତାଙ୍କ ଅପଯଶ ଓ ଅକୀର୍ତ୍ତି ଗାନରେ ଇତିହାସର ପୃଷ୍ଠା ମଳିନ ପଡ଼ିଯାଇଛି । ଜଣେ ଚେଙ୍ଗିଜ ଖାଁ ହଜାର ହଜାର ଲୋକଙ୍କୁ ହତ୍ୟା କରି ସେଥିରୁ ସନ୍ତୋଷ ଲାଭ କରିଛନ୍ତି ଓ ସେଥିପାଇଁ [illegible] ତାଙ୍କର ନାମ ଶୁଣିଲେ ବି ଘୃଣାକରୁ । ତା'ହେଲେ ମଣିଷକୁ ସବୁ ପର୍ଯ୍ୟାୟରେ ଅସଂଖ୍ୟ ଦୁର୍ଦ୍ଦଶା ଓ ସଂକଟ

ଦେଇଥିବା ଏବଂ ଏବେବି ଦେଉଥିବା ସେହି ସର୍ବଶକ୍ତିମାନ ଓ ଶାଶ୍ୱତ ନିରୋଙ୍କ କାର୍ଯ୍ୟକୁ କିପରି ଖାଁଙ୍କର କାର୍ଯ୍ୟର ଶତଗୁଣ ତାକୁ ଆପଣ କିପରି ସମର୍ଥନ କରିବେ ? ଚେଙ୍ଗିଜ ଖାଁଙ୍କର କାର୍ଯ୍ୟ ଯାହାଙ୍କର ପ୍ରତି ମୁହୂର୍ତ୍ତର କାର୍ଯ୍ୟ ପାଖରେ ମଳିନ ପଡ଼ିଯିବ, ସେହି କାର୍ଯ୍ୟକୁ ସମର୍ଥନ କରିବାକୁ ଆପଣ କିପରି ଭାବୁଛନ୍ତି ? ମଣିଷ ନର୍କ ଯନ୍ତ୍ରଣା ପାଉଥିବା ଏହିପରି ଏକ ଚିର ବିଶୃଙ୍ଖଳ ଜଗତ ସୃଷ୍ଟି କରିବାରେ ତାଙ୍କର କ'ଣ ଉଦ୍ଦେଶ୍ୟ ରହିଛି ? ଆପଣ କ'ଣ କହିବେ ଯେ ନିରୀହ ଅଥଚ ଯନ୍ତ୍ରଣା ଜର୍ଜରିତ ମଣିଷମାନଙ୍କୁ ପୁରସ୍କୃତ କରିବା ଏବଂ ମନ୍ଦକାର୍ଯ୍ୟରେ ଲିପ୍ତ ମଣିଷମାନଙ୍କୁ ମୃତ୍ୟୁପରେ ଦଣ୍ଡବିଧାନ କରିବା ତାଙ୍କର ଉଦ୍ଦେଶ୍ୟ ? ବାଃ, ତା'ହେଲେ ଆପଣ କହିବେ ଯେ ଜଣେ ବ୍ୟକ୍ତି ଆପଣଙ୍କ ଶରୀରରେ ଏକ ଆରାମପ୍ରଦ ମଲମ ଲଗାଇବା ପାଇଁ ପ୍ରଥମେ ଆପଣଙ୍କୁ କ୍ଷତ ବିକ୍ଷତ କରିବା ଏକ ଯଥାର୍ଥ କାର୍ଯ୍ୟ ? ପ୍ରାଚୀନ କାଳରେ କେତେକ ଦେଶରେ ପ୍ରଚଳିତ ଥିବା ଗ୍ଲାଡ଼ିଏଟର ଅନୁଷ୍ଠାନର ଆୟୋଜକ ଓ ସମର୍ଥକଙ୍କର କାର୍ଯ୍ୟ ଯଥାର୍ଥ କି ? ଏହି ଅନୁଷ୍ଠାନ ଏକ ଖେଳରେ ଆୟୋଜନ କରିଥିଲେ । ଯେଉଁଥିରେ ଭୋକିଲା ବାଘ ମୁହଁକୁ ହୃଷ୍ଟପୁଷ୍ଟ ଲୋକମାନଙ୍କୁ ଛଡ଼ାଯାଏ । ବାଘ ସହିତ ସଂଗ୍ରାମ କରି ଯେଉଁ ବ୍ୟକ୍ତି ବଞ୍ଚିପାରେ ତାହାକୁ ବଳବାନ ବୋଲି ପୁରସ୍କୃତ କରାଯାଏ । ଏହି ଖେଳକୁ ଅନ୍ୟମାନେ ବସି ଉପଭୋଗ କରନ୍ତି । ''ଗ୍ଲାଡ଼ିଏଟର ଫାଇଟ'' ନାମରେ ପରିଚିତ ଏହି ଖେଳ କେତେକ ପ୍ରାଚୀନ ସଭ୍ୟତାରେ ପ୍ରବର୍ତ୍ତିତ ଥିଲା । ସେହିପରି ସର୍ବଶକ୍ତିମାନ ଈଶ୍ୱର କ'ଣ ମଣିଷର ଦୁଃଖ, ଯନ୍ତ୍ରଣାକୁ ଉପଭୋଗ କରିବା ପାଇଁ ଏହି ଜଗତ ଓ ମଣିଷକୁ ସୃଷ୍ଟି କରିଛନ୍ତି ? ତା'ହେଲେ ତାଙ୍କ ଭିତରେ ଓ ନିରୋ ମଧ୍ୟରେ କେଉଁଠି ପାର୍ଥକ୍ୟ ରହିଛି ? ହିନ୍ଦୁ ଦର୍ଶନରେ କେତେକ କୌଶଳତାର ସହ ଜନ୍ମାନ୍ତରବାଦ ଭାବନାକୁ ଏଥିପାଇଁ କଳ୍ପନା କରାଯାଇଛି କିନ୍ତୁ ମୁସଲମାନ ଓ ଖ୍ରୀଷ୍ଟିଆନମାନଙ୍କର ଏଥିପାଇଁ କ'ଣ ଉତ୍ତର ରହିଛି ? ନିରୀହ ମଣିଷଙ୍କର ଅସୁମାରୀ ଦୁଃଖ ଦୁର୍ଦ୍ଦଶାକୁ ସେମାନେ କିପରି ବୁଝାଇବେ ? ପୂର୍ବଜନ୍ମର ମନ୍ଦକାର୍ଯ୍ୟ ଏ ଜନ୍ମର ଦୁଃଖ ଦୁର୍ଦ୍ଦଶା ପାଇଁ ଯେ ଦାୟୀ, ଏହିପରି ହିନ୍ଦୁ ବିଶ୍ୱାସ ମୁସଲମାନ ଓ ଖ୍ରୀଷ୍ଟଧର୍ମରେ ନାହିଁ । ସର୍ବଶକ୍ତିମାନ ଈଶ୍ୱର ଛଅଦିନ ଭିତରେ ବାଚନିକ ଭାବେ ସୃଷ୍ଟି ସର୍ଜନା କରି ସବୁ ଠିକ୍‌ରେ ହୋଇଛି ବୋଲି କହିଲେ । ତାଙ୍କୁ ବର୍ତ୍ତମାନ ଡାକି ଅତୀତର ଇତିହାସ କହିବା ସହିତ ବର୍ତ୍ତମାନର ସମସ୍ତ ପରିସ୍ଥିତି ଜଣାଇବା ପରେ ସେ କ'ଣ କହିବାକୁ ସାହସ କରିବେ ଯେ ''ସବୁ ଠିକ୍ ଅଛି.'' !

ନିଭୃତ କାରାଗାର କକ୍ଷରେ ଯନ୍ତୁଥିବା ମଣିଷ, ଝୁମ୍ପୁଡ଼ି ଓ ବସ୍ତି ଭିତରେ

ଭୋକ,ଉପାସରେ ବଞ୍ଚୁଥିବା ନିୟୂତ ନିୟୂତ ମଣିଷ, କଳ କାରଖାନାରେ ଶୋଷିତ ହୋଇ ଲହୁଲୁହ ଦେଇ ଯନ୍ତ୍ରଣାରେ ଜର୍ଜରିତ ହୋଇ ବଞ୍ଚୁଥିବା ମଣିଷ, ଶକ୍ତି ସାମର୍ଥ୍ୟର ଅପଚୟକୁ ଅବଲୋକନ କରି ଅନ୍ତରରେ ଫାଟି ପଡୁଥିବା ମଣିଷ ଇତ୍ୟାଦିଙ୍କୁ ଦେଖନ୍ତୁ । ମେହେନତି ମଣିଷର ଲହୁ, ଲୁହରେ ଗଢ଼ିଉଠିଛି ରାଜପ୍ରାସାଦ, ଓ ଶୋଷକର ଅଟ୍ଟାଳିକା ଅଗଣିତ ମଣିଷର ଶ୍ରମରେ ଉତ୍ପାଦିତ ହେଉଥିବା ଶସ୍ୟର ମାଲିକମାନେ ଶସ୍ୟର ମୂଲ୍ୟହ୍ରାସ ଆଶଙ୍କା କରି ବଳକା ଶସ୍ୟକୁ ମଣିଷକୁ ନ ବାଣ୍ଟି ନଷ୍ଟ କରିବା ଘଟଣା ଇତ୍ୟାଦିକୁ ତୁମର ସର୍ବଶକ୍ତିମାନ ଈଶ୍ୱର ଦେଖି ତଥାପି କୁହନ୍ତି ''ସବୁ ଠିକ୍ ଚାଲିଛି ।'' ସବୁକିଛି କିପରି ଓ କେଉଁଠି ଠିକ୍ ଚାଲିଛି ମୁଁ ବୁଝିପାରୁ ନାହିଁ । ତୁମର ଏ କ୍ଷେତ୍ରରେ କ'ଣ ଉତ୍ତର ରହିଛି ନା ତୁମେ ନିରୁତ୍ତର ? ଠିକ୍ ଅଛି, ତାହେଲେ ମୁଁ ତାର ଉତ୍ତର ଦେଉଛି ।

ତୁମେ ହିନ୍ଦୁମାନେ ମତ ପୋଷଣ କର ଯେ ବର୍ତ୍ତମାନ ଯେଉଁମାନେ ଦୁଃଖ ଦୁର୍ଦ୍ଦଶା ଭିତରେ ରହିଛନ୍ତି ସେମାନେ ପୂର୍ବଜନ୍ମରେ ଥିଲେ ପାପୀ । ସେହିପରି ବର୍ତ୍ତମାନ ଯେଉଁମାନେ କ୍ଷମତାଧର ହୋଇ ଅତ୍ୟାଚାରୀ ପାଲଟିଛନ୍ତି ସେମାନେ ତାଙ୍କର ପୂର୍ବଜନ୍ମରେ ଥିଲେ ସାଧୁ । ଅର୍ଥାତ୍ ଅତୀତରେ ସେମାନେ ସାଧୁ ଥିବାରୁ ଏବେ ସେମାନେ କ୍ଷମତା ଉପଭୋଗ କରୁଛନ୍ତି । ଏହି ମତପୋଷଣ କରୁଥିବା ତୁମର ପୂର୍ବସୂରିମାନେ ନିଶ୍ଚୟ ଧୂର୍ତ୍ତ ବା ଚତୁର ହୋଇଥିବେ କାରଣ ତର୍କଶୀଳ ଭାବନାକୁ ପ୍ରତିହତ କରିବାକୁ ସେମାନେ ଏପରି ଚତୁର ସିଦ୍ଧାନ୍ତର ଅବତାରଣା କରିଛନ୍ତି । ସେମାନେ ଯେଉଁ ବୈଚାରିକ ମତ ଅବଲମ୍ବନରେ ସାମାଜିକ ସ୍ଥିତିକୁ ବୁଝିବାକୁ ପ୍ରୟାସ କରିଛନ୍ତି, ତାହାକୁ ଅନ୍ୟମାନେ ଅକ୍ଲେଶରେ ଅବିଶ୍ୱାସ କରିପାରିବେ ନାହିଁ । କିନ୍ତୁ ସେମାନଙ୍କ ଯୁକ୍ତି କେତେଦୂର ଯଥାର୍ଥ ତାହା ଏହି ପୃଷ୍ଠଭୂମିରେ ବିଚାର୍ଯ୍ୟ ।

ପ୍ରସିଦ୍ଧ ଆଇନଜ୍ଞମାନଙ୍କ ମତରେ ଜଣେ ଅପରାଧୀଙ୍କ ବିରୁଦ୍ଧରେ ଅଭିଯୋଗ ପ୍ରମାଣିତ ହେଲେ ତାଙ୍କୁ ଦଣ୍ଡପ୍ରଦାନ କରାଯିବା ନ୍ୟାୟସଙ୍ଗତ, କାରଣ ଏହା ତିନି ଚାରୋଟି ଲକ୍ଷ୍ୟ ପୂରଣ ପାଇଁ ଅଭିପ୍ରେତ । ଦଣ୍ଡବିଧାନ କ୍ଷେତ୍ରରେ ଯେଉଁ ସିଦ୍ଧାନ୍ତମାନ ରହିଛି ତାହାହେଲା ପ୍ରତିକାରୀ ଦଣ୍ଡସିଦ୍ଧାନ୍ତ, ସଂସ୍କାର ଦଣ୍ଡସିଦ୍ଧାନ୍ତ ଓ ନିବାରଣାର୍ଥକ ଦଣ୍ଡସିଦ୍ଧାନ୍ତ । ପ୍ରତିକାରୀ ଦଣ୍ଡସିଦ୍ଧାନ୍ତ ଭାବନାକୁ ସମସ୍ତ ଆଧୁନିକ ଚିନ୍ତାନାୟକମାନେ ପ୍ରତ୍ୟାଖ୍ୟାନ କରୁଛନ୍ତି । ନିବାରଣାର୍ଥକ ଦଣ୍ଡସିଦ୍ଧାନ୍ତ ମଧ ସମ୍ପ୍ରତି ସେପରି ଗ୍ରହଣଯୋଗ୍ୟ ହେଉନାହିଁ । ମାନବିକ ପ୍ରଗତି ପାଇଁ ସଂସ୍କାରବାଦୀ ଦଣ୍ଡସିଦ୍ଧାନ୍ତକୁ ମହତ୍ୱପୂର୍ଣ୍ଣ ଓ ଅପରିହାର୍ଯ୍ୟ ବୋଲି ସମ୍ପ୍ରତି ମନେ କରାଯାଉଛି । ଏହି ମତାନୁଯାୟୀ ଅପରାଧୀ ବ୍ୟକ୍ତିଟିକୁ ପୁନଶ୍ଚ ଜଣେ

ଶାନ୍ତିପ୍ରିୟ ଓ ଦକ୍ଷ ବ୍ୟକ୍ତି ଭାବରେ ସମାଜରେ ସ୍ଥାନ ଦେବା ଆବଶ୍ୟକ । କିନ୍ତୁ ଈଶ୍ୱରଙ୍କ କ୍ଷେତ୍ରରେ ଯଦି ବି ଧରିନିଆଯାଏ ଯେ ମଣିଷମାନେ ଅପରାଧୀ ତେବେ ଈଶ୍ୱର ତାଙ୍କୁ କେଉଁ ପ୍ରକାର ଦଣ୍ଡବିଧାନ କରିବା ଦରକାର ? ଆପଣ କହିବେ ଈଶ୍ୱର ଦଣ୍ଡସ୍ୱରୂପ ବ୍ୟକ୍ତିକୁ ଗୋଟିଏ ଗାଈ, ବିଲେଇ, ବୃକ୍ଷ, ତୃଣ ବା ଗୋଟିଏ ପଶୁ ଭାବରେ ଜନ୍ମ ହେବାକୁ ନିର୍ଦ୍ଦେଶ ଦିଅନ୍ତି । ଈଶ୍ୱର ଚଉରାଅଶୀ ଲକ୍ଷ ଦଣ୍ଡ ଭିତରୁ ଯେକୌଣସି ଦଣ୍ଡ ଦେଇ ପାରିବେ ବୋଲି ଆପଣମାନେ ଗଣନାକରି କହିଥାନ୍ତି । ମୋର ପ୍ରଶ୍ନ ହେଉଛି, ଏହାର କି ପ୍ରକାର ସଂସ୍କାରବାଦୀ ପ୍ରଭାବ ମଣିଷ ଉପରେ ପଡ଼ିଥାଏ ? ମନ୍ଦକାର୍ଯ୍ୟ କରିଥିବାରୁ ପୂର୍ବଜନ୍ମରେ ଗଧ ହୋଇ ଜନ୍ମ ହୋଇଛନ୍ତି ବୋଲି କେତେଜଣ ଆପଣଙ୍କୁ କହିଛନ୍ତି ? ସେପରି କେହି ଜଣେ ହେଲେ ମଧ କହିବାର ଦୃଷ୍ଟାନ୍ତ ନାହିଁ । ଆପଣମାନେ କେବଳ ପୁରାଣରୁ ଉଦ୍ଧାରକରି ଏହି ବିଷୟରେ କହିବାକୁ ପ୍ରୟାସ କରନ୍ତୁ ନାହିଁ, କାରଣ ସେହି ପୌରାଣିକ କାହାଣୀକୁ ପ୍ରମାଣ କରିବାର ଆଧାର କିଛି ନାହିଁ । ସେହିପରି ଦରିଦ୍ର ହୋଇ ରହିବା ହେଉଛି ସବୁଠାରୁ ବଡ଼ପାପ । ଦାରିଦ୍ର୍ୟ ହେଉଛି ପାପର ପରିଣାମ ଯାହାକୁ ଏକ ଦଣ୍ଡ ଭାବରେ ଦିଆଯାଇଛି । ଜଣେ ଅପରାଧକ ଜ୍ଞାନ ବିଶେଷଜ୍ଞ, ଜଣେ ନ୍ୟାୟାଧୀଶ ବା ଜଣେ ବିଧାୟକ ଅପରାଧ କ୍ଷେତ୍ରରେ ଯଦି ଏ ପ୍ରକାର ଦଣ୍ଡ ବିଧାନ କରିବାକୁ ଚାହିଁବେ ତେବେ ତାହା ଆପଣଙ୍କ ଦ୍ୱାରା ଗ୍ରହଣଯୋଗ୍ୟ ହେବ କି ? ବରଂ ଏହା କରିବାଦ୍ୱାରା ଏହାର ଅବଶ୍ୟମ୍ଭାବୀ ପରିଣାମ ସ୍ୱରୂପ ବ୍ୟକ୍ତି ଅଧିକ ଅପରାଧ କରିବାକୁ ଆଗଭର ହେବ । ଆପଣଙ୍କର ଈଶ୍ୱର କ'ଣ ଏହା ଜାଣିନାହାନ୍ତି ଦାରିଦ୍ର୍ୟ ବେଳକେ ମଣିଷକୁ ଅପରାଧୀ କରିଥାଏ ? ଈଶ୍ୱର କ'ଣ ଏହା ଅନୁଭୂତିରୁ ଜାଣିବା ପାଇଁ ମଣିଷ ଜାତି ଉପରେ ଏପରି ଅକଥନୀୟ ଦୁର୍ଦ୍ଦଶା ଦେଇଛନ୍ତି ? ଗୋଟିଏ ଦରିଦ୍ର ଓ ମୂର୍ଖ ବ୍ୟକ୍ତି ଚମାର ବା ଝାଡୁଦାର ପରିବାରରେ ଜନ୍ମହେବାଦ୍ୱାରା ସେହି ବ୍ୟକ୍ତିର ଭାଗ୍ୟ କ'ଣ ହେବ ବୋଲି ଆପଣ ଭାବୁଛନ୍ତି ? ସେ ଗରିବ ହେତୁ ଅଧ୍ୟୟନ କରିପାରିବ ନାହିଁ । ସେ ନୀଚ କୁଳରେ ଜନ୍ମ ହୋଇଥିବା ଯୋଗୁଁ ତଥାକଥିତ ଉଚ୍ଚଜାତିର ବ୍ୟକ୍ତିଙ୍କଦ୍ୱାରା ଘୃଣିତ ଓ ପ୍ରତ୍ୟାଖ୍ୟାତ ହୋଇଥାଏ । ଅର୍ଥାତ୍ ଉଚ୍ଚଜାତିର ଲୋକମାନେ ନିଜ ଜାତିର ଶ୍ରେଷ୍ଠତାକୁ ନେଇ ଅନ୍ୟ ସହୋଦର ମଣିଷମାନଙ୍କୁ ନ୍ୟୂନ ଦୃଷ୍ଟିରେ ଦେଖିଥାନ୍ତି । ତା'ର ଅଜ୍ଞତା, ଦାରିଦ୍ର୍ୟ ଓ ଅନ୍ୟମାନଙ୍କଠାରୁ ପାଉଥିବା ଅମାନବିକ ବ୍ୟବହାରର ସମ୍ମିଳିତ ପରିଣାମ ହେଉଛି ସେ ସମାଜ ପ୍ରତି ଏକ ରୁକ୍ଷ ମନୋଭାବ ପୋଷଣ କରିଥାଏ । ସେହି ସ୍ଥିତିରେ ଯଦି ସେ କିଛି ଅପରାଧ ବା ପାପ କାର୍ଯ୍ୟରେ ସମ୍ପୃକ୍ତ ହୁଏ ତେବେ ଏଥିପାଇଁ ଦାୟୀ କିଏ ? ଏଥିପାଇଁ ଈଶ୍ୱର, ସେ ବ୍ୟକ୍ତି ଅଥବା ସାମାଜିକ ନୀତି

ନିୟମକୁ କଡ଼ାକଡ଼ିକରି ମାନି ଚଳୁଥିବା ବିଜ୍ଞ ବ୍ୟକ୍ତିଗଣ, କାହାକୁ ଦାୟୀ କରାଯିବା ଠିକ୍ ହେବ ? ତଳସ୍ତରରେ ପଡ଼ିଥିବା ଏହି ଅଜ୍ଞ ଓ ଦରିଦ୍ର ବ୍ୟକ୍ତିମାନଙ୍କର ଅପରାଧ ପାଇଁ କି ପ୍ରକାର ଦଣ୍ଡବିଧାନ ହେବା ଉଚିତ ? ଅବଶ୍ୟ ସେମାନଙ୍କୁ ସମାଜର କୁଟିଳ ଓ ସ୍ୱାର୍ଥପର ବ୍ରାହ୍ମଣମାନେ ଜାଣିଶୁଣି ତଳେ ପକାଇ ରଖି ଆସିଛନ୍ତି । ଆପଣଙ୍କ ଧର୍ମଶାସ୍ତ୍ର ବେଦରୁ ସାମାନ୍ୟ କିଛି ପଢ଼ିବାକୁ ପ୍ରଯତ୍ନ କଲେ ଓ ଏପରିକି ଏହା ତାଙ୍କ କାନରେ ବାଜିଲେ ମଧ୍ୟ ଦୋଷାବହ ବୋଲି ଆପଣମାନେ ନିୟମ କରିଛନ୍ତି ଓ ସେହି ଅପରାଧ ପାଇଁ ତାଙ୍କ କାନରେ ଉତ୍ତପ୍ତ ତରଳ ଶିସା ଢାଳିବାକୁ କହିଛନ୍ତି । ବସ୍ତୁତଃ ସେମାନଙ୍କ ଅପରାଧ ପାଇଁ କିଏ ଦାୟୀ ଓ ସେହି ଆଘାତ କିଏ ପାଇବା ଉଚିତ ? ବନ୍ଧୁଗଣ, ସମାଜର ସୁବିଧାବାଦୀମାନେ ଏହି ସବୁ ନୀତି, ନିୟମ ପ୍ରଣୟନ କରିଛନ୍ତି । ଏହିସବୁ ବିଧାନ ଓ ସିଦ୍ଧାନ୍ତ ମଧ୍ୟ ଦେଇ ସେମାନେ ନିଜର କ୍ଷମତା, ଅର୍ଥ ଓ ବଡ଼ପଣିଆକୁ ବଳପୂର୍ବକ ଜାହିର କରି ଆସିଛନ୍ତି । ସମ୍ଭବତଃ ଅପ୍‌ଟନ ସିନକ୍ଲେଆର କେଉଁ ଜାଗାରେ ଲେଖିଚନ୍ତି ଯେ ପ୍ରଥମେ ଜଣେ ମଣିଷକୁ ଆତ୍ମାର ଅମରତ୍ୱ ଭାବନାରେ ବିଶ୍ୱାସୀ କରାଅ । ସେ ତାହା ବିଶ୍ୱାସ କରିବା ପରେ ତା'ର ସମସ୍ତ ଧନ ଦୌଲତ ଓ ଅଧିକାରକୁ ଲୁଣ୍ଠନ କର । ଶୋଷିତ ଲୋକଟି ପ୍ରତିବାଦ ତ କରିବ ନାହିଁ, ବରଂ ତୁମକୁ ସାହାଯ୍ୟ କରିବ । ଧର୍ମ ପ୍ରବକ୍ତା ଓ କ୍ଷମତାଧିକାରୀଙ୍କ ଭିତରେ ମିତ୍ରତା ଯୋଗୁଁ କାରାଗାର, ଫାଶୀ, ବେଡ଼ି ଇତ୍ୟାଦି ସହିତ ଏହିସବୁ ସିଦ୍ଧାନ୍ତମାନଙ୍କର ଉଦ୍ଭବ ହୋଇଛି ।

ମୋର ପ୍ରଶ୍ନ ହେଉଛି ଯେତେବେଳେ ଜଣେ ବ୍ୟକ୍ତି ପାପ ଓ ଅପରାଧମୂଳକ କାର୍ଯ୍ୟରେ ସମ୍ପୃକ୍ତ ହେଉଛି ସେତେବେଳେ ତୁମର ସର୍ବଶକ୍ତିମାନ ଈଶ୍ୱର କାହିଁକି ସେଥିରୁ ତାକୁ ନିବର୍ତ୍ତାଉ ନାହାନ୍ତି ? ଜଣେ ବ୍ୟକ୍ତି ଅକ୍ଳେଶରେ ମନ୍ଦକାର୍ଯ୍ୟ କରିପାରୁଛି । ଯୁଦ୍ଧଖୋର ବ୍ୟକ୍ତିମାନଙ୍କ ମନରୁ ସେ କାହିଁକି ଯୁଦ୍ଧ ଭାବନା ଦୂର କରିଦେଉନାହାନ୍ତି ବା ଯୁଦ୍ଧ-ମତୁଆଳ ଲୋକଙ୍କୁ ନିହତ କରୁନାହାନ୍ତି ? ସେପରି କରିବାଦ୍ୱାରା ବଡ଼ ବଡ଼ ଯୁଦ୍ଧରେ ମଣିଷ ଜାତିର ପ୍ରଭୂତ କ୍ଷୟକ୍ଷତିକୁ ବନ୍ଦ କରାଯାଇ ପାରନ୍ତା । ସେହିପରି ଭାରତକୁ ସ୍ୱାଧୀନତା ଦେବାକୁ ଇଂରେଜମାନଙ୍କ ହୃଦୟରେ ସେ କାହିଁକି ଠିକ୍ ଭାବନା ସୃଷ୍ଟି କରୁନାହାନ୍ତି ? ପୁଞ୍ଜିପତିମାନଙ୍କ ଭିତରେ କଲ୍ୟାଣକାରୀ ଭାବନା ସୃଷ୍ଟି କରିଦେଲେ ତ ସେମାନେ ଯେଉଁ ଉତ୍ପାଦନ ସାମଗ୍ରୀକୁ ନିଜର ନିୟନ୍ତ୍ରଣ ଭିତରେ ରଖି ଅଗଣିତ ଶ୍ରମିକମାନଙ୍କୁ ଶୋଷଣ କରି ଚାଲିଛନ୍ତି ତାହା ଦୂର ହୋଇପାରନ୍ତା । ପୁଞ୍ଜିବାଦର ଅତ୍ୟାଚାର ଓ ଶୃଙ୍ଖଳକୁ ଈଶ୍ୱର ଦୂର କରିଦେଲେ ମଣିଷ ସମାଜର ପ୍ରଭୂତ ଉପକାର ହୋଇପାରନ୍ତା । ସମାଜର ସାମଗ୍ରିକ ବିକାଶ ଓ କଲ୍ୟାଣ ଦିଗରେ ସମାଜବାଦ

ଉପଯୋଗୀ ବୋଲି ଅନେକ ମନେକରନ୍ତି, କିନ୍ତୁ ଏହାର ସଫଳ ପ୍ରୟୋଗ ନେଇ କେତେକ ଏହାକୁ ଅସମ୍ଭବ ଭାବନ୍ତି । ତା'ହେଲେ ସର୍ବଶକ୍ତିମାନ ଈଶ୍ୱର ତଳକୁ ଅବତରଣ କରି ଏ ଦିଗରେ ଥିବା ପ୍ରତିବନ୍ଧକକୁ ଦୂର କରିଦିଅନ୍ତୁ । ଆପଣ ଅଯଥା ଯୁକ୍ତିକରି ବାସ୍ତବତାକୁ ଅସ୍ୱୀକାର କରନ୍ତୁ ନାହିଁ । ଭାରତବର୍ଷରେ ବ୍ରିଟିଶ ସାମ୍ରାଜ୍ୟ ରହିବା ଈଶ୍ୱରଙ୍କର ଉଦ୍ଦେଶ୍ୟ ନୁହେଁ, ବରଂ ଇଂରେଜମାନେ ଶକ୍ତିଶାଳୀ ଓ ଆମ୍ଭେମାନେ ଦୁର୍ବଳ ହୋଇଥିବା ଯୋଗୁଁ ଏହା ସମ୍ଭବ ହୋଇଛି । ଆମେ ଇଂରେଜମାନଙ୍କୁ ବିରୋଧ କରିବା କ୍ଷେତ୍ରରେ ଭୀରୁ ହୋଇଥିବା ଯୋଗୁଁ ସେମାନଙ୍କର ଶାସନ ଏଠାରେ ତିଷ୍ଠି ରହିଛି । ଈଶ୍ୱରଙ୍କର ସାହାଯ୍ୟରେ ସେମାନେ ବଳଶାଳୀ ହୋଇ ଆମକୁ ପରାଧୀନ କରି ରଖିନାହାନ୍ତି ବରଂ ସେମାନଙ୍କ ହାତରେ କମାଣ, ବନ୍ଧୁକ, ବୋମା, ଗୁଳି ପରି ନାନା ଆଧୁନିକ ଅସ୍ତ୍ର ତଥା ପୋଲିସ ଓ ସୈନ୍ୟବାହିନୀ ଥିବାରୁ ସେମାନେ ଆମକୁ ପରାଧୀନ କରି ରଖିଚନ୍ତି । ପୁନଶ୍ଚ ଆମର ଉଦାସୀନତା ଯୋଗୁଁ ସେମାନେ ଆମକୁ ଶୋଷଣ କରିବାରେ ସମର୍ଥ ହେଉଛନ୍ତି । ଗୋଟିଏ ଦେଶ ଅନ୍ୟ ଦେଶକୁ ବଳ ପ୍ରୟୋଗଦ୍ୱାରା କବଳିତ କରି ଶୋଷଣ କରିବା କେଉଁ ନୀତି, କେଉଁ ନ୍ୟାୟ ? କେଉଁଠି ଅଛନ୍ତି ତୁମର ସର୍ବଶକ୍ତିମାନ ଈଶ୍ୱର ? ସେ କ'ଣ କରୁଛନ୍ତି ? ଭାରତୀୟମାନଙ୍କର ଏହି ଦୁର୍ଦ୍ଦଶା ଓ ମଣିଷ ସମାଜର ଅନ୍ୟାୟକୁ ସେ କ'ଣ ଉପଭୋଗ କରୁଛନ୍ତି ? ସେ କ'ଣ ଜଣେ ନିରୋ ବା ଚେଙ୍ଗିଜ ଖାଁ ? ତାଙ୍କୁ ଧିକ୍ !

ପୃଥିବୀ କିପରି ସୃଷ୍ଟି ହେଲା ଓ ମଣିଷର କିପରି ଆବିର୍ଭାବ ହେଲା ଏହାକୁ ବ୍ୟାଖ୍ୟା କରିବାକୁ ମୋତେ ପଚାରୁଛ ତ ! ଠିକ୍ ଅଛି । ଚାର୍ଲସ୍ ଡାରଉଇନ୍ ଏହି ପ୍ରସଙ୍ଗ ଉପରେ କିଛି ଆଲୋକପାତ କରିଛନ୍ତି । ତାଙ୍କର ଲେଖାକୁ ଅଧ୍ୟୟନ କର । ସୋହମ୍ ସ୍ୱାମୀଙ୍କର ପୁସ୍ତକ "ସାଧାରଣ ଜ୍ଞାନ"କୁ ଅଧ୍ୟୟନ କର । ତୁମ ପ୍ରଶ୍ନର ଉତ୍ତର ତୁମେ ସେହି ଲେଖାମାନଙ୍କରୁ କିଛି ପାଇପାରିବ । ପ୍ରକୃତି ବୈଚିତ୍ର୍ୟମୟ, ଏଥିରୁ ସୃଷ୍ଟ ପ୍ରତ୍ୟେକଟି ଘଟଣା ପ୍ରାକୃତିକ । ବିଭିନ୍ନ ପଦାର୍ଥମାନଙ୍କର ଆକସ୍ମିକ ସମ୍ମିଶ୍ରଣରୁ ନୀହାରିକାର ଉଦ୍ଭବ ଓ ସେଥିରୁ ଜନ୍ମନେଲା ପୃଥିବୀ । ଯଦି କେବେ ଏହି ଘଟଣା ଘଟିଲା ଜାଣିବାକୁ ଚାହଁ, ତେବେ ଏହାର ଇତିହାସକୁ ଦେଖ । ସେହି ପ୍ରାକୃତିକ ପ୍ରକ୍ରିୟା ମଧ୍ୟଦେଇ ବିଭିନ୍ନ ଜୀବମାନଙ୍କର ସୃଷ୍ଟି ହେଲା ଓ ବିବର୍ତ୍ତନ ଧାରାରେ ମଣିଷର ଉତ୍ପତ୍ତି ବହୁ ବ୍ୟବଧାନ ପରେ ହେଲା । ଡାରଓ୍ୱିନଙ୍କର "ଜୀବଜଗତର ଉତ୍ପତ୍ତି" (origin of species) ପୁସ୍ତକ ବିଷୟକୁ ବୁଝିବାରେ ଯଥେଷ୍ଟ ସହାୟକ ହେବ । ପ୍ରକୃତି ସହିତ ନିରନ୍ତର ସଂଗ୍ରାମ ମଧ୍ୟଦେଇ ଓ ପ୍ରକୃତିର ପ୍ରତିକୂଳ ସ୍ଥିତିକୁ କ୍ରମବର୍ଦ୍ଧିଷ୍ଣୁ ଭାବେ ନିୟନ୍ତ୍ରଣ କରି ମଣିଷ ପରବର୍ତ୍ତୀ ପର୍ଯ୍ୟାୟରେ

ପ୍ରଗତିର ରଥଚକକୁ ଆଗେଇ ନେଇଛି । ଏହା ହେଉଛି ଅତି ସଂକ୍ଷେପରେ ଏହି ପ୍ରାକୃତିକ ଘଟଣାର ବ୍ୟାଖ୍ୟା ।

ତା'ପରେ ତୁମର ଆଉ ଏକ ପ୍ରଶ୍ନ ହେବ ଗୋଟିଏ ଶିଶୁ କାହିଁକି ଅନ୍ଧ, ବଧିର ହୋଇ ଜନ୍ମ ହେଉଛି ? ଏଥିପାଇଁ ତା'ର ପୂର୍ବଜନ୍ମର କର୍ମଫଳ ଦାୟୀ ନୁହେଁ କି ? ଏହି ଘଟଣା ସକଳକୁ ଜୀବ ବିଜ୍ଞାନୀମାନେ ବୁଝାଇ ସାରିଛନ୍ତି । ଏହା ଜୈବିକ କାରଣ ଯୋଗୁଁ ଉଦ୍ଭବ ହୋଇଥାଏ ଯାହାକୁ ଚିକିତ୍ସା ବିଜ୍ଞାନ ଦ୍ୱାରା ପ୍ରତିହତ କରାଯାଇ ପାରିବ । ପିତାମାତାଙ୍କର ଏ କ୍ଷେତ୍ରରେ ଦାୟିତ୍ୱ ରହିଛି, ସେମାନଙ୍କର ସଚେତନତା ବା ଅଜ୍ଞତା ଉପରେ ସେମାନଙ୍କର ଭାବୀ ଶିଶୁଟିର ଭବିଷ୍ୟତ ନିର୍ଭର କରିଥାଏ । ଗର୍ଭସ୍ଥ ସନ୍ତାନଟିର ଜନ୍ମ ପୂର୍ବରୁ ପିତାମାତାଙ୍କର ସଚେତନତା ସନ୍ତାନଟିର ବିକଳାଙ୍ଗ ଅବସ୍ଥାକୁ ଦୂର କରିବାରେ ସହାୟକ ହୋଇଥାଏ ।

ତୁମେ ଏହାପରେ ହୁଏତ ଅନ୍ୟ ଏକ ପ୍ରଶ୍ନ ପଚାରିବାକୁ ଚାହିଁବ । ଏହା ଯଦିବା ଏକ ପିଲାଳିଆ ପ୍ରଶ୍ନ, ତଥାପି ତୁମେ ଜାଣିବାକୁ ଚାହିଁବ ଯେ, ଯଦି ଈଶ୍ୱର ନାହାନ୍ତି ତେବେ ଲୋକମାନେ କାହିଁକି ତାଙ୍କ ଅସ୍ତିତ୍ୱରେ ବିଶ୍ୱାସ ସ୍ଥାପନ କଲେ ? ଏହି ପ୍ରଶ୍ନ ଉପରେ ମୋର ଉତ୍ତର ମଧ୍ୟ ସ୍ପଷ୍ଟ ଓ ସଂକ୍ଷିପ୍ତ । ଲୋକମାନେ ଯେପରି ଭୂତ, ପ୍ରେତ ଓ ଦୁଷ୍ଟାତ୍ମାମାନଙ୍କୁ ବିଶ୍ୱାସ କଲେ ସେହିପରି ସେମାନେ ଈଶ୍ୱରଙ୍କ ଉପରେ ବିଶ୍ୱାସ କରିନେଲେ । ଅବଶ୍ୟ ଏ ଉଭୟ ବିଶ୍ୱାସ କ୍ଷେତ୍ରରେ କିଛି ପାର୍ଥକ୍ୟ ରହିଛି । ପାର୍ଥକ୍ୟ ହେଉଛି, ଈଶ୍ୱର ବିଶ୍ୱାସ ଏକ ସାର୍ବଜନୀନ ବିଶ୍ୱାସ ଓ ଈଶ୍ୱରଙ୍କୁ ନେଇ ସୃଷ୍ଟି ହୋଇଥିବା ଦର୍ଶନ ବିକଶିତ । କେତେକ ଚରମପନ୍ଥୀଙ୍କ ମତରେ ମୁଷ୍ଟିମେୟ କେତେକ ବ୍ୟକ୍ତି ନିଜର ଶୋଷଣ ପାଇଁ ତଥା ଜନଗଣଙ୍କ ଉପରେ ନିଜର କର୍ତ୍ତୃତ୍ୱ ଜାହିର କରିବା ପାଇଁ ଈଶ୍ୱର ଭାବନାକୁ କୌଶଳତାର ସହ ପ୍ରସାର କରିଛନ୍ତି । ସେମାନେ ଏକ ସର୍ବଶକ୍ତିମାନ ଈଶ୍ୱରଙ୍କୁ କଳ୍ପନା କରି ସେମାନଙ୍କର ସୁବିଧା ସୁଯୋଗ କ୍ଷେତ୍ରରେ ଐଶ୍ୱରୀୟ ସ୍ୱୀକୃତି ଥିବା ଦାବିରେ ସେମାନଙ୍କର କର୍ତ୍ତୃତ୍ୱ ଅନ୍ୟ ଉପରେ ସାବ୍ୟସ୍ତ କରିଛନ୍ତି । ଚରମପନ୍ଥୀମାନଙ୍କର ଏହି ଯୁକ୍ତି ସହିତ ମୁଁ ସମ୍ପୂର୍ଣ୍ଣ ଏକମତ ହୋଇପାରୁ ନାହିଁ, ଯଦିବା ସେମାନଙ୍କର ମତର ସାରମର୍ମ ପ୍ରତି ମୋର ବିରୋଧ ନାହିଁ । ସମସ୍ତ ଧର୍ମ, ସକଳ ବିଶ୍ୱାସ, ସମସ୍ତ ସମ୍ପ୍ରଦାୟ ତଥା ଏହିପରି ଅନୁଷ୍ଠାନଗୁଡ଼ିକ କୌଣସି ନା କୌଣସି ସ୍ୱେଚ୍ଛାଚାରୀ ତଥା ଶୋଷଣକାରୀ ବ୍ୟକ୍ତି ବା ଗୋଷ୍ଠୀର ସମର୍ଥନରେ ପ୍ରସାର ଲାଭ କରିଛି । ପ୍ରତ୍ୟେକ ଧର୍ମରେ ରାଜାଙ୍କ ଆଦେଶ ପାଳନ ନ କରିବା ବା ରାଜାଙ୍କ ବିରୁଦ୍ଧରେ ବିଦ୍ରୋହ କରିବାକୁ ପାପ କାର୍ଯ୍ୟ ବୋଲି ଗ୍ରହଣ କରାଯାଇଛି ।

ଈଶ୍ୱର ଭାବନାର ଉତ୍ପତ୍ତି ସଂପର୍କରେ ମୋର କିଛି ମତ ରହିଛି । ମଣିଷ ଯେତେବେଳେ ନିଜକୁ ଦୁର୍ବଳ, ଅସହାୟ ମନେକରିଛି ଓ ନିଜର ସୀମିତ ସାମର୍ଥ୍ୟ ନେଇ ନିଶ୍ଚିତ ହୋଇଛି ସେତେବେଳେ ସେ ଈଶ୍ୱରଙ୍କୁ କଳ୍ପନା କରିଛି । କଳ୍ପିତ ଈଶ୍ୱର ଯେ ତାକୁ ବିପଦ ସମୟରେ ସହାୟକ ହେବେ ଓ ଦୁଃଖ ଦୁର୍ବିପାକରେ ରକ୍ଷା କରିବେ ଏହି ଭାବନା ତାର ମନକୁ ଛୁଇଁଛି । ତାର ପ୍ରଗତି ଓ ସୁଖ ସ୍ୱାଚ୍ଛନ୍ଦ୍ୟ ଲାଭ ଦିଗରେ ସେ ଯେ ସହାୟକ ହେବେ ଏହି ଭରସା ସ୍ଥାପନ କରିବାଦ୍ୱାରା ସେ ନିଜ ଜୀବନଧାରାକୁ କିଛି ସରଳ କରିପାରିଲା । ଈଶ୍ୱରଙ୍କୁ ପିତାମାତାଙ୍କ ପରି କଲ୍ୟାଣକାରୀ ଭାବେ କଳ୍ପନା କରାଗଲା ତଥା ତାଙ୍କର ନିୟମ ଅଲଘନୀୟ ବୋଲି ବିଭିନ୍ନ କାବ୍ୟିକ ଶୈଳୀରେ ତାଙ୍କର ବର୍ଣ୍ଣନା କରାଗଲା । ଈଶ୍ୱରଙ୍କ କ୍ରୋଧ ଓ ଅସନ୍ତୋଷରୁ ନିଜକୁ ମୁକ୍ତ ରଖିବା ପାଇଁ ସେ କର୍ତ୍ତବ୍ୟଚ୍ୟୁତ ହେବାକୁ ଭୟ କଲା । ମଣିଷ ଯେପରି ସମାଜ ପ୍ରତି ବିପଦର କାରଣ ହେବ ନାହିଁ ସେଥିପାଇଁ ଈଶ୍ୱରଙ୍କର ଦଣ୍ଡବିଧାନ ନେଇ କେତେ ଭାବନା ବ୍ୟକ୍ତ ହେଲା । ପିତା, ମାତା, ଭଉଣୀ ଭାଇ, ବନ୍ଧୁ, ସଖା ଭାବରେ ସାମାଜିକ କର୍ତ୍ତବ୍ୟ କରିବାକୁ ତା' ଭିତରେ ଚେତନା ଦୃଢ଼ୀଭୂତ ହେବାକୁ ଲାଗିଲା । ବନ୍ଧୁ ପରିଜନଙ୍କ ଦ୍ୱାରା ଉପେକ୍ଷିତ ହୋଇ ଯଦି ସେ ଦୁର୍ଦ୍ଦଶାର ସମ୍ମୁଖୀନ ହେଲା ସେ ଈଶ୍ୱରଙ୍କ ଉପରେ ଭରସା କରି ସେଥିରୁ ସାନ୍ତ୍ୱନା ପାଇଲା । ସେ ବିଶ୍ୱାସ କଲା ଯେ, ଜଣେ ପରମ ଦୟାଳୁ ଈଶ୍ୱର ହିଁ ତାର ଦୁର୍ଦ୍ଦିନର ସାଥୀ ଯେକି ତାକୁ ବିପଦରୁ ଉଦ୍ଧାର କରିବେ । ସେ ହେଉଛନ୍ତି ସର୍ବଶକ୍ତିମାନ ଯେ କି ଯେ କୌଣସି ଅସାଧ କାର୍ଯ୍ୟ କରିପାରିବେ । ପ୍ରାଚୀନ ଯୁଗରେ ସମାଜ ପାଇଁ ଈଶ୍ୱର ବିଶ୍ୱାସ ଖୁବ୍ ଉପଯୋଗୀ ଥିଲା । ବିପଦରେ ଥିବା ମଣିଷ ପାଇଁ ଈଶ୍ୱର ବିଶ୍ୱାସ ଥିଲା ଅତି ଦରକାରୀ ।

ପ୍ରତିମା ପୂଜା ବିରୁଦ୍ଧରେ ସମାଜରେ କିଛିଟା ସ୍ୱର ଉଠିଛି । ଧର୍ମ ନାମରେ ସାମ୍ପ୍ରଦାୟିକ ସଂକୀର୍ଣ୍ଣତାକୁ ମଧ୍ୟ ବିରୋଧ କରାଯାଉଛି । ସୁତରାଂ ଈଶ୍ୱରଙ୍କ ସ୍ଥିତି ବିରୁଦ୍ଧରେ ସମାଜରେ ସ୍ୱର ତୀବ୍ର ହେବା ଦରକାର । ମଣିଷ ଯେତେବେଳେ ନିଜ ଉପରେ ଭରସା କରି ନିଜ ଗୋଡ଼ରେ ଛିଡ଼ାହେବ ଓ ଏକ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ପୋଷଣ କରିବ ସେତେବେଳେ ସେ ଈଶ୍ୱର ବିଶ୍ୱାସକୁ ପରିହାର କରିବାକୁ ସମର୍ଥ ହେବ । ନିଜର ସାମର୍ଥ୍ୟ ଉପରେ ଭରସା ରଖି ପାରିଲେ ସମସ୍ତ ଦୁର୍ଦ୍ଦଶା, ସମସ୍ୟା ଓ ପ୍ରତିକୂଳ ଅବସ୍ଥାକୁ ସେ ସମ୍ମୁଖୀନ ହୋଇପାରିବ । ମୋ କ୍ଷେତ୍ରରେ ଏହି ପରିସ୍ଥିତି ହିଁ ଆସିଛି । ପ୍ରିୟ ବନ୍ଧୁଗଣ, ଏହା ମୋର ଗର୍ବ ବା ଅହଂକାର ନୁହେଁ । ଏହି ଚିନ୍ତାଧାରାର ବଶବର୍ତ୍ତୀ ହେବା ଦ୍ୱାରା ମୁଁ ନିରୀଶ୍ୱରବାଦୀ ହୋଇଛି । ମୋ କ୍ଷେତ୍ରରେ ଈଶ୍ୱରଙ୍କୁ ବିଶ୍ୱାସ କରି ପ୍ରତ୍ୟହ ତାଙ୍କୁ ପ୍ରାର୍ଥନା କରିବା ଦ୍ୱାରା ମୋର

ଉପକାର ହେବ ନା ଏହା ମୋର ଦୁର୍ଦ୍ଦଶାକୁ ବୃଦ୍ଧି କରିବ ତାହା ମୁଁ ଜାଣିନାହିଁ । ହେଲେ ମୁଁ ଏତିକି ନିର୍ଦ୍ଦିଷ୍ଟ ଭାବରେ କହିପାରେ ଯେ, ଏହି ପ୍ରକାର ଆଚରଣ ଏକ ସ୍ୱାର୍ଥପର ଜନିତ କାର୍ଯ୍ୟ ତଥା ଏହା ନୈତିକ ଅଧୋପତନ ପାଇଁ ଦାୟୀ । ମୁଁ ନିଜର ଅଧ୍ୟୟନରୁ ଜାଣିଛି ଯେ ନିରୀଶ୍ୱରବାଦୀମାନେ ନିଜ ଜୀବନର ସମସ୍ତ ଦୁଃଖ ଦୁର୍ଦ୍ଦଶାକୁ ଖୁବ୍ ସାହସର ସହ ମୁକାବିଲା କରିଥାନ୍ତି । ମୁଁ ସେହିମାନଙ୍କ ପରି ଧୈର୍ଯ୍ୟ ଓ ଦୃଢ଼ତାର ସହ ମୁଣ୍ଡ ଟେକି ଶେଷ ପର୍ଯ୍ୟନ୍ତ ରହିବି । ଏପରିକି ଫାଶୀଖୁଣ୍ଟରେ ଛିଡ଼ା ହୋଇଥିବା ସମୟରେ ମଧ୍ୟ ମୁଁ ଦୁର୍ବଳତା ପ୍ରକାଶ କରିବି ନାହିଁ ବା ମୁଣ୍ଡ ନୁଆଁଇବି ନାହିଁ ।

ମୁଁ କିପରି ଏହି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବି ତାହା ଦେଖିବାର ଅଛି । ମୋର ଜଣେ ବନ୍ଧୁ ମୋତେ ନିୟମିତ ପ୍ରାର୍ଥନା କରିବାକୁ ପରାମର୍ଶ ଦେଇଥିଲେ । କିନ୍ତୁ ସେ ଯେତେବେଳେ ଜାଣିଲେ ମୁଁ ନିରୀଶ୍ୱରବାଦୀ ପାଲଟି ଯାଇଛି ସେ ମନ୍ତବ୍ୟ ଦେଲେ, ''ତୁମର ଫାଶୀର ଦିନ ନିକଟ ହୋଇ ଆସିଲେ ତୁମେ ବିଶ୍ୱାସ କରିବାକୁ ବାଧ୍ୟ ହେବ ।'' ମୁଁ ଉତ୍ତର ଦେଲି, ''ଏହା ସମ୍ଭବ ନୁହେଁ ।'' ମୋ ବିଚାରରେ ତାହା ମୋ ପାଇଁ ଅମର୍ଯ୍ୟାଦାଜନକ ତଥା ଏକ ନୀତିହୀନ କାର୍ଯ୍ୟ ହେବ । ନିଜର ସ୍ୱାର୍ଥ ଅଭିପ୍ରାୟ ରଖି ମୁଁ କୌଣସି ପ୍ରାର୍ଥନା କରିବି ନାହିଁ । ହେ ମୋର ପାଠକଗଣ ଓ ବନ୍ଧୁଗଣ, ଆପଣମାନେ ମୋର ଏହି କାର୍ଯ୍ୟକୁ ଅହଂକାର ବୋଲି ମନେକରୁଛନ୍ତି କି ? ଯଦି ବି କରୁଥାନ୍ତି, ତଥାପି ମଧ୍ୟ ମୁଁ ମୋର ନିଷ୍ପତ୍ତିରେ ଅଟଳ ରହିବି ।



# ମୁଁ କାହିଁକି ହିନ୍ଦୁ ନୁହେଁ

ଡକ୍ଟର ରମେନ୍ଦ୍ର

ବର୍ଟ୍ରାଣ୍ଡ ରସେଲଙ୍କ ରଚିତ ''ମୁଁ କାହିଁକି ଖ୍ରୀଷ୍ଟିଆନ ନୁହେଁ'' ପୁସ୍ତକ ମୁଁ ପଢ଼ିଛି । ଏହି ନିବନ୍ଧଟି ମୋତେ ବହୁତ ଭଲ ଲାଗିଛି । ସେହିପରି ମହାତ୍ମା ଗାନ୍ଧୀଙ୍କ ଲିଖିତ ''ମୁଁ କାହିଁକି ହିନ୍ଦୁ'' ପୁସ୍ତକ ମୁଁ ପଢ଼ିଛି ଓ ସେଥିର ଭାବଧାରା ସହିତ ସହମତ ହୋଇ ପାରୁନାହିଁ । ଏହି ପୁସ୍ତକ ଗୁଡ଼ିକର ଅଧ୍ୟୟନରୁ ''ମୁଁ କାହିଁକି ହିନ୍ଦୁ ନୁହେଁ'' ନିବନ୍ଧ ଲେଖିବାକୁ ମୁଁ ପ୍ରେରଣା ଲାଭ କରିଛି, ଯଦିବା ମୁଁ ଏକ ହିନ୍ଦୁ ପରିବାରରେ ଜନ୍ମଗ୍ରହଣ କରିଛି ।

''ହିନ୍ଦୁ'' ଶବ୍ଦଟି ଏକକ ଅର୍ଥରେ ବ୍ୟବହୃତ ନ ହୋଇ ବିଭିନ୍ନ ସମୟରେ ନାନା ଅର୍ଥରେ ବ୍ୟବହୃତ ହୋଇଥାଏ । ଉଦାହରଣ ସ୍ୱରୂପ କେତେକ ବ୍ୟକ୍ତି ଏବେ ବି ହିନ୍ଦୁ ଶବ୍ଦକୁ ''ଭାରତୀୟ'' ଅର୍ଥରେ ବ୍ୟବହାର କରନ୍ତି ଓ ସେମାନଙ୍କ ମତରେ ''ହିନ୍ଦୁ'' ଓ ''ଭାରତୀୟ'' ଏକାର୍ଥବୋଧକ ଶବ୍ଦ ଅଟନ୍ତି । ଏହି ଅର୍ଥରେ ମୁଁ ଜଣେ ହିନ୍ଦୁ, କାରଣ ମୁଁ ଯେ ଜଣେ ଭାରତୀୟ ଏହାକୁ ମୁଁ ଅସ୍ୱୀକାର କରୁନାହିଁ । କିନ୍ତୁ ''ହିନ୍ଦୁ'' ଶବ୍ଦର ଏହା ଯଥାର୍ଥ ପ୍ରୟୋଗ ବୋଲି ମୁଁ ଭାବୁନାହିଁ । ଭାରତୀୟମାନଙ୍କ ମଧ୍ୟରେ ଅନେକ ମୁସଲିମ, ଖ୍ରୀଷ୍ଟିଆନ, ଜିଉ, ଜୋରାଷ୍ଟିଆନ ଓ ଏପରିକି ହେତୁବାଦୀ, ମାନବବାଦୀ ଏବଂ ନିରୀଶ୍ୱରବାଦୀ ରହିଛନ୍ତି ଯେଉଁମାନେ ନିଜକୁ ''ହିନ୍ଦୁ'' କହନ୍ତି ନାହିଁ ବା ସେପରି କୁହାଯିବାକୁ ଚାହାନ୍ତି ନାହିଁ । ''ହିନ୍ଦୁ'' ଶବ୍ଦର ଏପରି ଏକ ନମନୀୟ ସଂଜ୍ଞା ଦେଇ ସେମାନେ ହିନ୍ଦୁ ଧର୍ମର ଅନ୍ତର୍ଭୁକ୍ତ ବୋଲି କହିବା ସଙ୍ଗତ ବୋଧହୁଏ ନାହିଁ । ଏତଦ୍‌ବ୍ୟତୀତ ବୌଦ୍ଧିକ ସ୍ପଷ୍ଟତା ଦୃଷ୍ଟିରୁ ''ହିନ୍ଦୁ'' ଶବ୍ଦକୁ ଏପରି ଏକ ହୁଗୁଳା ଅର୍ଥରେ ବ୍ୟବହାର କରିବା ସମୀଚୀନ ମନେହୁଏ ନାହିଁ । ହୁଏତ ''ହିନ୍ଦୁ'' ଶବ୍ଦ ପ୍ରାରମ୍ଭରେ ''ଭାରତୀୟ'' ପାଇଁ ସମାର୍ଥବୋଧକ ଅର୍ଥରେ ବ୍ୟବହୃତ ହୋଇଥାଇ ପାରେ[୧]; କିନ୍ତୁ ସମ୍ପ୍ରତି ଏହା ନିର୍ଦ୍ଦିଷ୍ଟ ଧାର୍ମିକ ବିଶ୍ୱାସ ପୋଷଣ କରୁଥିବା ଏକ ଜନସମୂହକୁ ବୁଝାଏ । ''ହିନ୍ଦୁ''

ଶବ୍ଦ ମୁସଲିମ୍, ଖ୍ରୀଷ୍ଟିଆନ, ବୌଦ୍ଧ, ଜୈନ ଇତ୍ୟାଦି ପର୍ଯ୍ୟାୟବାଚକ ଶବ୍ଦ ସହ ସମତାଳ ରକ୍ଷାକରେ ଅର୍ଥାତ୍ ଏସବୁ ଏକ ପର୍ଯ୍ୟାୟ ଶ୍ରେଣୀର ଶବ୍ଦ ଅଟନ୍ତି; ଅଥଚ ଆମେରିକୀୟ, ବ୍ରିଟିଶ, ଅଷ୍ଟ୍ରେଲିଆନ୍, ଚାଇନିଜ ପର୍ଯ୍ୟାୟ ଶ୍ରେଣୀର ଶବ୍ଦ ସହ ଏହା ସମ୍ପୃକ୍ତ ନୁହେଁ । ବାସ୍ତବରେ ଅନେକ ଭାରତୀୟ ଅଛନ୍ତି ଯେଉଁମାନେ ହିନ୍ଦୁ ନୁହନ୍ତି ଓ ଅପରପକ୍ଷରେ ଏପରି ଅନେକ ହିନ୍ଦୁ ଅଛନ୍ତି ଯେଉଁମାନେ ଭାରତୀୟ ନୁହନ୍ତି । ଉଦାହରଣ ସ୍ୱରୂପ ନେପାଳ, ଶ୍ରୀଲଙ୍କା ଓ ସେପରି ଅନ୍ୟ କେତେକ ଦେଶର ନାଗରିକ ଅଛନ୍ତି ଯେଉଁମାନେ ହିନ୍ଦୁ ଅଟନ୍ତି ।

ଧାର୍ମିକ ଅର୍ଥ ଦୃଷ୍ଟିରୁ "ହିନ୍ଦୁ" ଶବ୍ଦ ଏକ ବ୍ୟାପକତର ବା ସୀମିତ ଅର୍ଥରେ ବ୍ୟବହୃତ ହୋଇଥାଏ । ବ୍ୟାପକତର ଅର୍ଥରେ ଏହା ବୌଦ୍ଧ, ଜୈନ ଓ ଶିଖମାନଙ୍କୁ ମଧ୍ୟ ଏହାର ପରିସର ଭିତରେ ସମ୍ପୃକ୍ତ କରିବାବେଳେ ଏହାର ସୀମିତ ଅର୍ଥରେ କେବଳ ବୈଦିକ ବା ବ୍ରାହ୍ମଣ ଧର୍ମ ପ୍ରତି ଅନୁରକ୍ତ ବ୍ୟକ୍ତିମାନଙ୍କୁ ଏହା ବୁଝାଇଥାଏ । ଉଦାହରଣ ସ୍ୱରୂପ, "ହିନ୍ଦୁ" ଶବ୍ଦ ହିନ୍ଦୁ ସଂହିତାରେ କେବଳ ହିନ୍ଦୁ ଧର୍ମାବଲମ୍ବୀ ବ୍ୟକ୍ତିମାନଙ୍କୁ ନ ବୁଝାଇ ବୌଦ୍ଧ, ଜୈନ ଓ ଶିଖ ଧର୍ମାବଲମ୍ବୀ ଲୋକମାନଙ୍କୁ ମଧ୍ୟ ବୁଝାଇଥାଏ । ଏହା ମଧ୍ୟ "ହିନ୍ଦୁ" ଶବ୍ଦର ଏକ ବ୍ୟାପକତର ସଂଜ୍ଞା ମନେହୁଏ । ଯଦି ସୁସଂହତ ଭାବରେ "ହିନ୍ଦୁ" ଶବ୍ଦକୁ ଏହି ଅର୍ଥରେ ବ୍ୟବହାର କରାଯିବ, ତେବେ ଜାପାନ ଯେ ଏକ ହିନ୍ଦୁ ରାଷ୍ଟ୍ର ଏହା କହିବାକୁ ହେବ ।

ଦାର୍ଶନିକ ବିଚାର ପୃଷ୍ଠଭୂମିରେ "ହିନ୍ଦୁ"ର ଉପରୋକ୍ତ ସଂଜ୍ଞା ଅସଂଗତ ମନେହୁଏ । ଉଦାହରଣ ସ୍ୱରୂପ ବୌଦ୍ଧଧର୍ମ ଓ ଜୈନଧର୍ମ "ବେଦକୁ ଶାଶ୍ୱତ" ଓ ବର୍ଣ୍ଣାଶ୍ରମ ଧର୍ମର ଭାବନାକୁ ଗ୍ରହଣ କରନ୍ତି ନାହିଁ । କିନ୍ତୁ ହିନ୍ଦୁ ଧର୍ମକୁ ଏକ ସୀମିତ ଅର୍ଥରେ ବ୍ୟବହାର କଲେ ବୈଦିକ ଜ୍ଞାନ ଶାଶ୍ୱତ ଓ ବର୍ଣ୍ଣାଶ୍ରମ ଧର୍ମ ଭାବନା ହିନ୍ଦୁଧର୍ମର ମୌଳିକ ବିଚାର ବୋଲି ଗ୍ରହଣ କରାଯାଏ । ସୁତରାଂ ବେଦର ଚିରନ୍ତନତା ତଥା ବର୍ଣ୍ଣାଶ୍ରମ ଧର୍ମରେ ବିଶ୍ୱାସ କରୁଥିବା ବ୍ୟକ୍ତିମାନଙ୍କ ସହିତ ବୌଦ୍ଧ, ଜୈନ ଓ ଏପରିକି ଶିଖମାନଙ୍କୁ ସଂପୃକ୍ତ କରିବା ଦ୍ୱାରା ବୌଦ୍ଧିକ ସ୍ୱଚ୍ଛତା ରହିପାରେ ନାହିଁ । ଅର୍ଥାତ୍ ଏ ସମସ୍ତଙ୍କୁ ହିନ୍ଦୁ କହିବାଦ୍ୱାରା ଦୁର୍ବୋଧତା ଆସିଥାଏ । ଈଶ୍ୱର ଓ ଆତ୍ମାକୁ ବୌଦ୍ଧଧର୍ମ ଅସ୍ୱୀକାର କରିଥାଏ । ସେହିପରି ଏହା ବେଦର ପ୍ରାମାଣିକତାକୁ ଗ୍ରହଣ କରେ ନାହିଁ । ଏହା ମଧ୍ୟ ବର୍ଣ୍ଣ ବ୍ୟବସ୍ଥାକୁ ପ୍ରତ୍ୟାଖ୍ୟାନ କରିଥାଏ । ବୌଦ୍ଧଧର୍ମର ଏହି ମତଗୁଡ଼ିକ ସହିତ ମୁଁ ଏକମତ ହେଲେ ବି, ମୁଁ କୌଣସି ଧର୍ମରେ ବିଶ୍ୱାସ କରେନାହିଁ । ଏପରିକି "ହିନ୍ଦୁ" ଶବ୍ଦକୁ ଅତ୍ୟନ୍ତ ବ୍ୟାପକତର ଅର୍ଥରେ ବ୍ୟବହାର କରାଗଲେ ମଧ୍ୟ ମୁଁ ହିନ୍ଦୁ ନୁହେଁ, କାରଣ

ଜଣେ ହେତୁବାଦୀ ଓ ମାନବବାଦୀ ଭାବରେ ବୌଦ୍ଧଧର୍ମ, ଜୈନଧର୍ମ ଓ ଶିଖଧର୍ମ ସହ ସମସ୍ତ ଧର୍ମକୁ ମୁଁ ପ୍ରତ୍ୟାଖ୍ୟାନ କରିଥାଏ । ''ହିନ୍ଦୁ'' ଶବ୍ଦର ଯଥାର୍ଥ ବ୍ୟାଖ୍ୟା ଦିଆଗଲେ ମଧ୍ୟ ମୁଁ ନିଜକୁ ହିନ୍ଦୁ ବୋଲି ଭାବି ନାହିଁ ଓ ମୁଁ କାହିଁକି ହିନ୍ଦୁ ନୁହେଁ ତାହା ଏହି ନିବନ୍ଧରେ ବ୍ୟାଖ୍ୟା କରିବାକୁ ମୁଁ ପ୍ରୟାସ କରିଛି । ଜଣେ ବ୍ୟକ୍ତିର ଧର୍ମ ହିନ୍ଦୁ ଧର୍ମ ହେଲେ ସେ ବ୍ୟକ୍ତି ଜଣେ ହିନ୍ଦୁ ଏହି ସୀମିତ ଅର୍ଥରେ ହିନ୍ଦୁଧର୍ମର ଅବବୋଧ କରାଯାଇପାରେ । ବୌଦ୍ଧଧର୍ମ, ଜୈନଧର୍ମ ଓ ଶିଖ୍‌ଧର୍ମ ହିନ୍ଦୁଧର୍ମର ପରିସରରୁ ପୃଥକ ଅଟେ । ହିନ୍ଦୁଧର୍ମକୁ ସୀମିତ ଅର୍ଥରେ ବ୍ୟବହାର କରିବା ଏହାର ସାମ୍ପ୍ରତିକ ସାଧାରଣ ଅର୍ଥ ଦୃଷ୍ଟିରୁ ସଂଗତ ମନେହୁଏ । ବୌଦ୍ଧିକ ସ୍ୱଚ୍ଛତା ଓ ଦାର୍ଶନିକ ବିଚାର ପୃଷ୍ଠଭୂମିରେ ''ହିନ୍ଦୁଧର୍ମ'' ଏହି ସୀମିତ ଅର୍ଥରେ ବ୍ୟବହାର କରିବା ପ୍ରାସଙ୍ଗିକ ଅଟେ ।

ରାଧାକ୍ରିଷନ୍ ''ହିନ୍ଦୁ'', ''ହିନ୍ଦୁଧର୍ମ'' ଶବ୍ଦକୁ ତାଙ୍କର ''ହିନ୍ଦୁ ଜୀବନଧାରା'' (Hindu View of Life) ପୁସ୍ତକରେ ଏହି ସୀମିତ ଅର୍ଥରେ ବ୍ୟବହାର କରିଛନ୍ତି । ତାଙ୍କ ମତରେ ''ବେଦ ହେଉଛି ହିନ୍ଦୁମାନଙ୍କର ମୁଖ୍ୟ ପବିତ୍ର ଧର୍ମଗ୍ରନ୍ଥ ଓ ଏଥିରେ ପୂର୍ଣ୍ଣତାପ୍ରାପ୍ତ ଆତ୍ମାମାନଙ୍କର ଅନ୍ତର୍ବୋଧ ଆଧାରିତ ଜ୍ଞାନ ହିଁ ସ୍ଥାନ ପାଇଛି ।''[୨] ସେ ଏହା ମଧ୍ୟ କହିଛନ୍ତି, ''ହିନ୍ଦୁଧର୍ମ କେବଳ ବେଦର ଧର୍ମ ନୁହେଁ, ବରଂ ମହାକାବ୍ୟ ଓ ପୁରାଣରେ ବର୍ଣ୍ଣିତ ଧର୍ମ ହିଁ ମଧ୍ୟ ହିନ୍ଦୁଧର୍ମ ।''[୩]

ଗାନ୍ଧୀ ମଧ୍ୟ ''ହିନ୍ଦୁ'' ଶବ୍ଦକୁ ଏହି ସୀମିତ ଅର୍ଥରେ ବ୍ୟବହାର କରିଛନ୍ତି । ''ୟଙ୍ଗ ଇଣ୍ଡିଆ ପତ୍ରିକା''ର ୧୯୨୧ ଅକ୍ଟୋବର ସଂଖ୍ୟାରେ ''ସେ କାହିଁକି ଜଣେ ସନାତନୀ ହିନ୍ଦୁ'' ତାର କାରଣ ସମ୍ପର୍କରେ ଲେଖିଥିଲେ–

୧. ବେଦ, ଉପନିଷଦ, ପୁରାଣ ଓ ହିନ୍ଦୁଧର୍ମ ଶାସ୍ତ୍ର ଭିତରେ ଆଉ ଯେଉଁ ସବୁ ଗ୍ରନ୍ଥ ଯାଉଛି ମୁଁ ସେ ସବୁରେ ବିଶ୍ୱାସ କରିବା ସହିତ ଅବତାରବାଦ ଓ ପୁନର୍ଜନ୍ମବାଦରେ ମଧ୍ୟ ବିଶ୍ୱାସ କରେ;

୨. ବର୍ଣ୍ଣାଶ୍ରମ ଧର୍ମରେ ମୁଁ ବିଶ୍ୱାସ କରେ । ଏହାର ବୈଦିକ ଅର୍ଥଟି ମୋ ପାଇଁ ଗ୍ରହଣଯୋଗ୍ୟ, କିନ୍ତୁ ଏହାର ସାମ୍ପ୍ରତିକ ଓ ସ୍ଥୂଳ ଅର୍ଥ ନୁହେଁ;

୩. ସାଧାରଣ ଅର୍ଥ ଅପେକ୍ଷା ଏକ ବୃହତ୍ତର ଅର୍ଥରେ ଗୋଜାତିକୁ ସୁରକ୍ଷା କରିବାରେ ମୁଁ ବିଶ୍ୱାସ କରେ;

୪. ପ୍ରତିମା-ପୂଜାରେ ମଧ୍ୟ ମୋର ଅନାସ୍ଥା ନାହିଁ ।

ଗାନ୍ଧୀ ଉଲ୍ଲିଖିତ ଯେଉଁସବୁ ପ୍ରସଂଗ କଥା କହିଛନ୍ତି ସେଗୁଡ଼ିକ କେତେଦୂର ହିନ୍ଦୁଧର୍ମର ମୌଳିକ ବିଶ୍ୱାସ, ସେହି ପ୍ରଶ୍ନ ଉଠିପାରେ । ମୋ ମତରେ (୧)

ବେଦର ପ୍ରାମାଣିକତା ଓ (୨) ବର୍ଣ୍ଣାଶ୍ରମ ଧର୍ମରେ ବିଶ୍ୱାସ, ଗୋରକ୍ଷା ଓ ପ୍ରତିମା ପୂଜା ତୁଳନାରେ ହିନ୍ଦୁଧର୍ମର ମୌଳିକ ଅବଧାରଣା ଅଟେ । କବୀର, ରାମମୋହନ ରାୟ ଓ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ପରି ସଂସ୍କାରକମାନେ ପ୍ରତିମା ପୂଜାର ବିରୋଧ କରିଥିଲେ ମଧ ବହୁଳ ଭାବରେ ପ୍ରତିମା ପୂଜା ହିନ୍ଦୁମାନଙ୍କ ମଧ୍ୟରେ ଅଦ୍ୟାବଧି ରହିଆସିଛି । ସେହିପରି ଗୋମାଂସ ଭକ୍ଷଣକୁ ଅଧିକାଂଶ ହିନ୍ଦୁ ବିରୋଧ କରିଥାନ୍ତି । ଉପରେ ଗାନ୍ଧୀ ହିନ୍ଦୁଧର୍ମ ସମ୍ପର୍କରେ ଯେଉଁ କେତେକ ବିଶ୍ୱାସର କଥା ଉଲ୍ଲେଖ କରିଛନ୍ତି ସେ ପ୍ରତ୍ୟେକ ଅଭିବ୍ୟକ୍ତିର ବିରୋଧ ମତକୁ ମୁଁ ଗ୍ରହଣ କରୁଥିବାରୁ ମୁଁ ହିନ୍ଦୁ ନୁହେଁ ବୋଲି କହିବା ଯଥାର୍ଥ ମନେକରୁଛି ।

ବସ୍ତୁତଃ ମୁଁ କାହିଁକି ହିନ୍ଦୁ ନୁହେଁ କହିବା ପରିପ୍ରେକ୍ଷୀରେ ମୁଁ ମୁଖ୍ୟତଃ ଦୁଇଟି ପ୍ରସଂଗ ଉପରେ ଗୁରୁତ୍ୱର ସହ ବିଚାର କରିବି । ସେହି ପ୍ରସଙ୍ଗଗୁଡ଼ିକ ହେଲା– (୧) ବେଦର ପ୍ରାମାଣିକତା ଉପରେ ରହିଥିବା ଅସନ୍ଦିଗ୍ଧ ବିଶ୍ୱାସ; ଓ (୨) ବର୍ଣ୍ଣାଶ୍ରମ ଧର୍ମରେ ଆସ୍ଥା ସ୍ଥାପନ । ମୋ ମତରେ ଏହି ଦୁଇଟି ପ୍ରସଙ୍ଗ ହିନ୍ଦୁ ଧର୍ମ କ୍ଷେତ୍ରରେ ଅନ୍ୟାନ୍ୟ ପ୍ରଶ୍ନ ତୁଳନାରେ ଅଧିକ ମୌଳିକ ଅଟେ ।

ପ୍ରଥମରେ ବେଦର ପ୍ରାମାଣିକତା ଉପରେ ମୁଁ କାହିଁକି ବିଶ୍ୱାସ କରେ ନାହିଁ କହିବା ଦ୍ୱାରା ମୁଁ କ'ଣ ବୁଝୁଛି ତାହା ସ୍ପଷ୍ଟ କରିବା ଉଚିତ ହେବ ।

ପ୍ରାଚୀନ ଭାରତୀୟ ଦର୍ଶନ ପରମ୍ପରାରେ ଭାରତୀୟ ଦର୍ଶନକୁ ମୁଖ୍ୟତଃ ଆସ୍ତିକ ଓ ନାସ୍ତିକ ଏହିପରି ଦୁଇଟି ବିଦ୍ୟାଳୟରେ ବିଭାଜିତ କରାଯାଇଥାଏ । ଭାରତୀୟ ହିନ୍ଦୁ ଷଡ଼ଦର୍ଶନ କ୍ଷେତ୍ରରେ ମୀମାଂସା, ବେଦାନ୍ତ ସାଂଖ୍ୟ, ଯୋଗ, ନ୍ୟାୟ ଓ ବୈଶେଷିକ ଏହି ଛ'ଟି ଦାର୍ଶନିକ ପଦ୍ଧତି ବା ଧାରାକୁ ଆସ୍ତିକ ବିଦ୍ୟାଳୟର ଅନ୍ତର୍ଭୁକ୍ତ କରାଯାଏ । ଏହାକୁ ଆସ୍ତିକ କହିବାର ଅର୍ଥ ଏହା ନୁହେଁ ଯେ ସେମାନେ ଈଶ୍ୱରରେ ବିଶ୍ୱାସ କରନ୍ତି, ପରନ୍ତୁ ସେମାନେ ବେଦର ପ୍ରାମାଣିକତା ଓ ପ୍ରଭୁତ୍ୱକୁ ଗ୍ରହଣ କରିବା ଯୋଗୁଁ ଆସ୍ତିକ ବୋଲି ସୂଚିତ ହୁଅନ୍ତି ।

ହିନ୍ଦୁ ବିଚାରଧାରାରେ ଏହି ଆସ୍ତିକ ବିଦ୍ୟାଳୟମାନଙ୍କ ମଧ୍ୟରୁ ନ୍ୟାୟ ଦର୍ଶନ ମୁଖ୍ୟତଃ ଜ୍ଞାନ ମୀମାଂସା ଉପରେ ବିଚାର କରି ଶୁଦ୍ଧ ଚିନ୍ତନର ସ୍ୱରୂପ ଓ ଜ୍ଞାନଲାଭର ପଦ୍ଧତି ଉପରେ ଆଲୋକପାତ କରିଥାଏ । ନ୍ୟାୟ ମତାନୁସାରେ ଚାରୋଟି ଭିନ୍ନ ପଦ୍ଧତିରେ ଆମର ଜ୍ଞାନାର୍ଜନ ସମ୍ଭବ ହୋଇଥାଏ । ସେଗୁଡ଼ିକ ହେଲା ପ୍ରତ୍ୟକ୍ଷ, ଅନୁମାନ, ଉପନୟ ଓ ଶବ୍ଦ ପ୍ରମାଣ ।

ଶବ୍ଦ ପ୍ରମାଣ ସମ୍ପର୍କରେ ନ୍ୟାୟଦର୍ଶନରେ କୁହାଯାଇଛି ଯେ ଏହା ହେଉଛି ଯଥାର୍ଥ ଆପ୍ତଜ୍ଞାନ । ଶବ୍ଦ ପ୍ରମାଣ ହେଉଛି ଦୁଇ ପ୍ରକାରର– ଧର୍ମଶାସ୍ତ୍ରୀୟ (ବୈଦିକ) ଓ ଧର୍ମନିରପେକ୍ଷୀୟ (ଲୌକିକ) । ବୈଦିକ ଜ୍ଞାନ ବା ଶ୍ରୁତି

ବାକ୍ୟଗୁଡ଼ିକ ହେଉଛି ଈଶ୍ୱରଙ୍କ ଦ୍ୱାରା ପ୍ରଦତ୍ତ, ସୁତରାଂ ସେଗୁଡ଼ିକ ସ୍ୱୟଂସିଦ୍ଧ ଓ ଅଭ୍ରାନ୍ତ ।[୭]

ମୀମାଂସା ବା ପୂର୍ବ ମୀମାଂସା ହେଉଛି ହିନ୍ଦୁ ଆସ୍ତିକ ବିଦ୍ୟାଳୟର ଅନ୍ୟ ଏକ ଦର୍ଶନ । ବୈଦିକ ସଂସ୍କୃତିର ଉପଚାର ପଦ୍ଧତି ବା କର୍ମକାଣ୍ଡୀୟ ବିଧାନର ଆଧାର ଭାବରେ ମୀମାଂସା ଦର୍ଶନର ଉତ୍ପତ୍ତି ହୋଇଛି । ବେଦର ସାର୍ବଭୌମ ବା ଅଧିକାରକୁ ପ୍ରତିଷ୍ଠା କରିବା ପରିପ୍ରେକ୍ଷୀରେ ଏହା ଯଥାର୍ଥ ଜ୍ଞାନର ବିଭିନ୍ନ ଉତ୍ସ ସମ୍ପର୍କରେ ବିସ୍ତୃତ ପର୍ଯ୍ୟାଲୋଚନା କରିଛି । ବାସ୍ତବରେ କହିବାକୁ ଗଲେ ଜ୍ଞାନର ବିଭିନ୍ନ ଉତ୍ସ କ୍ଷେତ୍ରରେ ଶବ୍ଦ ପ୍ରମାଣକୁ ଏହା ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରିଛି । ମୀମାଂସା ମତରେ ଦୁଇ ପ୍ରକାରର ଶବ୍ଦ ଜ୍ଞାନ ରହିଛି ଯଥା ପୌରୁଷେୟ ଓ ଅପୌରୁଷେୟ । ବେଦର ବାକ୍ୟକୁ ଏହା ଅପୌରୁଷେୟ ଜ୍ଞାନ ଭାବରେ ଗ୍ରହଣ କରିଛି ।[୮]

ପୂର୍ବରୁ ଏହା ଦର୍ଶାଯାଇଛି ଯେ ନ୍ୟାୟ ଅନୁସାରେ ବେଦ ଈଶ୍ୱର-ପ୍ରଦତ୍ତ ଜ୍ଞାନ ହୋଇଥିବାରୁ ଏହାର ଅଧିକାର ଆପ୍ତସିଦ୍ଧ । ମୀମାଂସା ଈଶ୍ୱର ସତ୍ତାକୁ ସ୍ୱୀକାର କରୁ ନ ଥିବା ହେତୁ ଏହା ବେଦକୁ ଜଗତ ପରି ଶାଶ୍ୱତ ବୋଲି ଗ୍ରହଣ କରିଛି । ବେଦ କୌଣସି ବ୍ୟକ୍ତିଙ୍କ ଦ୍ୱାରା, ସେ ମଣିଷ ହୁଅନ୍ତୁ ବା ଦେବତା ହୁଅନ୍ତୁ, ରଚିତ ହୋଇନାହିଁ । ବେଦର ପ୍ରଭୁତ୍ୱ ଓ ସାର୍ବଭୌମତ୍ୱ ନେଇ ପ୍ରଶ୍ନ ଉଠି ନ ପାରେ । ଜଣେ ବ୍ୟକ୍ତିଙ୍କ କୃତ ରଚନା କ୍ଷେତ୍ରରେ ଯେଉଁ ଅପୂର୍ଣ୍ଣତା ରହିବାର ସମ୍ଭାବନା ଥାଏ, ସେହି ପ୍ରକାରର ଅପୂର୍ଣ୍ଣତା ବେଦ ପାଖରେ ନାହିଁ ।[୯]

ସୁତରାଂ ଆସ୍ତିକ ହିନ୍ଦୁ ବିଦ୍ୟାଳୟ କ୍ଷେତ୍ରରେ ନ୍ୟାୟ ଦର୍ଶନ ଓ ମୀମାଂସା ଦର୍ଶନ ବେଦର ଅଧିକାରକୁ ସାର୍ବଭୌମ ବୋଲି ଗ୍ରହଣ କରନ୍ତି । ଯଦିବା ଏହା କରିବା ପଛରେ ସେମାନେ ପୃଥକ ପୃଥକ କାରଣ ଦର୍ଶାଇଛନ୍ତି । ସେହିପରି ଶଙ୍କର ଓ ରାମାନୁଜଙ୍କ ପରି ଆସ୍ତିକ ଦର୍ଶନ ପରମ୍ପରାର ବିଶିଷ୍ଟ ଚିନ୍ତାନାୟକମାନେ ବେଦର ପ୍ରଭୁତ୍ୱକୁ ସ୍ୱୀକାର କରିଛନ୍ତି । ମନୁସ୍ମୃତି ମଧ୍ୟ ବେଦକୁ ସାର୍ବଭୌମ ବୋଲି ଗ୍ରହଣ କରିଛି । ସୁରେନ୍ଦ୍ର ନାଥ ଦାସଗୁପ୍ତ ଉଲ୍ଲେଖ କରିଛନ୍ତି, ''ବେଦର ବୈଧତା ଓ ସାର୍ବଭୌମତାକୁ ପ୍ରାୟ ସମସ୍ତ ହିନ୍ଦୁ ଦାର୍ଶନିକମାନେ ଗ୍ରହଣ କରିଛନ୍ତି । ଏପରିକି ଏହି ପ୍ରସଙ୍ଗକୁ ଭିତ୍ତିକରି ସେମାନଙ୍କର ବୌଦ୍ଧ ଦାର୍ଶନିକମାନଙ୍କ ସହ ନାନା ବିତର୍କ ହୋଇଛି, କାରଣ ବୌଦ୍ଧମାନେ ବେଦର ପ୍ରଭୁତ୍ୱକୁ ଗ୍ରହଣ କରନ୍ତି ନାହିଁ ।''[୧୦]

ସାଧାରଣରେ ଯଦି ବି ଏହା ବିଶ୍ୱାସ କରାଯାଏ ଯେ ହିନ୍ଦୁଧର୍ମ ମୁଖ୍ୟତଃ ଏକ ଈଶ୍ୱରବିଶ୍ୱାସୀ ଧର୍ମ, ତେବେ ଈଶ୍ୱର-ବିଶ୍ୱାସ ଜଣେ ଆସ୍ତିକ ହିନ୍ଦୁଙ୍କ ପାଇଁ ମୁଖ୍ୟ ପ୍ରସଙ୍ଗ ନୁହେଁ । ବରଂ ବେଦର ପ୍ରଭୁତ୍ୱକୁ ସ୍ୱୀକାର କରିବା ତାଙ୍କ ପାଇଁ

ଅଧିକ ଗୁରୁତ୍ୱପୂର୍ଣ୍ଣ ।

''ମୁଁ ବେଦରେ ବିଶ୍ୱାସ କରେନାହିଁ'' କହିବାବେଳେ ମୁଁ ପ୍ରକୃତରେ ବେଦର ସମସ୍ତ ବର୍ଣ୍ଣନାକୁ ବୈଧ ଓ ଅଭ୍ରାନ୍ତ ଜ୍ଞାନ ବୋଲି ମନେକରେ ନାହିଁ । ଅବଶ୍ୟ ଏହା କହିବା ଦ୍ୱାରା ମୁଁ ଏହା କହୁନାହିଁ ଯେ ବେଦର ପ୍ରତ୍ୟେକ ବିବରଣ ତ୍ରୁଟିପୂର୍ଣ୍ଣ ବା ଭ୍ରମାତ୍ମକ । ଅନେକ ଗବେଷଣା ପରେ ହୁଏତ ବେଦରୁ କେତେକ ବିବରଣକୁ ସତ୍ୟବୋଲି କେହି ପ୍ରତିଷ୍ଠା କରିପାରନ୍ତି । ତାର୍କିକ ମାନଦଣ୍ଡରୁ କୌଣସି ବିବରଣାତ୍ମକ ବାକ୍ୟ ସତ୍ୟ ହେବା ବା ମିଥ୍ୟା ହେବା ସହିତ ଏହା ବେଦରେ ଅନ୍ତର୍ଭୁକ୍ତ ହେବା ବା ନ ହେବାର କୌଣସି ସମ୍ବନ୍ଧ ନାହିଁ । କୌଣସି ବର୍ଣ୍ଣନାତ୍ମକ ବାକ୍ୟର ସତ୍ୟତା ଏଥିରେ ବ୍ୟକ୍ତ ହୋଇଥିବା ଭାବନା ଓ ବସ୍ତୁଜଗତର ଘଟଣାର ମେଳ ଦ୍ୱାରା ହିଁ ସମ୍ଭବ ହୋଇଥାଏ । ଅନ୍ୟଥା ଏହା ସତ୍ୟ ହୋଇ ନ ଥାଏ । ବେଦରେ ବ୍ୟକ୍ତ ହୋଇଥିବା କୌଣସି ବର୍ଣ୍ଣନା ବାସ୍ତବ ଜଗତର ଘଟଣା ସହିତ ସାମଞ୍ଜସ୍ୟ ରକ୍ଷା କରୁଥିଲେ ତାହା ସତ୍ୟ ହୋଇଥାଏ । କିନ୍ତୁ ଏହି ସାମଞ୍ଜସ୍ୟ ବ୍ୟତୀତ କୌଣସି ବର୍ଣ୍ଣନ କେବଳ ବେଦରେ ରହିଛି ବୋଲି ଏହା ସତ୍ୟ କହିବା ଅମୂଳକ ଅଟେ । '' 'କ' ବିଷୟକ ବର୍ଣ୍ଣନା ବେଦରେ ରହିଛି, ସୁତରାଂ 'କ' ନିଶ୍ଚିତ ସତ୍ୟ ଅଟେ ।'' ଏହି ପ୍ରକାରର ଯୁକ୍ତି ଯେ ଅବୈଧ ଏହା ମୁଁ ବିଚାରକରେ ।

ବେଦରେ ରହିଥିବା କେତେକ ବର୍ଣ୍ଣନା ଯେ ଅସତ୍ୟ ଏହା ଏହି ପରିପ୍ରେକ୍ଷୀରେ ଦର୍ଶାଯାଇପାରେ । ଉଦାହରଣ ସ୍ୱରୂପ ଋଗ୍‌ବେଦର ପୁରୁଷ ସୂକ୍ତରେ ଥିବା ବିବରଣ ଯଥା ସୃଷ୍ଟିକର୍ତ୍ତା ବା ଈଶ୍ୱରଙ୍କ ମୁଖରୁ ବ୍ରାହ୍ମଣ, ହାତରୁ କ୍ଷତ୍ରିୟ, ଜଙ୍ଘରୁ ବୈଶ୍ୟ ଓ ପାଦରୁ ଶୂଦ୍ରମାନଙ୍କର ସୃଷ୍ଟି ବୋଲି ଯାହା କୁହାଯାଇଛି ତାହା ଅସତ୍ୟ ବୋଲି ମୁଁ ଗ୍ରହଣ କରେ । ମୋ ବିଚାରରେ ବର୍ଣ୍ଣବ୍ୟବସ୍ଥା ଏକ ମଣିଷକୃତ ଅନୁଷ୍ଠାନ, ଏହା ସହିତ ତଥାକଥିତ ସୃଷ୍ଟିକର୍ତ୍ତାଙ୍କର କୌଣସି ସମ୍ବନ୍ଧ ହିଁ ନାହିଁ ।

ପୁନଶ୍ଚ ବେଦର ଅଭ୍ରାନ୍ତତା ନେଇ ଯେଉଁ କାରଣ ଦିଆଯାଉଛି ତାହାକୁ ମୁଁ ଗ୍ରହଣ କରିପାରୁନାହିଁ । ବେଦ ହେଉଛି ଈଶ୍ୱରକୃତ କିମ୍ବା ଏହା ଶାଶ୍ୱତ ଓ ନୈର୍ବ୍ୟକ୍ତିକ ଏହା ମଧ ମୋ ପାଇଁ ଗ୍ରହଣଯୋଗ୍ୟ ନୁହେଁ । ବେଦର ଭାବନା ସକଳକୁ ମଣିଷ ହିଁ କଳ୍ପନା କରି ବ୍ୟକ୍ତ କରିଛି ବା ଲେଖିଛି ବୋଲି ମୁଁ ବିଶ୍ୱାସ କରେ । ତାହା ଈଶ୍ୱରକୃତ କହିବା ସମୀଚୀନ ବୋଧହୁଏ ନାହିଁ, କାରଣ ଈଶ୍ୱରଙ୍କର ଅସ୍ତିତ୍ୱ ନେଇ ସେପରି ଯଥେଷ୍ଟ ନିର୍ଭରଯୋଗ୍ୟ କାରଣ ନାହିଁ । ଏହି ସଂସାରରେ ରହିଥିବା ଦୁଃଖ ଓ ମନ୍ଦ ପରିପ୍ରେକ୍ଷୀରେ ଜଣେ ସର୍ବଶକ୍ତିମାନ, ସର୍ବଜ୍ଞ

ଓ କରୁଣାମୟ ଈଶ୍ୱରଙ୍କର ଅସ୍ତିତ୍ୱ ଅସମ୍ଭବ ମନେହୁଏ ।

ସେହିପରି ପୃଥିବୀରେ ମଣିଷର ଆବିର୍ଭାବ ପୂର୍ବରୁ ଓ ସଂସ୍କୃତ ଭାଷାର ବିକାଶ ପୂର୍ବରୁ ବେଦର ସୃଷ୍ଟି ହେବା ସମ୍ଭବ ନୁହେଁ । ମଣିଷର ଉତ୍ପତ୍ତି ପୂର୍ବରୁ ସଂସ୍କୃତ ଭାଷାର ସୃଷ୍ଟି ବୋଲି କହିବା ପଶ୍ଚାତରେ କୌଣସି ଯୁକ୍ତି ନାହିଁ ।

ଗାନ୍ଧୀଙ୍କ ପରିପ୍ରେକ୍ଷୀରେ ଏହା କୁହାଯାଇପାରେ ଯେ ଯଦିବା ସେ ନିଜକୁ ଜଣେ ସନାତନୀ ହିନ୍ଦୁ ବୋଲି କହୁଥିଲେ, ବାସ୍ତବ ପକ୍ଷେ ସେ ଜଣେ ରକ୍ଷଣଶୀଳ ହିନ୍ଦୁ ନ ଥିଲେ । ପୂର୍ବରୁ ଗାନ୍ଧୀଙ୍କ ଲେଖାରୁ ଯେଉଁ ଉଦ୍ଧୃତି ଦିଆଯାଇଛି, ସେହି ପ୍ରସଙ୍ଗରେ ଗାନ୍ଧୀ ପୁନଶ୍ଚ ଲେଖିଛନ୍ତି, ''ମୋ ବିଚାରରେ ବେଦ ପରି ବାଇବେଲ, କୋରାନ, ଜେନ୍ଦାଭେସ୍ତା ମଧ୍ୟ ଈଶ୍ୱରୀୟ ପ୍ରେରଣାରୁ ସୃଷ୍ଟ ମହାନ ଗ୍ରନ୍ଥ ଅଟେ । ହିନ୍ଦୁ ଧର୍ମଶାସ୍ତ୍ରରେ ଥିବା ମୋର ଆସ୍ଥାରୁ ଏହା ଭାବିବା ଠିକ୍ ନୁହେଁ ଯେ ଶାସ୍ତ୍ରର ପ୍ରତ୍ୟେକଟି ବାକ୍ୟ ଦିବ୍ୟ ପ୍ରେରଣାରୁ ଲିଖିତ ବୋଲି ମୁଁ କହୁଛି । ଶାସ୍ତ୍ରର କୌଣସି ଉକ୍ତିର ବ୍ୟାଖ୍ୟା ଯେତେ ପାଣ୍ଡିତ୍ୟପୂର୍ଣ୍ଣ ମନେହେଲେ ବି ଯଦି ତାହା ବିଚାରଶୀଳତା ଓ ନୈତିକ ଭାବନାକୁ ବିରୋଧ କରୁଥାଏ, ତେବେ ତାହାକୁ ଗ୍ରହଣ କରିବାକୁ ମୁଁ ବାଧ୍ୟ ନୁହେଁ ।''[୧୨]

ଗାନ୍ଧୀଙ୍କର ଏହି ମତ ଜଣେ ରକ୍ଷଣଶୀଳ ହିନ୍ଦୁଙ୍କ ପାଇଁ ଯେ ଗ୍ରହଣଯୋଗ୍ୟ ହେବ ଏଥିରେ ମୋର ସନ୍ଦେହ ରହିଛି । ଜଣେ ହେତୁବାଦୀ ଓ ମାନବବାଦୀଙ୍କ ଦୃଷ୍ଟିଭଙ୍ଗୀ ସହିତ ଗାନ୍ଧୀଙ୍କର ଏହି ଭାବନା ''ଶାସ୍ତ୍ରର କୌଣସି ଉକ୍ତି ଯେତେ ପାଣ୍ଡିତ୍ୟପୂର୍ଣ୍ଣ ହେଉନା କାହିଁକି ଯଦି ତାହା ବିଚାରଶୀଳତା ବା ନୈତିକ ଦୃଷ୍ଟିଭଙ୍ଗୀର ବିରୁଦ୍ଧାଚରଣ କରେ ତେବେ ମୋ ପାଇଁ ଗ୍ରହଣଯୋଗ୍ୟ ନୁହେଁ'' ପ୍ରାୟତଃ ସମତାଳ ରକ୍ଷାକରେ । 'ସେ ବେଦର ପ୍ରଭୁତ୍ୱକୁ ଗ୍ରହଣ କରନ୍ତି ନାହିଁ' ଏପରି କହି ନ ଥିଲେ ମଧ୍ୟ ମୋ ମତରେ ଧର୍ମ ପ୍ରତି ଗ୍ରହଣଶୀଳ ଦୃଷ୍ଟିଭଙ୍ଗୀ ପୋଷଣ କରିଥିବା ତାଙ୍କୁ ଜଣେ ଉଦାରପନ୍ଥୀ ହିନ୍ଦୁ କହିବା ସମୀଚୀନ ହେବ । ଅପରପକ୍ଷରେ ମୋର ଦୃଷ୍ଟିକୋଣ ଗାନ୍ଧୀଙ୍କ ଠାରୁ ପୃଥକ ଅଟେ । କାରଣ ବେଦ, ବାଇବେଲ ବା କୋରାନ କିମ୍ବା ସେପରି କୌଣସି ଗ୍ରନ୍ଥ ଯେ ଦିବ୍ୟ-ପ୍ରେରଣା ଦ୍ୱାରା ଲିଖିତ ଓ ଅଭ୍ରାନ୍ତ ମୁଁ ତାହା ଗ୍ରହଣ କରେ ନାହିଁ ।

## (୨)

ବର୍ଣ୍ଣ ବ୍ୟବସ୍ଥା ବା ବର୍ଣ୍ଣାଶ୍ରମ ଧର୍ମ ପ୍ରସଙ୍ଗରେ ଆଲୋଚନା କରିବା ପୂର୍ବରୁ ପ୍ରଥମରୁ ଏହା କହିବା ଉଚିତ ହେବ ଯେ, ମୋ ବିଚାରରେ ଏହି ବ୍ୟବସ୍ଥା କ'ଣ

ବା ଏକ ଆଦର୍ଶଗତ ମାନଦଣ୍ଡରୁ ଏହା କ'ଣ ହେବା ଆବଶ୍ୟକ ସେ ସମ୍ପର୍କରେ ମୁଁ ଆଲୋଚନା କରିବାକୁ ଆଗ୍ରହୀ ନୁହେଁ । ପ୍ରଥମରେ ହିନ୍ଦୁ ଧର୍ମଶାସ୍ତ୍ର ଯଥା ବେଦ, ମନୁସ୍ମୃତି ଇତ୍ୟାଦି କ୍ଷେତ୍ରରେ ଏହାର ଯେଉଁ ବର୍ଣ୍ଣନ ରହିଛି ତାହାର ବସ୍ତୁନିଷ୍ଠ ବିଶ୍ଳେଷଣ କରିବା ମୋର ଲକ୍ଷ୍ୟ ଅଟେ । ଦ୍ୱିତୀୟରେ ବର୍ଣ୍ଣବ୍ୟବସ୍ଥାର ବିରୋଧ ଓ ଆଲୋଚନା ଚତୁର୍ବର୍ଣ୍ଣ ପୃଷ୍ଠଭୂମିରେ ହିଁ କରିବାକୁ ମୁଁ ଆଗ୍ରହୀ ।

ଆମେ ପୂର୍ବରୁ ଦେଖିଛେ ଯେ ବର୍ଣ୍ଣର ଉଲ୍ଲେଖ (ଜନ୍ମ ବା ଜାତି ଅନୁଯାୟୀ ଶ୍ରେଣୀ ବିଭାଜନ) ଋଗ୍‌ବେଦର ପୁରୁଷ ସୂକ୍ତରେ ହୋଇଛି । ଜୀବନର ଚାରୋଟି ଅବସ୍ଥା ଯଥା ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ ପ୍ରସଂଗ ଉପନିଷଦରେ ଦେଖିବାକୁ ମିଳେ । ଏହି ଭାବନାସହ ଜୀବନର ଚାରୋଟି ପୁରୁଷାର୍ଥ ବା ଲକ୍ଷ୍ୟ ଯଥା ଧର୍ମ, ଅର୍ଥ, କାମ ଓ ମୋକ୍ଷ ସଂଶ୍ଳିଷ୍ଟ । ଏହି ଚାରୋଟି ଲକ୍ଷ୍ୟ ମଧ୍ୟରୁ ଉପନିଷଦରେ ସନ୍ନ୍ୟାସ ଆଶ୍ରମ ଓ ମୋକ୍ଷକୁ ଜୀବନର ଶ୍ରେଷ୍ଠ ପୁରୁଷାର୍ଥ ଭାବରେ ଗ୍ରହଣ କରାଯାଇଛି ।[୧୩]

ବର୍ଣ୍ଣାଶ୍ରମ ଧର୍ମ ବ୍ୟବସ୍ଥାକୁ ରାମାୟଣ, ମହାଭାରତ ଓ ଭଗବତ୍ ଗୀତା ପରି ହିନ୍ଦୁମାନଙ୍କ ମଧ୍ୟରେ ବହୁଳ ପ୍ରସାରିତ ଗ୍ରନ୍ଥମାନ ମଧ୍ୟ ଗ୍ରହଣ କରିଛନ୍ତି । ରାମାୟଣରେ ରାମ ଶମ୍ବୁକ ଶୂଦ୍ରଙ୍କୁ ଏହି କାରଣ ପାଇଁ ହତ୍ୟା କରିଛନ୍ତି । ଶୂଦ୍ର କୁଳରେ ଜନ୍ମ ହୋଇ ଶମ୍ବୁକ ତପସ୍ୟା ଆଚରଣ କରିବା ତାଙ୍କର ଅଧିକାର ବହିର୍ଭୂତ ହୋଇଥିବା ଯୋଗୁଁ ରାମ ତାଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରିଛନ୍ତି ।[୧୪]

ସେହିପରି ମହାଭାରତରେ ଦ୍ରୋଣାଚାର୍ଯ୍ୟ ଏକଲବ୍ୟ କ୍ଷତ୍ରିୟ ହୋଇ ନ ଥିବାରୁ ତାଙ୍କୁ ଧନୁର୍ବିଦ୍ୟା ଶିକ୍ଷା ଦେବାକୁ ମନା କରିଛନ୍ତି । ଯେତେବେଳେ ଏକଲବ୍ୟ ଦ୍ରୋଣଙ୍କୁ ନିଜର ମାନସପଟରେ ଗୁରୁ ଭାବରେ ଗ୍ରହଣ କରି ସ୍ୱ ଉଦ୍ୟମରେ ଧନୁର୍ବିଦ୍ୟା ଶିକ୍ଷା କରିବାକୁ ପ୍ରୟାସ କରିଛନ୍ତି ସେତେବେଳେ ଗୁରୁ ଦକ୍ଷିଣା ଭାବରେ ଗୁରୁ ଦ୍ରୋଣ ଏକଲବ୍ୟ ଡାହାଣ ହାତର ବୁଢ଼ା ଆଙ୍ଗୁଠିକୁ କାଟି କରି ଦେବାକୁ ତାଙ୍କଠାରୁ ଚାହିଁଛନ୍ତି । ଏହାର ଉଦ୍ଦେଶ୍ୟ ଏକଲବ୍ୟ ଯେପରି କେବେହେଲେ ତାଙ୍କର ପ୍ରିୟ ଶିଷ୍ୟ ଅର୍ଜ୍ଜୁନଙ୍କୁ ଅତିକ୍ରମ କରିପାରିବ ନାହିଁ ।

ହିନ୍ଦୁଧର୍ମର ମହିମାନ୍ୱିତ ଗ୍ରନ୍ଥ ଭଗବତ ଗୀତା ମଧ୍ୟ ବର୍ଣ୍ଣବ୍ୟବସ୍ଥାକୁ ସମର୍ଥନ କରେ ।[୧୫] ଅର୍ଜ୍ଜୁନ ଯୁଦ୍ଧ ନ କରିବାକୁ ଚାହିଁଛନ୍ତି । ଯୁଦ୍ଧଦ୍ୱାରା ତାଙ୍କର ଆଶଙ୍କା ହୁଏ ଯେ, ବର୍ଣ୍ଣାଶ୍ରମ ଧର୍ମ ନଷ୍ଟ ହୋଇଯିବା ଫଳରେ ବର୍ଣ୍ଣ ବର୍ଣ୍ଣ ମଧ୍ୟରେ ମିଳନ ହୋଇ ବର୍ଣ୍ଣଶଙ୍କର ଉତ୍ପନ୍ନ ହେବେ । ଏହା ଫଳରେ ପରିବାର ସ୍ତରରେ ଅବକ୍ଷୟ ଆସିବ ।[୧୬] ଅପର ପକ୍ଷରେ କୃଷ୍ଣ ଅର୍ଜ୍ଜୁନଙ୍କୁ ଯୁଦ୍ଧରେ ସମ୍ପୃକ୍ତ ହେବାକୁ ପ୍ରେରଣା ଦେଇଛନ୍ତି । ଅର୍ଜ୍ଜୁନ କ୍ଷତ୍ରିୟ ହୋଇଥିବାରୁ ନିଜର ବର୍ଣ୍ଣ-ଧର୍ମ ଅନୁଯାୟୀ ସେ ଯୁଦ୍ଧ

କରିବା ଆବଶ୍ୟକ ବୋଲି କୃଷ୍ଣ ତାଙ୍କୁ ବୁଝାଇଛନ୍ତି ।[୧୭] ବସ୍ତୁତଃ ଅର୍ଜୁନ କ୍ଷତ୍ରିୟ ହୋଇ ଜନ୍ମ ହୋଇଥିବାରୁ ତାଙ୍କ ପାଖରେ ଏକ ନୈତିକ ସମସ୍ୟା ସୃଷ୍ଟି ହୋଇଛି । ସେ ବ୍ରାହ୍ମଣ, ବୈଶ୍ୟ ବା ଶୂଦ୍ର ଭାବରେ ଜନ୍ମ ହୋଇଥିଲେ ଏକ ଧ୍ୱଂସକାରୀ ଯୁଦ୍ଧର ବିଭୀଷିକାକୁ ଏଡ଼ାଇ ନେଇ ପାରିଥାନ୍ତେ । ଏପରିକି ବହୁ ପ୍ରଶଂସିତ ନିଷ୍କାମ କର୍ମର ମହତ୍ତ୍ୱ ଭିତରେ ଏହି ଭାବନା ରହିଛି ଯେ ଜଣେ କାମନା ରହିତ ହୋଇ ନିଜ ବର୍ଣ୍ଣର ଧର୍ମ ବା ଦାୟିତ୍ୱକୁ ନିଷ୍ଠାର ସହ ପାଳନ କରିବା ଆବଶ୍ୟକ । ଅନ୍ତତଃ ଜଣେ ହିନ୍ଦୁ ଧର୍ମଶାସ୍ତ୍ରବିଦ୍ ପଣ୍ଡିତ ରାମାନୁଜ ଏହିପରି ଏହାକୁ ବ୍ୟାଖ୍ୟା କରିଛନ୍ତି ।[୧୮] ହିନ୍ଦୁ ଧର୍ମର ଜଣେ ମହାନ୍ ପ୍ରବକ୍ତା ଶଙ୍କର, ବର୍ଣ୍ଣବ୍ୟବସ୍ଥାକୁ ମଧ ସମର୍ଥନ କରିଛନ୍ତି । ତାଙ୍କ ମତରେ ଶୂଦ୍ରମାନଙ୍କର ଆଧାତ୍ମିକ ଜ୍ଞାନ ଲାଭର ଅଧିକାର ନାହିଁ ।[୧୯] ହିନ୍ଦୁମାନଙ୍କର ମୁଖ୍ୟ ଆଚାର ସଂହିତା ମନୁସ୍ମୃତି ଭିତରେ ବର୍ଣ୍ଣାଶ୍ରମ ଧର୍ମର ବିସ୍ତୃତ ବିବରଣ ଦେଖିବାକୁ ମିଳିଥାଏ । ବର୍ଣ୍ଣବ୍ୟବସ୍ଥା ବିଷୟରେ ଏକ ସ୍ପଷ୍ଟ ଧାରଣା ଆଣିବା ପାଇଁ ଏହାର ବ୍ୟାଖ୍ୟା ପ୍ରତି ଦୃଷ୍ଟି ନିକ୍ଷେପ କରାଯାଇପାରେ ।

ମନୁସ୍ମୃତିର ପ୍ରଥମ ପରିଚ୍ଛେଦରେ ସ୍ପଷ୍ଟ ଭାବରେ ଉଲ୍ଲେଖ ରହିଛି ଯେ ସୃଷ୍ଟିକର୍ତ୍ତା ବ୍ରହ୍ମା ତାଙ୍କ ମୁଖରୁ ବ୍ରାହ୍ମଣ, ହାତରୁ କ୍ଷତ୍ରିୟ, ଜଙ୍ଘରୁ ବୈଶ୍ୟ ଓ ପାଦରୁ ଶୂଦ୍ରମାନଙ୍କୁ ସୃଷ୍ଟି କରିଛନ୍ତି ।[୨୦]

ମନୁ ଏହା ମଧ ଉଲ୍ଲେଖ କରିଛନ୍ତି ଯେ ସୃଷ୍ଟିକର୍ତ୍ତା ବ୍ରହ୍ମା ତାଙ୍କୁ (ମନୁଙ୍କୁ) ମନୁସ୍ମୃତି ମଧ ଶିକ୍ଷା ଦେଇଛନ୍ତି ।[୨୧]

ମନୁସ୍ମୃତିରେ ବିଭିନ୍ନ ବର୍ଣ୍ଣମାନଙ୍କର କର୍ତ୍ତବ୍ୟ ବିଷୟରେ ଉଲ୍ଲେଖ ରହିଛି । ବ୍ରାହ୍ମଣମାନଙ୍କୁ ଶିକ୍ଷାଦାନ, ଅଧ୍ୟୟନ, ଯଜ୍ଞ ଉପଚାର ଓ ପୂଜା ଇତ୍ୟାଦି କରିବା ସହିତ ଦାନ ଗ୍ରହଣ କରିବାକୁ ସୃଷ୍ଟି କରାଯାଇଛି ।[୨୨] କ୍ଷତ୍ରିୟମାନଙ୍କୁ ଅନ୍ୟମାନଙ୍କୁ ସୁରକ୍ଷା ଦେବାକୁ, ଦାନ ଦେବାକୁ, ଯଜ୍ଞ ଆୟୋଜନ କରିବାକୁ ଓ ଅଧ୍ୟୟନ କରିବାକୁ ସୃଷ୍ଟି କରାଯାଇଛି ।[୨୩] ପଶୁମାନଙ୍କୁ ରକ୍ଷାକରିବା, ଦାନ ଦେବା, ଯଜ୍ଞ ଆୟୋଜନରେ ସାହାଯ୍ୟ କରିବା, ବ୍ୟବସାୟ କରିବା, ସୁଧନେଇ ଧାରଦେବା ଓ କୃଷି ଆଦି କାର୍ଯ୍ୟ କରିବାକୁ ବୈଶ୍ୟମାନଙ୍କର ଉତ୍ପତ୍ତି ହୋଇଛି ।[୨୪] ବିନା ପ୍ରତିବାଦରେ ବ୍ରାହ୍ମଣ ଓ ଅନ୍ୟ ଦୁଇ ବର୍ଣ୍ଣର ସେବା କରିବା ପାଇଁ ଶୂଦ୍ରମାନଙ୍କୁ ବ୍ରହ୍ମା ସୃଷ୍ଟି କରିଛନ୍ତି ।[୨୫]

ଏହା କୌତୂହଳର ବିଷୟ ଯେ, ଅଧ୍ୟୟନ କରିବା, ଯଜ୍ଞ କରିବା, ଦାନ ଦେବା ଇତ୍ୟାଦି କାର୍ଯ୍ୟକୁ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର ସାଧାରଣ କର୍ତ୍ତବ୍ୟ ଭାବରେ ନିଆଯିବା ବେଳେ ଶିକ୍ଷାଦେବା, ଦାନ ଗ୍ରହଣ କରିବା ଓ ଯଜ୍ଞର

ପୁରୋଧା ହେବା କାର୍ଯ୍ୟକୁ କେବଳ ବ୍ରାହ୍ମଣମାନଙ୍କ ପାଇଁ ସୁରକ୍ଷିତ ରଖାଯାଇଛି । ଶୂଦ୍ରମାନଙ୍କୁ ଅଧ୍ୟୟନ କରିବା, ବ୍ରାହ୍ମଣମାନଙ୍କ ସହାୟତାରେ ଯଜ୍ଞ କରିବା ଓ ଏପରିକି ବ୍ରାହ୍ମଣମାନଙ୍କୁ ଦାନ ଦେବା ଅଧିକାର ଦିଆଯାଇ ନାହିଁ ।

ମନୁସ୍ମୃତି ଅନୁଯାୟୀ ବ୍ରହ୍ମାଙ୍କ ମୁଖରୁ ସୃଷ୍ଟି ହେବା ଯୋଗୁଁ ବ୍ରାହ୍ମଣମାନେ ଜ୍ୟେଷ୍ଠ ଓ ସେମାନେ ବେଦର ସ୍ଥାପକ ହୋଇଥିବାରୁ ସମଗ୍ର ଜଗତର ପ୍ରଭୁ ଅଟନ୍ତି ।[୨୬] ଏତଦ୍‌ବ୍ୟତୀତ ବ୍ରାହ୍ମଣମାନେ ଈଶ୍ୱରଙ୍କର ଆରାଧନା କ୍ଷେତ୍ରରେ ବା ଦେବତାଙ୍କୁ ଭୋଗ ପ୍ରଦାନ କରିବା କ୍ଷେତ୍ରରେ ମଧ୍ୟସ୍ଥ ହୋଇ କାର୍ଯ୍ୟ କରନ୍ତି । ସେହିପରି ମୃତଲୋକମାନଙ୍କର ଆତ୍ମାକୁ ପିଣ୍ଡ ଦେଇ ସେମାନଙ୍କୁ ବ୍ରାହ୍ମଣମାନେ ହିଁ ତୁଷ୍ଟ କରିପାରିବେ । ଦେବତା ଓ ମୃତ ଲୋକର ଆତ୍ମା ବ୍ରାହ୍ମଣମାନଙ୍କ ମୁଖ ମାଧ୍ୟମରେ ଖାଦ୍ୟ ଗ୍ରହଣ କରିଥାନ୍ତି, (ଯେହେତୁ ସେମାନେ ନିଜେ ମୁଖ-ରହିତ) ସୁତରାଂ ବ୍ରାହ୍ମଣମାନଙ୍କ ଅପେକ୍ଷା ଅନ୍ୟ କେହି ଉଚ୍ଚ ସ୍ଥାନ ନେଇପାରିବେ ନାହିଁ ।[୨୭] ବ୍ରାହ୍ମଣମାନଙ୍କ ଦୟା ଉପରେ ଅନ୍ୟମାନେ ଯାହା କିଛି ଉପଭୋଗ କରିପାରିବେ ।[୨୮] ମନୁସ୍ମୃତି ଅତି ସ୍ୱଷ୍ଟ ଭାବରେ ଏହା ଉଲ୍ଲେଖ କରିଛି ଯେ ବ୍ରାହ୍ମଣମାନେ ହିଁ କେବଳ ଧର୍ମଶାସ୍ତ୍ର ଶିକ୍ଷା ଦେଇପାରିବେ ଓ ଅନ୍ୟ କେହି ଏହା କରିପାରିବେ ନାହିଁ ।[୨୯]

ମନୁସ୍ମୃତିରେ ବେଦକୁ ଶ୍ରୁତି ଓ ଧର୍ମଶାସ୍ତ୍ରକୁ ସ୍ମୃତି ବୋଲି କୁହାଯାଇଛି । ଧର୍ମ ସମ୍ପର୍କରେ ବେଦର ମତକୁ ବୈଧ ଓ ନିର୍ଭରଯୋଗ୍ୟ ଆଧାର ଭାବରେ ଗ୍ରହଣ କରାଯାଇଛି । ଧର୍ମର ଉତ୍ପତ୍ତି ଏସବୁରୁ ହୋଇ ଥିବାରୁ ସେସବୁ ସମ୍ପର୍କରେ କେହି ସମାଲୋଚନା ମୂଳକ ବିରୋଧ ମତ ଦେଇପାରିବେ ନାହିଁ ।[୩୦] କୌଣସି ନାସ୍ତିକ ବା ବେଦର ସମାଲୋଚକ ତର୍କଦ୍ୱାରା ସେସବୁକୁ ବିରୋଧ କଲେ ତାହାକୁ ସାମାଜିକ ବାସନ୍ଦ କରାଯିବା ଦରକାର ।[୩୧]

ସଂକ୍ଷେପରେ କହିଲେ ଚତୁର୍ବର୍ଣ୍ଣର ମୁଖ୍ୟ ଲକ୍ଷଣଗୁଡ଼ିକ ଯାହା ମନୁସ୍ମୃତିରେ ବ୍ୟକ୍ତ ହୋଇଛି ତାହା ହେଲା—

୧. ଜନ୍ମକୁ ଆଧାରକରି ହିନ୍ଦୁ ସମାଜକୁ ଚାରୋଟି ବର୍ଣ୍ଣରେ ବିଭାଜିତ କରାଯାଇଛି । ଏହି ଚାରୋଟି ବର୍ଣ୍ଣ ମଧ୍ୟରୁ ପ୍ରଥମ ତିନୋଟି ବର୍ଣ୍ଣ ଯଥା— ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କୁ ଦ୍ୱିଜ ବୋଲି ଆଖ୍ୟା ଦିଆଯାଇଛି । ଦ୍ୱିଜମାନେ ଉପନୟନ କରିବା ଓ ବେଦ ପଢ଼ିବାର ଅଧିକାର ପାଇଛନ୍ତି । ଶୂଦ୍ର ଓ ଦ୍ୱିଜ ବର୍ଣ୍ଣର ନାରୀମାନେ ମଧ୍ୟ ବେଦ ପଢ଼ିବାର ଅଧିକାର ପାଇନାହାନ୍ତି ।

୨. ପ୍ରତ୍ୟେକ ବର୍ଣ୍ଣର ବ୍ୟକ୍ତିମାନଙ୍କର ଜୀବିକା ଓ କର୍ତ୍ତବ୍ୟକୁ ସମାଜରେ

ସୁନିର୍ଦ୍ଦିଷ୍ଟ କରାଯାଇଛି । ରାଜା ଓ ଶାସକ ଦୃଢ଼ଭାବରେ ସମାଜରେ ଏହାର ପ୍ରଚଳନ କରାଇବେ ।[୩୨] ମନୁସ୍ମୃତି ଅନୁଯାୟୀ ଯଦି କୌଣସି ନିମ୍ନବର୍ଣ୍ଣର ବ୍ୟକ୍ତି ଉଚ୍ଚ ବର୍ଣ୍ଣର ବ୍ୟକ୍ତିଙ୍କର କର୍ମ କରିବାକୁ ପ୍ରୟାସ କରିବେ, ତେବେ ରାଜ୍ୟର ଶାସକ ତାଙ୍କର ସମସ୍ତ ସମ୍ପତ୍ତିକୁ ବାଜ୍ୟାପ୍ତ କରିବା ସହିତ ତାଙ୍କୁ ରାଜ୍ୟରୁ ନିର୍ବାସିତ କରିବେ ।[୩୩]

୩. ବ୍ରାହ୍ମଣମାନେ ବର୍ଣ୍ଣକ୍ରମରେ ଅନ୍ୟ ତିନି ଶ୍ରେଣୀଠାରୁ ଉଚ୍ଚରେ ରହିବେ ଓ ଶୂଦ୍ରମାନେ ବର୍ଣ୍ଣବ୍ୟବସ୍ଥାରେ ସବୁଠାରୁ ନିମ୍ନରେ ରହିବେ । ଏପରିକି ଜଣେ ଶହେ ବର୍ଷର ବୃଦ୍ଧ କ୍ଷତ୍ରିୟ ଜଣେ ଦଶ ବର୍ଷ ବୟସ୍କ ବ୍ରାହ୍ମଣ ବାଳକକୁ ନିଜର ପିତୃତୁଲ୍ୟ ମନେକରି ସମ୍ମାନ ଦେଖାଇବେ ।[୩୪] ବ୍ରାହ୍ମଣମାନେ ହିଁ କେବଳ ଅନ୍ୟମାନଙ୍କୁ ଶିକ୍ଷା ପ୍ରଦାନ କରିପାରିବେ । ଯଦି କୌଣସି ସମୟରେ ଜଣେ ଶୂଦ୍ର ଜଣେ ବ୍ରାହ୍ମଣକୁ ଶିକ୍ଷା ଦେବାକୁ ଦୁଃସାହସ କରିବେ ତେବେ ରାଜା ଗରମ ତେଲ୍ ତା'ର କାନ ଓ ପାଟିରେ ଢାଳି ତାକୁ ଶାସ୍ତି ବିଧାନ କରିବେ ।[୩୫] ସେହିପରି ଯଦି ଜଣେ ଶୂଦ୍ର ବ୍ରାହ୍ମଣ ସ୍ଥାନରେ ବସିବାକୁ ଉଦ୍ୟମ କରିବେ ତେବେ ତତଲା ଲୁହାରେ ଶୂଦ୍ରର ଅଣ୍ଟାକୁ ଚିହ୍ନ ଦେବେ କିମ୍ବା ତା'ର ନିତମ୍ବ କାଟି ଦଣ୍ଡଦେବେ ।

୪. ନାରୀମାନଙ୍କୁ ଅନ୍ୟମାନଙ୍କ ସହିତ ସମାନ କରାଯିବ ନାହିଁ । ଏପରିକି ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ବର୍ଣ୍ଣର ନାରୀମାନେ ଉପନୟନ କରିପାରିବେ ନାହିଁ କିମ୍ବା ବେଦ ଅଧ୍ୟୟନ କରିବେ ନାହିଁ । ସେମାନଙ୍କ ପାଇଁ ବିବାହ ହିଁ ଉପନୟନ ଅଟେ ଓ ସ୍ୱାମୀର ସେବା ଗୁରୁକୁଳରେ ବିଦ୍ୟାଧ୍ୟୟନ ସହିତ ସମାନ ଅଟେ ।[୩୭] ଜଣେ ନାରୀଙ୍କର ସ୍ୱାମୀ ଯେତେ ଅନୈତିକ ହୁଅନ୍ତୁ, ଅନ୍ୟ ନାରୀ ସହିତ ସମ୍ବନ୍ଧ ରଖନ୍ତୁ ଏବଂ ଜ୍ଞାନ ଓ ସୁଗୁଣ ବିବର୍ଜିତ ହୁଅନ୍ତୁ, ତଥାପି ସେ ନିଜ ସ୍ୱାମୀଙ୍କୁ ଦେବତା ବୋଲି ବିଚାର କରିବେ ।[୩୮] ଜଣେ ବିପତ୍ନୀକ ବ୍ୟକ୍ତି ପୁନଶ୍ଚ ବିବାହ କରିପାରିବେ କିନ୍ତୁ ଜଣେ ବିଧବା କରିପାରିବେ ନାହିଁ ।[୩୯] ଏତଦ୍‌ବ୍ୟତୀତ ନାରୀମାନଙ୍କୁ କେବେହେଲେ ସ୍ୱାଧୀନ ବୋଲି ବିଚାର କରାଯିବ ନାହିଁ । ବାଲ୍ୟାବସ୍ଥାରେ ସେମାନେ ନିଜର ପିତାଙ୍କ ଦ୍ୱାରା, ଯୁବାବସ୍ଥାରେ ସ୍ୱାମୀଙ୍କଦ୍ୱାରା ଓ ବାର୍ଦ୍ଧକ୍ୟାବସ୍ଥାରେ ପୁତ୍ରଙ୍କଦ୍ୱାରା ସୁରକ୍ଷା ପାଇବେ ।[୪୦] ତାଙ୍କର ରକ୍ଷାକର୍ତ୍ତା ସ୍ୱଜନମାନେ ଜଣେ ନାରୀଙ୍କୁ କେବେହେଲେ ବି ସ୍ୱାଧୀନତା ପ୍ରଦାନ କରିବେ ନାହିଁ ବା ସ୍ୱତନ୍ତ୍ରତାର ସୁଯୋଗ ଦେବେନାହିଁ ।[୪୧] ଜଣେ ନାରୀ ନିଜର ପିତା, ସ୍ୱାମୀ ବା ପୁତ୍ର ରକ୍ଷାକର୍ତ୍ତାଙ୍କ ଅନୁମତି ବିନା ନିଜ ପରିବାରରେ ମଧ୍ୟ

କୌଣସି କାର୍ଯ୍ୟ କରିପାରିବେ ନାହିଁ ।[୪୨] ବାଲ୍ୟାବସ୍ଥାରେ ନିଜର ପିତା, ବିବାହ ପରେ ନିଜର ସ୍ୱାମୀ ଓ ସ୍ୱାମୀଙ୍କର ଦେହାବସାନ ପରେ ପୁତ୍ରର ନିୟନ୍ତ୍ରଣ ଭିତରେ ଜଣେ ନାରୀ ରହିବେ ।[୪୩]

୫. ଏପରିକି ଆଇନ ଦୃଷ୍ଟିରେ ସବୁବର୍ଣ୍ଣର ଲୋକମାନେ ସମାନ ବୋଲି ବିଚାର୍ଯ୍ୟ ହେବେ ନାହିଁ । ମନୁ ଯେଉଁ ହିନ୍ଦୁ ଆଚାର ସଂହିତା ପ୍ରଣୟନ କରିଛନ୍ତି ତାହା ଅସମତା ଉପରେ ପର୍ଯ୍ୟବସିତ । ଏକାପ୍ରକାରର ଅପରାଧ ପାଇଁ ସବୁ ବର୍ଣ୍ଣର ଲୋକମାନଙ୍କ ପାଇଁ ସମାନ ଦଣ୍ଡବିଧାନ କରାଯାଇ ନାହିଁ । ବର୍ଣ୍ଣ ଅନୁଯାୟୀ ଦଣ୍ଡକୁ ପୃଥକ କରାଯାଇଛି । ଅର୍ଥାତ୍ କୌଣସି ଅପରାଧୀଙ୍କ ପାଇଁ ଦଣ୍ଡବିଧାନ କରାଯିବା ସମୟରେ ତାଙ୍କର ବର୍ଣ୍ଣକୁ ବିଚାରକୁ ନିଆଯାଇଛି । ଏକାପ୍ରକାର ଅପରାଧ ପାଇଁ ଜଣେ ବ୍ରାହ୍ମଣଙ୍କ ପାଇଁ ସାମାନ୍ୟ ଦଣ୍ଡବିଧାନ କରାଯିବା ବେଳେ ଜଣେ ଶୂଦ୍ରଙ୍କ ପାଇଁ କଠୋର ଦଣ୍ଡବିଧାନ କରାଯାଇଛି । ପୁନଶ୍ଚ ଅପରାଧରେ କ୍ଷତିଗ୍ରସ୍ତ ବ୍ୟକ୍ତି ଶୂଦ୍ର ହୋଇଥିଲେ ଅପରାଧୀକୁ ସାମାନ୍ୟ ଦଣ୍ଡ ଦିଆଯିବା ବେଳେ, କ୍ଷତିଗ୍ରସ୍ତ ବ୍ୟକ୍ତି ବ୍ରାହ୍ମଣ ହୋଇଥିଲେ ଅପରାଧୀକୁ କଠୋର ଦଣ୍ଡ ଦିଆଯିବାକୁ କୁହାଯାଇଛି । ଜଣେ ବ୍ରାହ୍ମଣଙ୍କୁ ମୃତ୍ୟୁଦଣ୍ଡ ଦେବା ଅର୍ଥ ତାଙ୍କୁ ଲଣ୍ଡା କରିଦେବା ଯଥେଷ୍ଟ ହେବ ଅଥଚ ଜଣେ କ୍ଷତ୍ରିୟ, ବୈଶ୍ୟ ବା ଶୂଦ୍ରଙ୍କୁ ମୃତ୍ୟୁଦଣ୍ଡ ହେଲେ ସେମାନଙ୍କୁ ମାରିଦେବାକୁ ହେବ । ଯଦି କୌଣସି କ୍ଷତ୍ରିୟ, ବୈଶ୍ୟ ବା ଶୂଦ୍ର ବିଚାରାଳୟରେ ମିଥ୍ୟା ସାକ୍ଷୀ ପ୍ରଦାନକରିବେ ତେବେ ତାଙ୍କୁ ଦଣ୍ଡ ବିଧାନ କରିବା ସହିତ ରାଜ୍ୟରୁ ବହିଷ୍କାର କରାଯିବ, ଅଥଚ ଜଣେ ବ୍ରାହ୍ମଣ ତାହା କଲେ ତାଙ୍କୁ ଦଣ୍ଡବିଧାନ ସ୍ୱରୂପ କେବଳ ସାକ୍ଷ୍ୟ ଦେବାରୁ ବଞ୍ଚିତ କରାଯିବ ।[୪୪] କୌଣସି ବ୍ୟକ୍ତି ଯଦି ନିଜ ବର୍ଣ୍ଣର କୌଣସି ମହିଳାଙ୍କ ସମ୍ମତିରେ ତାଙ୍କୁ ସମ୍ଭୋଗ କରନ୍ତି, ତାଙ୍କୁ କିଛି ଦଣ୍ଡ ଦିଆଯିବ'ନାହିଁ ।[୪୬] କିନ୍ତୁ ଜଣେ ବ୍ୟକ୍ତି ତାଙ୍କଠାରୁ ଉଚ୍ଚବର୍ଣ୍ଣର କୌଣସି ମହିଳାଙ୍କୁ ତାଙ୍କର ସମ୍ମତି ଥାଉ ବା ନ ଥାଉ, ସମ୍ଭୋଗ କରନ୍ତି ତେବେ ତାଙ୍କୁ ସେଥିପାଇଁ ମୃତ୍ୟୁଦଣ୍ଡ ଦିଆଯିବ ।[୪୭] ଯଦି ଜଣେ ବ୍ରାହ୍ମଣ ଅନ୍ୟ ଜଣେ ଦ୍ୱିଜଙ୍କୁ ତାଙ୍କ କାର୍ଯ୍ୟ ପାଇଁ ବାଧ କରିବେ ତେବେ ତାଙ୍କୁ ଦଣ୍ଡ ଦିଆଯିବ ।[୪୮] କିନ୍ତୁ ଜଣେ ବ୍ରାହ୍ମଣ ଜଣେ ଶୂଦ୍ରଙ୍କୁ ନିଜ କାର୍ଯ୍ୟପାଇଁ ବାଧ କରିବେ, ପାରିଶ୍ରମିକ ଦିଅନ୍ତୁ ବା ନ ଦିଅନ୍ତୁ ସେଥିରେ ବ୍ରାହ୍ମଣଙ୍କୁ ଦଣ୍ଡ ଦିଆଯିବ ନାହିଁ, କାରଣ ଅନ୍ୟର ସେବା ପାଇଁ ହିଁ ଶୂଦ୍ରମାନଙ୍କର ସୃଷ୍ଟି ହୋଇଛି ।[୪୯] ଯଦି ଜଣେ ବ୍ରାହ୍ମଣ ଜଣେ ଶୂଦ୍ରଙ୍କୁ ଅସମ୍ମାନ ବା ଗାଳି

ଦିଅନ୍ତି ତେବେ ତାଙ୍କୁ ସାମାନ୍ୟ ଜୋରିମାନା କରାଯିବ,[୫୦] କିନ୍ତୁ ଯଦି ଜଣେ ଶୂଦ୍ର କୌଣସି ବ୍ରାହ୍ମଣଙ୍କୁ ସେହି ପ୍ରକାର ବ୍ୟବହାର ପ୍ରଦର୍ଶନ କରନ୍ତି ତେବେ ତାଙ୍କୁ ମୃତ୍ୟୁଦଣ୍ଡ ଦିଆଯିବ ।[୫୧] ଯଦି ଜଣେ ବ୍ରାହ୍ମଣ ଜଣେ ଶୂଦ୍ରଙ୍କୁ ହତ୍ୟା କରନ୍ତି ତେବେ ତା'ର ପ୍ରାୟଶ୍ଚିତ ସ୍ୱରୂପ ସେ ବିରାଡ଼ି, ବେଙ୍ଗ, ପେଚା କିମ୍ବା କୁଆ ବଧକରି ଶୂଦ୍ରହତ୍ୟାର ପ୍ରାୟଶ୍ଚିତ କରିବେ ।[୫୨] ଅର୍ଥାତ୍ ଜଣେ ଶୂଦ୍ର ଜଣେ ବ୍ରାହ୍ମଣଙ୍କୁ ଗାଳି ଦେଲେ ମୃତ୍ୟୁଦଣ୍ଡ ପାଇବେ ଅଥଚ ଜଣେ ବ୍ରାହ୍ମଣ କୌଣସି ଶୂଦ୍ରଙ୍କୁ ହତ୍ୟାକଲେ ବି ସାମାନ୍ୟ ଦଣ୍ଡ ପାଇବେ । ମନୁସ୍ମୃତି ଭିତରେ ଏହିପ୍ରକାର ବୈଷମ୍ୟପୂର୍ଣ୍ଣ ନ୍ୟାୟ ବ୍ୟବସ୍ଥା କରାଯାଇଛି ।

ବର୍ଣ୍ଣ ବ୍ୟବସ୍ଥାର ମୌଳିକତା ହେଉଛି ଏହାର ବର୍ଗୀକୃତ ବୈଷମ୍ୟ ଓ ଏହି ବୈଷମ୍ୟର ଆଧାର ଉପରେ ହିଁ ଏହା ପର୍ଯ୍ୟବସିତ ସାମାଜିକ ଜୀବନର ବିଭିନ୍ନ କ୍ଷେତ୍ରରେ ଏହି ବୈଷମ୍ୟକୁ ପ୍ରୟୋଗ କରାଯାଇ ନିଷ୍ଠାର ସହ ଏହାକୁ ପାଳନ କରାଯାଇଛି । ନାମକରଣ କରିବା କ୍ଷେତ୍ରରେ,[୫୩] ଅନ୍ୟକୁ ସ୍ୱାଗତ କରିବାରେ[୫୪] ଅତିଥି ସତ୍କାର କ୍ଷେତ୍ରରେ,[୫୫] ବିଚାରାଳୟରେ ଶପଥ କରାଇବାରେ,[୫୬] ମୃତବ୍ୟକ୍ତିର ଶବ ଶ୍ମଶାନକୁ ନେବାରେ[୫୭] ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ବ୍ୟକ୍ତିଗତ ସ୍ତରରେ ବା ନାନା ସାମାଜିକ କାର୍ଯ୍ୟକଳାପରେ ଭିନ୍ନ ଭିନ୍ନ ବର୍ଣ୍ଣର ଲୋକମାନଙ୍କ ପାଇଁ ଅସମତାପୂର୍ଣ୍ଣ ବିଧି ବ୍ୟବସ୍ଥା ରଖାଯାଇଛି । ଏପରିକି ଅର୍ଥ ଧାର ଦେଇ ସୁଧ ଅସୁଲ କରିବା କ୍ଷେତ୍ରକୁ ମଧ୍ୟ ମନୁ ବାଦ୍ ଦେଇ ନାହାନ୍ତି । ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ଋଣଦେବା କ୍ଷେତ୍ରରେ ବ୍ରାହ୍ମଣ ପାଖରୁ ଯେତିକି ସୁଧ ହାସଲ କରାଯିବ, କ୍ଷତ୍ରିୟ ପାଖରୁ ତା'ଠାରୁ ଅଧିକ ସୁଧ ନିଆଯିବ, କ୍ଷତ୍ରିୟ ଅପେକ୍ଷା ବୈଶ୍ୟଠାରୁ ତା' ଅପେକ୍ଷା ବେଶି ସୁଧ ସଂଗ୍ରହ କରାଯିବ ଓ ଦରିଦ୍ର ଶୂଦ୍ରଠାରୁ ସର୍ବାଧିକ ସୁଧ ଆଦାୟ କରାଯିବ ।[୫୮]

୬. ଭିନ୍ନ ଭିନ୍ନ ବର୍ଣ୍ଣ ମଧ୍ୟରେ ବିବାହ ସମ୍ବନ୍ଧକୁ ନିଷେଧ କରାଯାଇଛି । ମନୁସ୍ମୃତି ଅନୁଯାୟୀ ଜଣେ ଦ୍ୱିଜ କେବଳ ନିଜ ବର୍ଣ୍ଣର ମହିଳାଙ୍କୁ ବିବାହ କରିବେ ।[୫୯] ପ୍ରଥମ ବିବାହ କ୍ଷେତ୍ରରେ କେବଳ ନିଜ ବର୍ଣ୍ଣର ମହିଳାଙ୍କୁ ବଛାଯିବ । ଅବଶ୍ୟ ଯଦି ଜଣେ ଦ୍ୱିଜ ଅତ୍ୟନ୍ତ ନିମ୍ନ ବର୍ଣ୍ଣର କୌଣସି ମହିଳାଙ୍କ ପ୍ରତି ଅତ୍ୟନ୍ତ କାମାସକ୍ତ ହୋଇପଡ଼ିବେ ତେବେ ତାଙ୍କୁ ନିଜର ଦ୍ୱିତୀୟ ପତ୍ନୀ ଭାବରେ ଗ୍ରହଣ କରିପାରିବେ ।[୬୦] କିନ୍ତୁ ମନୁ ଜଣେ ବ୍ରାହ୍ମଣ ବା କ୍ଷତ୍ରିୟ ଶୂଦ୍ର କନ୍ୟାକୁ ଏପରିକି ଦ୍ୱିତୀୟ ପତ୍ନୀ ଭାବରେ ଗ୍ରହଣ କରିବାକୁ ମଧ୍ୟ ବାରଣ କରିଛନ୍ତି । ସେପରି କେହି କଲେ ସେ ଶୂଦ୍ର

ଭାବରେ ହିଁ ଗଣ୍ୟ ହେବ ।[୬୧]

୯. ଅସ୍ପୃଶ୍ୟତାକୁ ମଧ ମନୁସ୍ମୃତିରେ ସାମାଜିକ ବ୍ୟବସ୍ଥାର ଅଙ୍ଗ ଭାବରେ ନିଆଯାଇ ଏହାକୁ ସ୍ୱୀକୃତି ଦିଆଯାଇଛି । ମନୁ, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହିପରି ଚାରୋଟି ବର୍ଣ୍ଣକୁ ସ୍ୱୀକାର କରିବା ସହ ପ୍ରଥମ ତିନି ବର୍ଣ୍ଣର ଲୋକମାନଙ୍କୁ ଦ୍ୱିଜ ଭାବରେ ଗ୍ରହଣ କରିଛନ୍ତି । ଏହା ବ୍ୟତୀତ କୌଣସି ପଞ୍ଚମ ବର୍ଣ୍ଣ ନାହିଁ ।[୬୨] ଅନ୍ୟ ଜାତିର ଲୋକମାନଙ୍କର ଉତ୍ପତ୍ତିକୁ ସେ ବର୍ଣ୍ଣଶଙ୍କର ବୋଲି ଚିତ୍ରଣ କରିଛନ୍ତି । ଆନ୍ତର୍ବର୍ଣ୍ଣ ବିବାହଦ୍ୱାରା ଏହିପରି ପୃଥକ ଜାତିମାନଙ୍କର ଉତ୍ପନ୍ନ ହୋଇଛି । ଏ କ୍ଷେତ୍ରରେ ସେ ଅନୁଲୋମ ଓ ପ୍ରତିଲୋମ ବିବାହ କଥା ଉଲ୍ଲେଖ କରିଛନ୍ତି । ଉଚ୍ଚବର୍ଣ୍ଣ ପୁରୁଷର ନୀଚବର୍ଣ୍ଣ କନ୍ୟା ସହ ବିବାହକୁ ଅନୁଲୋମ ବିବାହ କୁହାଯିବା ବେଳେ ନୀଚବର୍ଣ୍ଣର ପୁରୁଷ ଉଚ୍ଚବର୍ଣ୍ଣ କନ୍ୟାକୁ ବିବାହ କଲେ ତାକୁ ପ୍ରତିଲୋମ ବିବାହ କୁହାଯାଏ ।[୬୩] ଉଦାହରଣ ସ୍ୱରୂପ ବ୍ରାହ୍ମଣ ପୁରୁଷ ଓ ଶୂଦ୍ରନାରୀଙ୍କ ଅନୁଲୋମ ବିବାହରୁ ନିଶାଦ ଜାତିର ଉତ୍ପତ୍ତି ହୋଇଛି ।[୬୪] ସେହିପରି ଶୂଦ୍ର ପୁରୁଷ ଓ ବ୍ରାହ୍ମଣ ସ୍ତ୍ରୀ ମଧ୍ୟରେ ପ୍ରତିଲୋମ ବିବାହରୁ ଚଣ୍ଡାଳ ଜାତିର ସୃଷ୍ଟି ହୋଇଛି ।[୬୫]

ଅନୁଲୋମ ବିବାହ ଅପେକ୍ଷା ପ୍ରତିଲୋମ ବିବାହକୁ ମନୁ ଅଧିକ ଖରାପ ବୋଲି ମତ ଦେଇଛନ୍ତି । କାରଣ ସବୁ ନୀଚ ଜାତିମାନଙ୍କ ମଧ୍ୟରେ ମନୁ ଚଣ୍ଡାଳମାନଙ୍କୁ ନୀଚତମ ବୋଲି ବର୍ଣ୍ଣନା କରିଛନ୍ତି ।[୬୬]

ଚଣ୍ଡାଳମାନଙ୍କ ସମ୍ପର୍କରେ ମନୁ ଯାହା ଉଲ୍ଲେଖ କରିଛନ୍ତି ତାହା ଆଲୋଚନା କରାଯାଉ । ମନୁସ୍ମୃତି ଅନୁଯାୟୀ ଚଣ୍ଡାଳମାନେ କେବେହେଲେ ଗ୍ରାମ ଭିତରେ ବାସ କରିବାର ଅଧିକାର ପାଇବେ ନାହିଁ । ସେମାନେ କାର୍ଯ୍ୟ କରିବାବେଳେ ଗ୍ରାମ ବାହାରେ ରହିବେ । ଶ୍ମଶାନ, ପର୍ବତ ବା ବଣ ଭିତରେ ସେମାନେ ବାସ କରିବେ । କୌଣସି ଗୃହପାଳିତ ପଶୁ, ଗାଈ କିମ୍ବା ଘୋଡ଼ା ରଖିପାରିବେ ନାହିଁ । କୁକୁର ଓ ଗଧ ରଖିପାରନ୍ତି । ସେମାନେ କେବଳ ମୁର୍ଦାର ଲୁଗା ପରିଧାନ କରିବେ । ଭଙ୍ଗା ପାତ୍ରରେ ଭୋଜନ କରିବେ । ଅଳଙ୍କାର ଭାବରେ ସେମାନେ ଲୁହା ବ୍ୟବହାର କରିପାରନ୍ତି, କିନ୍ତୁ ସୁନା ସ୍ପର୍ଶ କରିପାରିବେ ନାହିଁ । ସେମାନେ ଯାଯାବର ଭାବରେ ବଞ୍ଚିବେ ଓ କୌଣସି ସ୍ଥାନରେ ଅଧିକ ଦିନ ରହିପାରିବେ ନାହିଁ ।[୬୭] ରାତ୍ରି ସମୟରେ ସେମାନେ ଗ୍ରାମ ବା ନଗର ପାଖରେ ଭ୍ରମଣ କରିପାରିବେ ନାହିଁ । ଦିନ ସମୟରେ ସେମାନେ ରାଜାଙ୍କର ଅନୁମତି ନେଇ ଗ୍ରାମ ବା ନଗର ମଧକୁ ଆସିପାରନ୍ତି । କିନ୍ତୁ ଯେତେବେଳେ ଆସନ୍ତୁ ନା

କାହିଁକି ସେମାନଙ୍କୁ ଅନ୍ୟମାନେ ସହଜରେ ଜାଣିପାରିବା ପାଇଁ ସେମାନେ ପୋଷାକ ଦେହରେ ସ୍ୱତନ୍ତ୍ର ଚିହ୍ନ ରଖିଥିବେ ଓ ଅଜଣା ମୁର୍ଦାର ଉଠାଇବେ ।[୬୮]

ଅନ୍ୟ ''ଧର୍ମପ୍ରାଣ'' ଲୋକମାନେ ଚଣ୍ଡାଳମାନଙ୍କ ସହିତ କିପରି ବ୍ୟବହାର କରିବେ ? ଅନ୍ୟମାନେ ଚଣ୍ଡାଳମାନଙ୍କ ସହିତ କୌଣସି ସାମାଜିକ ସମ୍ବନ୍ଧ (ବିବାହ, ସହଭୋଜନ) ରଖିବେ ନାହିଁ । ଅନ୍ୟମାନେ ସେମାନଙ୍କ ସହିତ ସମ୍ପର୍କ ତ ରଖିବେ ନାହିଁ ଏପରିକି ସେମାନଙ୍କୁ ଦେଖିବେ ବି ନାହିଁ ।[୬୯] ନିଜର ଚାକରମାନଙ୍କ (ବିଶେଷତଃ ଶୂଦ୍ର) ଦ୍ୱାରା ଖପରାରେ ସେମାନଙ୍କୁ କିଛି ଖାଦ୍ୟ ଦେଇପାରନ୍ତି ।[୭୦]

୮. ମନୁ ବର୍ଣ୍ଣ ବ୍ୟବସ୍ଥାକୁ ଧାର୍ମିକ ଦିବ୍ୟ ନିୟମ ଉପରେ ଆଧାରିତ କରିଛନ୍ତି । ବର୍ଣ୍ଣ ବ୍ୟବସ୍ଥା ଓ ମନୁ ସ୍ମୃତିକୁ ଦୈବୀବିଧାନ ଉପରେ ସେ ପର୍ଯ୍ୟବସିତ କରିବା ସହିତ ଏହି ବିଧାନକୁ ବିନା ପ୍ରଶ୍ନରେ ଗ୍ରହଣ କରିନେବାକୁ କହିଛନ୍ତି ।

ଏହା ହିଁ ହେଉଛି ବର୍ଣ୍ଣ ବ୍ୟବସ୍ଥା । ମୁଁ ଏଠାରେ ଏହା ଉଲ୍ଲେଖ କରିବା ପ୍ରାସଙ୍ଗିକ ମନେ କରୁଛି ଯେ ମୋର ଏହି ବର୍ଣ୍ଣନା ସାମାନ୍ୟ ବି ଅତିରଞ୍ଜିତ ନୁହେଁ । କୌଣସି ପାଠକ ନିଜର ସନ୍ତୋଷ ପାଇଁ ଉପରେ ଦିଆଯାଇଥିବା ବିବରଣୀ ସବୁକୁ ମନୁସ୍ମୃତି ମଧ୍ୟରୁ ଯାଞ୍ଚ କରିପାରନ୍ତି । ଏହି ବ୍ୟବସ୍ଥାଟିର ଅନ୍ୟାୟ ବିଷୟରେ ପାଠକ ବିଚାର କରନ୍ତୁ । ସାମ୍ପ୍ରତିକ ଯୁଗର ମୂଲ୍ୟବୋଧ ପାଖରେ ଏହି ବ୍ୟବସ୍ଥା କିପରି ଅନୈତିକ ତାହା କହିବା ନିଷ୍ପ୍ରୟୋଜନ । ମୁଁ କାହିଁକି ବର୍ଣ୍ଣବ୍ୟବସ୍ଥାକୁ ପ୍ରତ୍ୟାଖ୍ୟାନ କରୁଛି ତାହା କହିବା ଯଥାର୍ଥ ହେବ । ମୋ ମତରେ ଏହି ବ୍ୟବସ୍ଥା ଅହେତୁକ, ଅନୈତିକ ଓ ଅଗଣତାନ୍ତ୍ରିକ ଏବଂ ସ୍ୱାଧୀନତା, ସମାନତା, ଭ୍ରାତୃତ୍ୱ ପରି ଗଣତାନ୍ତ୍ରିକ ଓ ମାନବିକ ମୂଲ୍ୟବୋଧର ସମ୍ପୂର୍ଣ୍ଣ ପରିପନ୍ଥୀ ।

ବର୍ଣ୍ଣ ବ୍ୟବସ୍ଥା ବ୍ୟକ୍ତି ସ୍ୱାଧୀନତାର ପରିପନ୍ଥୀ, କାରଣ କୌଣସି ବ୍ୟକ୍ତି ନିଜର ବୃତ୍ତି ନିରୂପଣ କରିବା ବା ନିଜର ଇଚ୍ଛା ମୁତାବକ ଜଣେ ଜୀବନ-ସାଥୀ ସ୍ଥିର କରିବାର ଅଧିକାରକୁ ଏହା ବାରଣ କରେ । ପ୍ରତ୍ୟେକ ବ୍ୟକ୍ତି ନିଜ ବର୍ଣ୍ଣର ବୃତ୍ତି ଗ୍ରହଣ କରିବା ବା ନିଜ ବର୍ଣ୍ଣ ଭିତରେ ବିବାହ କରିବାକୁ ବାଧ୍ୟ । ଏତଦ୍‌ବ୍ୟତୀତ ଶୂଦ୍ର ଓ ନାରୀମାନଙ୍କୁ ଅଧ୍ୟୟନ କରିବାର ଅଧିକାରରୁ ଏହା ମଧ୍ୟ ବଞ୍ଚିତ କରିଛି । ଏପରିକି ଜଣେ ଦ୍ୱିଜ ଅନ୍ୟ କିଛି ଅଧ୍ୟୟନ କରିବା ପୂର୍ବରୁ ପ୍ରଥମେ ବେଦ ଅଧ୍ୟୟନ କରିବା ଆବଶ୍ୟକ । ନଚେତ ସେ ଶୂଦ୍ର ଭାବରେ ଗଣ୍ୟ ହେବ ।[୭୧] (ମନୁସ୍ମୃତି ଅନୁଯାୟୀ କେତେକ କାର୍ଯ୍ୟଦ୍ୱାରା ଜଣେ ବ୍ରାହ୍ମଣ ବା ଦ୍ୱିଜ ଶୂଦ୍ର ଭାବରେ ହୁଏତ ପରିଗଣିତ ହୋଇପାରେ, କିନ୍ତୁ କୌଣସି କ୍ଷେତ୍ରରେ ଜଣେ

ଶୂଦ୍ର ବ୍ରାହ୍ମଣ ହୋଇ ପାରିବ ନାହିଁ । ଜଣେ ଶୂଦ୍ର ସର୍ବଦା ଶୂଦ୍ର ହୋଇ ରହିବ ।[୭୨]

ଜଣେ ଚଣ୍ଡାଳର ଅବସ୍ଥା ସବୁଠାରୁ ଦୟନୀୟ । ନିଜ ମନ ମୁତାବକ ପୋଷାକଟିଏ ପିନ୍ଧିବା ବା ଗହଣା ପିନ୍ଧିବାର ଅଧିକାର ତାର ନାହିଁ । ଏପରିକି ସେ ଚାହୁଁଥିବା କୌଣସି ଗୃହପାଳିତ ପଶୁ ରଖିବାର ଅଧିକାରରୁ ମଧ ତାକୁ ବଞ୍ଚିତ କରାଯାଇଛି ।

ସେହିପରି ବର୍ଣ୍ଣବ୍ୟବସ୍ଥା ଓ ସମାନତା ମଧରେ ଦ୍ୱନ୍ଦ୍ୱ ଅତ୍ୟନ୍ତ ସ୍ପଷ୍ଟ । ମୁଁ ପୂର୍ବରୁ ସୂଚନା ଦେଇଛି ଯେ ବର୍ଗୀକୃତ ଅସମତା ହେଉଛି ବର୍ଣ୍ଣବ୍ୟବସ୍ଥାର ମୌଳିକ ଓ ଅନ୍ତର୍ନିହିତ ଆଦର୍ଶ । ସମାଜର ପ୍ରତ୍ୟେକ ବ୍ୟକ୍ତିକୁ ସମାନ ଅଧିକାର ଦେବା ଭାବନାର ଏହା ଘୋର ବିରୋଧୀ । ଏପରିକି ଆଇନ ଦୃଷ୍ଟିରେ ସମସ୍ତେ ଯେ ସମାନ ଏହା ମଧ ସ୍ୱୀକାର କରେନାହିଁ । ବିବାହ କରିବା ବା ବୃତ୍ତି ନିରୂପଣ କରିବା କ୍ଷେତ୍ରରେ ଏହା ବ୍ୟକ୍ତିକୁ ନିଜର ଅଧିକାରରୁ ବଞ୍ଚିତ କରିଛି । ଶିକ୍ଷାଦାନ ଓ ପୂଜା ଆରାଧନା କାର୍ଯ୍ୟକୁ କେବଳ ବ୍ରାହ୍ମଣମାନଙ୍କ ପାଇଁ ସଂରକ୍ଷିତ ରଖାଯାଇଛି । ଶେଷରେ ଶିକ୍ଷା ଓ ଜ୍ଞାନଲାଭ ପାଇଁ ବ୍ୟକ୍ତିର ଅଧିକାରକୁ ଏହା ସ୍ୱୀକାର କରି ନାହିଁ ।

ମନୁଙ୍କ ମତ ଅନୁଯାୟୀ ଜଣେ ବ୍ରାହ୍ମଣ ନିଜର ଜ୍ଞାନ ଅନ୍ୟକୁ ଶିକ୍ଷା ନ ଦେଇ ହୁଏତ ମୃତ୍ୟୁବରଣ କରିପାରେ କିନ୍ତୁ କେବେହେଲେ ସେ ଜଣେ ଶୂଦ୍ର ବା ମହିଳାଙ୍କୁ ଶିକ୍ଷା ଦେବେନାହିଁ ।[୭୩] ଅପରପକ୍ଷରେ ଯଦି କୌଣସି ବ୍ୟକ୍ତି ନିଜ ପ୍ରୟାସରେ ବେଦ ଅଧୟନ କରିବାକୁ ଚେଷ୍ଟା କରନ୍ତି ତେବେ ସେ ନର୍କଗାମୀ ହେବେ ।[୭୪] ଶିକ୍ଷା କ୍ଷେତ୍ରରେ ଦ୍ୱିଜ ପୁରୁଷମାନଙ୍କ ପାଇଁ ଶତକଡ଼ା ଶହେ ଭାଗ ସଂରକ୍ଷଣ କରାଯାଇଛି । (ଯେଉଁମାନେ ସଂରକ୍ଷଣ ବିରୋଧୀ ଦୟାକରି ସେମାନେ ଏହା ବିଚାର କରିବା ଆବଶ୍ୟକ ।)

ଶୂଦ୍ର ଓ ଅସ୍ପୃଶ୍ୟ ବ୍ୟକ୍ତିମାନଙ୍କ ପାଇଁ ବର୍ଣ୍ଣବ୍ୟବସ୍ଥା ଅତ୍ୟନ୍ତ ଅନ୍ୟାୟପୂର୍ଣ୍ଣ ଅଟେ । ସେମାନେ ସମ୍ମାନ, ଜ୍ଞାନ, କ୍ଷମତା ଓ ଧନ ସବୁଥିରୁ ବଞ୍ଚିତ । କୌଣସି ସମ୍ମାନଜନକ ଜୀବିକା ଗ୍ରହଣ କରିବାର ଅଧିକାରରୁ ସେମାନେ ବଞ୍ଚିତ, ସେହିପରି କୌଣସି ପୁରୁଷ ବା ନାରୀ ଉଚ୍ଚବର୍ଣ୍ଣର ବ୍ୟକ୍ତିଙ୍କୁ ବିବାହ କରିବାର ଅଧିକାର ମଧ ସେମାନଙ୍କର ନାହିଁ । ଶୂଦ୍ରମାନଙ୍କୁ ମୁଖ୍ୟତଃ ବ୍ରାହ୍ମଣମାନଙ୍କର ଓ ସାଧାରଣରେ ଦ୍ୱିଜମାନଙ୍କର ଭୃତ୍ୟ ବା ଗୋଲାମ କରି ରଖାଯିବା ବେଳେ ଅସ୍ପୃଶ୍ୟମାନଙ୍କୁ ସମାଜଚ୍ୟୁତ ଓ ପରିତ୍ୟକ୍ତ କରି ରଖାଯାଇଛି । ସେହିପରି ନାରୀମାନଙ୍କୁ କେବଳ ଉପଭୋଗ୍ୟର ସାମଗ୍ରୀ ବୋଲି ବିଚାର କରାଯାଇଛି ଓ କୌଣସି ସ୍ୱାଧୀନତା ସେମାନଙ୍କୁ ଦିଆଯାଇ ନାହିଁ ।

ଏପରି ଏକ ବୈଷମ୍ୟପୂର୍ଣ୍ଣ ଓ ଅନ୍ୟାୟ ସାମାଜିକ ବ୍ୟବସ୍ଥାରେ ଭ୍ରାତୃତ୍ୱ ଭାବନାର କୌଣସି ଅର୍ଥ ହିଁ ନାହିଁ । ବ୍ରାହ୍ମଣ ସହିତ ସମାନ ଆସନ ଗ୍ରହଣ କଲେ ଜଣେ ଶୂଦ୍ରର ଅଣ୍ଟାରେ ଗରମ ଲୁହାରେ ଚିହ୍ନ ଦେବା ବା ତା'ର ନିତମ୍ବକୁ କାଟି ଦେବାକୁ କୁହାଯାଇଛି । ଧର୍ମଧାରୀ ବ୍ୟକ୍ତିମାନେ ଜଣେ ଚଣ୍ଡାଳ ସହିତ କଥାହେବା ତ ଦୂରର କଥା ତା ପ୍ରତି ଦୃଷ୍ଟି ମଧ୍ୟ ନିକ୍ଷେପ କରିବେ ନାହିଁ । ଆନ୍ତର୍ଜାତି ବିବାହକୁ ସଂପୂର୍ଣ୍ଣ ନିଷେଧ କରାଯାଇଛି । ବର୍ଣ୍ଣମାନଙ୍କ ମଧ୍ୟରେ ଯେପରି କୌଣସି ପ୍ରକାର ମିଶ୍ରଣ ନ ହେବ ସେଥିପାଇଁ ମନୁ ଅତ୍ୟନ୍ତ ସତର୍କ ଦୃଷ୍ଟି ରଖି ତାର ବିଧାନ କରିଛନ୍ତି । ସୁତରାଂ ହିନ୍ଦୁ ସମାଜ ବ୍ୟବସ୍ଥାରେ ବର୍ଣ୍ଣମାନଙ୍କୁ ପରସ୍ପରଠାରୁ ପୃଥକ ଓ ସଂପୂର୍ଣ୍ଣ ଅଲଗା କରାଯାଇଛି ।

ମନୁସ୍ମୃତି କେବଳ ଯେ ଏକ ଅଗଣତାନ୍ତ୍ରିକ ଓ ଅନ୍ୟାୟପୂର୍ଣ୍ଣ ସାମାଜିକ ବ୍ୟବସ୍ଥାକୁ ସୃଷ୍ଟି କରିଛି ତା ନୁହେଁ ପରନ୍ତୁ ଚତୁର୍ବର୍ଣ୍ଣ ପରି ଏକ ମାନବକୃତ ସାମାଜିକ ଅନୁଷ୍ଠାନକୁ ସ୍ୱର୍ଗୀୟ ଓ ଧର୍ମୀୟ ସ୍ୱୀକୃତି ପ୍ରଦାନ କରିଛି । କେତେକ ହିନ୍ଦୁ ଓ ଏପରିକି କେତେକ ତଥାକଥିତ ବୁଦ୍ଧିଜୀବୀ ଓ ଲେଖକ କେଡ଼େ ଚମତ୍କାର ଭାବରେ ହିନ୍ଦୁଧର୍ମ ପୃଥିବୀର ସବୁଠାରୁ ସହନଶୀଳ ଓ ଉଦାରବାଦୀ ଧର୍ମ ବୋଲି ଉଦାର ଭାବରେ ବ୍ୟକ୍ତ କରିଥାନ୍ତି ।

ଏପରି କୌଣସି ଧର୍ମ ଅଛି କି ଯାହା ଦାସତ୍ୱ ଓ ଅସ୍ପୃଶ୍ୟତାକୁ ସ୍ୱୀକୃତି ଦେଇଛି ? ଏପରି କୌଣସି ଧର୍ମ ଅଛି କି ଯେଉଁଠି କେବଳ ଗୋଟିଏ ଜାତିରେ ଜନ୍ମ ହୋଇଥିବା ବ୍ୟକ୍ତିମାନଙ୍କୁ (ବ୍ରାହ୍ମଣମାନେ) ପୂଜକ ହେବାର ଅଧିକାର ଦିଆଯାଇଛି ?

ଅବଶ୍ୟ ଦାସତ୍ୱ ପ୍ରଥା କେବଳ ଭାରତରେ ନାହିଁ । କିନ୍ତୁ ଏହାକୁ ଅସ୍ପୃଶ୍ୟତାରେ ପରିଣତ କରି ଓ ତାହାକୁ ଧର୍ମୀୟ ସ୍ୱୀକୃତି ଦେଇ ଦିବ୍ୟ ବିଧାନ ବୋଲି ଗ୍ରହଣ କରିବା ହିନ୍ଦୁଧର୍ମର ବୈଶିଷ୍ଟ୍ୟ କହିବାକୁ ହେବ ।

ଅବଶ୍ୟ କେତେକ ହିନ୍ଦୁ ଉଦାରବାଦୀ ହୋଇପାରନ୍ତି ଓ କେତେକ କଟ୍ଟରପନ୍ଥୀ ମଧ୍ୟ ଅଛନ୍ତି । କିନ୍ତୁ ହିନ୍ଦୁଧର୍ମ ସାମାଜିକ ଓ ବୌଦ୍ଧିକ ମାନଦଣ୍ଡରୁ ଆଦୌ ଉଦାରପନ୍ଥୀ ନୁହେଁ । ଉଦାହରଣ ସ୍ୱରୂପ ମନୁସ୍ମୃତିରେ ସ୍ପଷ୍ଟକରି କୁହାଯାଇଛି ଯେ ଯଦି କୌଣସି ବ୍ୟକ୍ତି ଧର୍ମଶାସ୍ତ୍ର ସମ୍ପର୍କରେ ତର୍କଶୀଳ ଯୁକ୍ତିପ୍ରଦାନ କରିବେ ବା ସେ ସମ୍ପର୍କରେ ବିଶ୍ଳେଷଣାତ୍ମକ ଭାବରେ ଅନୁଧ୍ୟାନ କରିବାକୁ କହିବେ ତାହାଙ୍କୁ ସାମାଜିକ ବାସନ୍ଦ କରାଯିବ ।[୭୪] ସ୍ୱାଧୀନ ଚିନ୍ତକ, ହେତୁବାଦୀ ଓ ବୌଦ୍ଧମାନଙ୍କ ପରି ନାସ୍ତିକମାନଙ୍କୁ କେବେହେଲେ ସମ୍ମାନର ସହ ଅତିଥି କରାଯିବ ନାହିଁ, ହୁଏତ କେବଳ ଦୟାପୂର୍ବକ ସେମାନଙ୍କୁ କିଛି ଖାଦ୍ୟ ଦିଆଯାଇପାରେ ।[୭୫]

ମନୁଙ୍କ ଅନୁଯାୟୀ ନାସ୍ତିକମାନଙ୍କର ପରିବାରବର୍ଗ ଅଚିରେ ଧ୍ୱଂସ ପାଇବେ ।[77] ଅଧିକ ଶୂଦ୍ର ଓ ନାସ୍ତିକ ଥିବା କୌଣସି ରାଜ୍ୟ ଖୁବ୍ ଶୀଘ୍ର ଲୋପ ପାଇବ ।[78] ମନୁସ୍ମୃତିରେ ମୁକ୍ତିଚିନ୍ତକ ଓ ନାସ୍ତିକମାନଙ୍କୁ ନାନା ଅସମ୍ମାନଜନକ ଉପାଧିରେ ଭୂଷିତ କରାଯାଇଛି । ନାସ୍ତିକ-ଦର୍ଶନର ସମର୍ଥକମାନଙ୍କୁ ବେଳେବେଳେ ଶୂଦ୍ର, ଚଣ୍ଡାଳ, ଚୋର ଓ ପାଗଳ ବୋଲି ଆଖ୍ୟା ଦିଆଯାଇଛି ।[79] ଏହା ହିଁ ହେଉଛି ହିନ୍ଦୁଧର୍ମର ଉଦାରତା !

ବର୍ତ୍ତମାନ ବର୍ଣ୍ଣବ୍ୟବସ୍ଥାର ସମର୍ଥକମାନେ ଏହାର ସମର୍ଥନରେ କ'ଣ ସବୁ କହିଥାନ୍ତି ତାହା ବିଚାର କରାଯାଉ ।

ବର୍ଣ୍ଣ ବ୍ୟବସ୍ଥା ସପକ୍ଷରେ ଏକ ସାଧାରଣ ଯୁକ୍ତି ହେଉଛି ଏହା କର୍ମବିଭାଜନକୁ ହିଁ ବୁଝାଏ । ଯେକୌଣସି ଜଟିଳ ସମାଜ ବ୍ୟବସ୍ଥାରେ ଶ୍ରମ-ବିଭାଜନକୁ ଏକ ଅବଶ୍ୟମ୍ଭାବୀ ଆବଶ୍ୟକତା ଭାବରେ ସ୍ୱୀକୃତି ଦିଆଯାଇପାରେ । କିନ୍ତୁ ବର୍ଣ୍ଣବ୍ୟବସ୍ଥା ପ୍ରବୃତ୍ତି ଓ ଯୋଗ୍ୟତା ଉପରେ ଆଧାରିତ କର୍ମବିଭାଜନ ନୁହେଁ । ଜନ୍ମକୁ ଆଧାର କରି ଏଥିରେ ଜୀବିକାମାନଙ୍କର ବିଭାଜନ କରାଯାଇଛି । ଏହି ବ୍ୟବସ୍ଥା ସହିତ ଉଚ୍ଚ ନୀଚ ଭାବନା, ଆଇନ ଦୃଷ୍ଟିରେ ଅସମତା, ଅଧ୍ୟୟନ ପାଇଁ ଅନଧିକାର ଓ ଆନ୍ତର୍ଜାତି ବିବାହକୁ ଅସ୍ୱୀକୃତି ଇତ୍ୟାଦି ବିଚାର ସଂଶ୍ଳିଷ୍ଟ ହୋଇ ରହିଛି ।

ଶ୍ରମ ବିଭାଜନ ସହିତ ଏହିସବୁ ବିଚାରର କ'ଣ ସମ୍ପର୍କ ରହିବା ଦରକାର ?

ପ୍ରତ୍ୟେକ ସମାଜରେ ଶ୍ରମ-ବିଭାଜନ ଦେଖିବାକୁ ମିଳେ, କିନ୍ତୁ ବର୍ଣ୍ଣବ୍ୟବସ୍ଥା ନ ଥାଏ । ସୁତରାଂ ବର୍ଣ୍ଣବ୍ୟବସ୍ଥାକୁ ଶ୍ରମ-ବିଭାଜନ ବୋଲି କହିବା ଏକ ନିରର୍ଥକ ପ୍ରୟାସ ଅଟେ ।

ବର୍ଣ୍ଣ ବ୍ୟବସ୍ଥାର ସୁରକ୍ଷା ନେଇ ସାଧାରଣତଃ ଯୁକ୍ତି କରାଯାଏ ଯେ ପ୍ରଥମରେ ଏହା ପ୍ରବୃତ୍ତି ଓ ଯୋଗ୍ୟତା ଉପରେ ଆଧାରିତ ଥିଲା । ଏହା ବାସ୍ତବରେ ଏପରି ଥିଲା କି ନାହିଁ ଐତିହାସିକ ଦୃଷ୍ଟିକୋଣରୁ ତାହାର ଗବେଷଣା ଆବଶ୍ୟକ । ସମ୍ଭବତଃ ଜାତିମାନଙ୍କର ଉତ୍ପତ୍ତି ସଂକ୍ରାନ୍ତରେ ଥିବା ଜନଶାଖା ସିଦ୍ଧାନ୍ତ ସତ୍ୟ ଅଟେ । ତଥାପି ଯଦି ବି ଯୁକ୍ତି ଦୃଷ୍ଟିରୁ ଆରମ୍ଭରେ ବର୍ଣ୍ଣ ବ୍ୟବସ୍ଥା ପ୍ରବୃତ୍ତି ଓ ସାମର୍ଥ୍ୟ ଉପରେ ପର୍ଯ୍ୟବସିତ ଥିଲା ବୋଲି ସ୍ୱୀକାର କରାଯାଏ, ତେବେ ପ୍ରଶ୍ନ ହେଉଛି ଏହାଦ୍ୱାରା କ'ଣ ଉପକାର ସାଧିତ ହୁଏ ? ଅତୀତରେ ଏହି ବ୍ୟବସ୍ଥା ମୂଳତଃ ପ୍ରବୃତ୍ତି ଓ ଯୋଗ୍ୟତା ଉପରେ ଆଧାରିତ ଥିଲା ବୋଲି ସମ୍ପ୍ରତି ଏହା ଜନ୍ମଭିତ୍ତିକ ହୋଇ ଯାଇଥିଲେ ସୁଦ୍ଧା ଏହାର ସମସ୍ତ କୁପରିଣାମ ସତ୍ତ୍ୱେ ଏହାକୁ

ଏହାର ଅତୀତର ମୂଲ୍ୟ ଯୋଗୁଁ ଗ୍ରହଣ କରାଯିବା ଦରକାର ବୋଲି ଯୁକ୍ତି କରାଯାଏ । କିନ୍ତୁ ଏହି ଯୁକ୍ତି ଯେ ସମ୍ପୂର୍ଣ୍ଣ ନିରର୍ଥକ ଏହା ନିଃସନ୍ଦେହରେ କୁହାଯାଇପାରେ ।

ମନୁସ୍ମୃତିର ରଚନାକାଳକୁ ଖ୍ରୀଷ୍ଟପୂର୍ବ ୨୦୦ ବର୍ଷରୁ ଖ୍ରୀଷ୍ଟାବ୍ଦ ୨୦୦ ଭିତରେ ଅନୁମାନ କରାଯାଇଛି ।[୮୦] ସେହି ସମୟରେ ଜନ୍ମ-ଭିତ୍ତିରେ ଜାତି ବ୍ୟବସ୍ଥାର ପ୍ରଚଳନ ଦେଖିବାକୁ ମିଳେ । ଗୌତମ ବୁଦ୍ଧ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ବେଦର ସାର୍ବଭୌମତ୍ୱ ଓ ବର୍ଣ୍ଣବ୍ୟବସ୍ଥାର ବୈଧତାକୁ ଆହ୍ୱାନ ଦେଇଥିଲେ । ବ୍ରାହ୍ମଣମାନେ ବ୍ରହ୍ମାଙ୍କ ମୁଖରୁ ସୃଷ୍ଟି ହୋଇଥିବାରୁ ଅନ୍ୟ ଜନସମୂହଠାରୁ  ଉତ୍କୃଷ୍ଟ, ତେଣୁ ସେମାନେ ହିଁ କେବଳ ବଂଶାନୁକ୍ରମେ ଅନ୍ୟମାନଙ୍କୁ ଶିକ୍ଷାଦେବା, ପରାମର୍ଶଦେବା ଓ ସମାଜରେ ଆଧ୍ୟାତ୍ମିକ ମାର୍ଗ ପ୍ରଦର୍ଶକ ହେବା ଅଧିକାର ଏବଂ ଦାବିକୁ ତ୍ରିପିଟକରେ ଥିବା ଦିଘା ନିକାୟ ଓ ମାଝିମା ନିକାୟର ଅନେକ ପଙ୍‌କ୍ତିରେ ଦୃଢ଼ ସମାଲୋଚନା କରାଯାଇଛି ।[୮୧] ବୁଦ୍ଧ ବହୁବାଦ ବର୍ଣ୍ଣବ୍ୟବସ୍ଥାକୁ ପ୍ରତ୍ୟାଖ୍ୟାନ କରିବା ନେଇ ମାଝିମା ନିକାୟରେ ଉଲ୍ଲେଖ ରହିଛି । ବୁଦ୍ଧଙ୍କ ମତ ଅନୁଯାୟୀ ଜଣେ ବ୍ୟକ୍ତିର ଗୋଟିଏ ନିର୍ଦ୍ଦିଷ୍ଟ ଜାତିରେ ଜନ୍ମ ହେତୁ ସମାଜରେ ତାର ସ୍ଥାନ ଓ କାର୍ଯ୍ୟକୁ ଜାତି ଅନୁଯାୟୀ ନିର୍ଦ୍ଦିଷ୍ଟ କରିଦେବା ସମ୍ପୂର୍ଣ୍ଣ ଅଯୌକ୍ତିକ । ବୁଦ୍ଧଙ୍କ ମତକୁ ଉଦ୍ଧାର କରି ସେଠାରେ କୁହାଯାଇଛି ଯେ ଆଇନ ଦୃଷ୍ଟିରେ ସମାଜର ସକଳ ବ୍ୟକ୍ତିଙ୍କୁ ସମାନ ବୋଲି ଗ୍ରହଣ କରାଯିବା ଆବଶ୍ୟକ, ଏ କ୍ଷେତ୍ରରେ ବ୍ୟକ୍ତି ଯେଉଁ ଜାତି ବା ବର୍ଣ୍ଣରେ ଜନ୍ମ ହୋଇଛି ତାହା ବିଚାରକୁ ନେବାର କୌଣସି ଆବଶ୍ୟକତା ହିଁ ନାହିଁ ।[୮୨] ସୁତରାଂ ବର୍ଣ୍ଣବ୍ୟବସ୍ଥା ଯଦି ବି କେବେ ଏହାର ଆଦର୍ଶ ସ୍ୱରୂପରେ ସମାଜରେ ପ୍ରଚଳିତ ଥିଲା (ଏହାକୁ ସନ୍ଦେହ କରିବାର ଯଥେଷ୍ଟ କାରଣ ବା ଅବକାଶ ରହିଛି) ତଥାପି ବୁଦ୍ଧଙ୍କ ସମୟକୁ, ଅର୍ଥାତ ପ୍ରାୟ ୨୫୦୦ ବର୍ଷ ତଳେ, ଏହା ବିକୃତ ହୋଇ ସମାଜରେ ରହିଥିଲା ।

ବର୍ଣ୍ଣ ବ୍ୟବସ୍ଥାକୁ ଅନ୍ୟ ଏକ କାରଣରୁ ମଧ୍ୟ ସମର୍ଥନ କରାଯାଏ । ଏହା କୁହାଯାଏ ଯେ ମଣିଷମାନେ ଅସମତା ନେଇ ଜନ୍ମ ହୋଇଥାନ୍ତି । ସୁତରାଂ ପ୍ରତ୍ୟେକ ନିଜ ବାପାଙ୍କର ବୃତ୍ତିଗତ ପେଷାକୁ ଗ୍ରହଣ କରିବା ଯଥାର୍ଥ ଓ ସ୍ୱାଭାବିକ ମନେହୁଏ । ଦୁଃଖ ଓ ପରିତାପର ବିଷୟ ଗାନ୍ଧୀଙ୍କ ସ୍ତରର ବ୍ୟକ୍ତି ମଧ୍ୟ ବର୍ଣ୍ଣବ୍ୟବସ୍ଥାକୁ ସମର୍ଥନ କରିବାକୁ ଯାଇ ଏହି ପ୍ରକାରର ଯୁକ୍ତିର ଆଶ୍ରୟ ନେଇଛନ୍ତି ।

ମୁଁ ଗାନ୍ଧୀଙ୍କ ମତକୁ ତାଙ୍କ ଲେଖାରୁ ଏଠାରେ ଉଦ୍ଧାର କରୁଛି, ‘‘ପ୍ରତ୍ୟେକ

ବ୍ୟକ୍ତି ନିର୍ଦ୍ଦିଷ୍ଟ ପ୍ରବୃତ୍ତି ନେଇ ଜନ୍ମ ହୋଇଛି ବୋଲି ମୁଁ ବିଶ୍ୱାସ କରୁଛି । ପ୍ରତ୍ୟେକ ବ୍ୟକ୍ତିର କେତେକ ସ୍ୱଭାବ ରହିଛି ଯାହାକୁ ସେ ଅତିକ୍ରମ କରିପାରିବ ନାହିଁ । ବ୍ୟକ୍ତି ସ୍ୱଭାବରେ ଏହି ବୈଶିଷ୍ଟ୍ୟକୁ ଗଭୀର ଭାବରେ ଲକ୍ଷ୍ୟକରି ବର୍ଣ୍ଣବ୍ୟବସ୍ଥାକୁ ରୂପରେଖ ଦିଆଯାଇଛି । ବିଭିନ୍ନ ବ୍ୟକ୍ତିମାନଙ୍କର ପ୍ରବୃତ୍ତିକୁ ଲକ୍ଷ୍ୟକରି ସେମାନଙ୍କୁ ଭିନ୍ନ ଭିନ୍ନ ବୃତ୍ତି ଭିତରେ ଆବଦ୍ଧ କରି ରଖିବା ପାଇଁ ବର୍ଣ୍ଣବ୍ୟବସ୍ଥାରେ ପ୍ରୟାସ କରାଯାଇଛି । ଏହାଦ୍ୱାରା ଅଯଥା ପ୍ରତିଯୋଗିତାକୁ ପ୍ରତିରୋଧ କରିବା ସମ୍ଭବ ହୋଇଛି । ବ୍ୟକ୍ତି ସ୍ୱଭାବର ସ୍ୱାତନ୍ତ୍ର୍ୟକୁ ଲକ୍ଷ୍ୟକରି ମଧ୍ୟ ବର୍ଣ୍ଣବ୍ୟବସ୍ଥାରେ କୌଣସି ଉଚ୍ଚନୀଚ ଭେଦଭାବକୁ ସ୍ୱୀକାର କରାଯାଇନାହିଁ । ଏହି ବ୍ୟବସ୍ଥା ପ୍ରତ୍ୟେକକୁ ନିଜ ଶ୍ରମର ଫଳ ଭୋଗକରିବାର ସୁଯୋଗ ଦେଇଛି ଓ ଏହା କୌଣସି ବ୍ୟକ୍ତିକୁ ଅନ୍ୟ ଉପରେ ନିର୍ଭରଶୀଳ ହେବାକୁ ଦେଇନାହିଁ । ଏହି ମହାନ ନିୟମ କାଳକ୍ରମେ କଳୁଷିତ ହୋଇ ଏକ ଅସମ୍ମାନଜନକ ସ୍ଥିତି ସ୍ତରକୁ ଆସିଛି । ମୋର ପୂର୍ଣ୍ଣ ବିଶ୍ୱାସ ଯେତେବେଳେ ଏହି ବ୍ୟବସ୍ଥାର ପ୍ରକୃତ ସ୍ୱରୂପକୁ ବୁଝି ତା'ର ଯଥାର୍ଥ ଉପଯୋଗ କରାଯାଇ ପାରିବ ସେତେବେଳେ ଏକ ଆଦର୍ଶ ସମାଜ ଉଦ୍ଭବ ହେବ ।''[୮୩]

ପୁନଶ୍ଚ ମହାତ୍ମା କହିଛନ୍ତି, ''ଜନ୍ମଗତ ଭିତ୍ତିକୁ ଆଧାର କରି ରହୁଥିବା ବର୍ଣ୍ଣବ୍ୟବସ୍ଥା ଶ୍ରମ-ବିଭାଜନ କ୍ଷେତ୍ରରେ ଏକ ସୁସ୍ଥ ବିଭାଜନ ଅଟେ । ବର୍ତ୍ତମାନ ଅବସ୍ଥାରେ ରହିଥିବା ଜାତିପ୍ରଥା ମୂଳ ବର୍ଣ୍ଣବ୍ୟବସ୍ଥାର ଏକ କଳୁଷିତ ଅଭିବ୍ୟକ୍ତି । ଉଚ୍ଚ ଓ ନୀଚ ଭେଦଭାବର ପ୍ରଶ୍ନ ଏଥିରେ ସଂଶ୍ଲିଷ୍ଟ ନାହିଁ । ଏହା କର୍ତ୍ତବ୍ୟ ମାନଦଣ୍ଡ ଉପରେ ଆଧାରିତ । ମୁଁ ପୂର୍ବରୁ ସୂଚନା ଦେଇଛି ଯେ ବର୍ଣ୍ଣ ଜନ୍ମର ଆଧାର ଉପରେ ହିଁ ନିର୍ଭରଶୀଳ । ଉଦାହରଣ ସ୍ୱରୂପ ଜଣେ ଶୂଦ୍ର ନିଜ ଉଦ୍ୟମରେ ବୈଶ୍ୟ ହୋଇପାରିବ । ବୈଶ୍ୟର କର୍ମ ସମ୍ପାଦନ କରିବା ପାଇଁ ଜଣେ ବୈଶ୍ୟର ଚିହ୍ନ ନେବାର ଆବଶ୍ୟକତା ନାହିଁ । ଯିଏ ବ୍ରାହ୍ମଣର କର୍ମ ସମ୍ପାଦନ କରୁଛି ସେ ଆଗାମୀ ଜନ୍ମରେ ବ୍ରାହ୍ମଣ ହୋଇ ଜନ୍ମ ହୋଇ ପାରିବ'' ।[୮୪]

ସୁତରାଂ ଗାନ୍ଧୀଙ୍କ ମତାନୁସାରେ ଜନ୍ମ ଉପରେ ଆଧାରିତ ବର୍ଣ୍ଣବ୍ୟବସ୍ଥା ଶ୍ରମବିଭାଜନ କ୍ଷେତ୍ରରେ ଏକ ସୁସ୍ଥ ବିଧାନ କାରଣ ଏଠାରେ ବ୍ୟକ୍ତି ଭିତରେ ଥିବା ପ୍ରକୃତ ପ୍ରବୃତ୍ତିକୁ ଗୁରୁତ୍ୱ ଦିଆଯିବା ସହ ବୃଥା ପ୍ରତିଯୋଗିତାକୁ ଦୂର କରାଯାଇଛି ।

ବର୍ଣ୍ଣବ୍ୟବସ୍ଥାକୁ ଏଠାରେ ଯେଉଁ ସମର୍ଥନ ଦିଆଯାଇଛି ତାହା ଆପାତତଃ ବୋଧଗମ୍ୟ ମନେହେଲେ ବି ବାସ୍ତବରେ ଅତ୍ୟନ୍ତ ଅବୈଜ୍ଞାନିକ ଅଟେ । ଏହା ଏକ ବିଜ୍ଞାନ-ସମର୍ଥିତ ତଥ୍ୟ ଯେ ବ୍ୟକ୍ତି ଯେଉଁ ଗୁଣଗୁଡ଼ିକ ଅର୍ଜନ କରେ ତାହା ସେ ପିତାମାତାଙ୍କଠାରୁ ଜୈବ ଲକ୍ଷଣ ଭାବରେ ଆଣି ନ ଥାଏ, କେବଳ ଆନୁବଂଶିକ ଲକ୍ଷଣ ବା ଜିନ୍ କ୍ଷେତ୍ରରେ କେତେକ ଗୁଣ ଆଣିଥାଏ । ଉଦାହରଣ ସ୍ୱରୂପ

କାଠକାମ ଜଣଙ୍କୁ ଶିଖିବାକୁ ହୋଇଥାଏ, ଯେପରି ଦର୍ଶନଶାସ୍ତ୍ର ପଢ଼ି ଏହା ବିଷୟରେ ଜଣେ ଜାଣିବାକୁ ପାଇଥାଏ । କାଠକାମ ଜାଣିଥିବା ଜଣେ ବଢ଼େଇର ସନ୍ତାନ ଏହି ବିଦ୍ୟା ଜାଣି ଜନ୍ମ ହୋଇ ନ ଥାଏ କିମ୍ବା ଜଣେ ଦାର୍ଶନିକଙ୍କର କନ୍ୟା ବା ପୁତ୍ର ଦାର୍ଶନିକ ଦୃଷ୍ଟି ନେଇ ଜନ୍ମ ହୋଇ ନ ଥାନ୍ତି । ଏହି ସବୁ କଳା ବା ବିଦ୍ୟାକୁ ଜୀବନରେ ଶିକ୍ଷା କରିବାକୁ ହୋଇଥାଏ, ସେଗୁଡ଼ିକ ପିତାମାତାଙ୍କ ପାଖରୁ ଜଣେ ଜୈବିକ ଗୁଣ ଭାବରେ ପାଇ ନ ଥାଏ । ବେଳେବେଳେ, ଅବଶ୍ୟ ସବୁ ସମୟରେ ନୁହେଁ, ଆନୁଷ୍ଠାନିକ ସ୍ତରରେ ଶିକ୍ଷା ନ କରି ମଧ୍ୟ ଯଦି ଜଣେ ବଢ଼େଇର ସନ୍ତାନ ଜଣେ ଭଲ କାଠ କାରିଗର ହୁଏ କିମ୍ବା ଜଣେ ଦାର୍ଶନିକଙ୍କର କନ୍ୟା ଦର୍ଶନ ଶାସ୍ତ୍ରରେ ପାଣ୍ଡିତ୍ୟ ଲାଭକରେ ଏହାର ଅର୍ଥ ନୁହେଁ ଯେ ସେମାନେ ସେହି କୌଶଳ ବା ଜ୍ଞାନ ନେଇ ଜନ୍ମ ହୋଇଥାନ୍ତି ବରଂ ପାରିବାରିକ ସ୍ତରରେ ସେମାନେ ଏ କ୍ଷେତ୍ରରେ ଯେଉଁ ଅନୁକୂଳ ବାତାବରଣ ପାଇଥାନ୍ତି ତାହାଦ୍ୱାରା ସେମାନେ ଏହି ଗୁଣର ଅଧିକାରୀ ହୁଅନ୍ତି । ଯଦି ସେମାନଙ୍କର ସାମାଜିକ ପରିବେଶକୁ ବଦଳାଇ ଦିଆଯିବ ତେବେ ପରିଣାମ ସମ୍ପୂର୍ଣ୍ଣ ଭିନ୍ନ ହୋଇଯିବ ।

ହୁଏତ କେହି କହିପାରନ୍ତି ଯେ କାଠକାମ ନେଇ ଦକ୍ଷତା ବା ଦର୍ଶନଶାସ୍ତ୍ରରେ ଜ୍ଞାନ ଜଣେ ଉତ୍ତରାଧିକାରୀ ଭାବେ ଆଣି ଜନ୍ମ ହୋଇ ନ ଥାଇପାରନ୍ତି କିନ୍ତୁ ଏହି ଦକ୍ଷତା ବା ଜ୍ଞାନ ଲାଭ କରିବା ପାଇଁ ମାନସିକ ସାମର୍ଥ୍ୟ ଆଣିଥାନ୍ତି, ଏହା ମଧ୍ୟ ସତ୍ୟ ନୁହେଁ । ବ୍ୟକ୍ତି କେତେକ ଶାରୀରିକ ଓ ମାନସିକ ଲକ୍ଷଣ ଆନୁବଂଶିକ ଗୁଣ ଭାବରେ ଆଣିଥାଏ । କିନ୍ତୁ ଏଥିରୁ ଏହା ବୁଝିବା ଠିକ୍ ନୁହେଁ ଯେ ପିତାମାତା ଓ ସନ୍ତାନ ସନ୍ତତିଙ୍କ ସ୍ୱଭାବ ସର୍ବଦା ସମାନ ଥାଏ । ଏହା ଏକ ପ୍ରତିଷ୍ଠିତ ଘଟଣା ଯେ କ୍ରୋମଜମ୍ ଓ ଜିନ୍ ସବୁର ବିଭିନ୍ନ କ୍ରମଚୟ ଓ ମିଶ୍ରଣ ଅନୁଯାୟୀ ଏକ ଦମ୍ପତିଙ୍କର ସନ୍ତାନଗଣ ସମାନ ଗୁଣ ବିଶିଷ୍ଟ ନୁହନ୍ତି ବା ସନ୍ତାନ ସନ୍ତତିଙ୍କର ସ୍ୱଭାବ ସେମାନଙ୍କର ପିତାମାତାଙ୍କ ସହିତ ସମ୍ପୂର୍ଣ୍ଣ ଏକା ନୁହଁ । ବରଂ ବହୁ ସମୟରେ ସେମାନଙ୍କର ମଧ୍ୟରେ ପାର୍ଥକ୍ୟ ଅତି ସ୍ପଷ୍ଟ । କୌଣସି ଦମ୍ପତିଙ୍କର ପୁତ୍ର-କନ୍ୟା ଭିତରେ ଜଣେ ହୁଏତ ଡେଙ୍ଗା ହେବାବେଳେ ଅନ୍ୟ ଜଣେ ଗେଡ଼ା ହୋଇପାରେ । ଏପରିକି ଏପରି ମଧ୍ୟ ଦେଖାଯାଏ ଯେ ପିତା ମାତା କଳାବର୍ଣ୍ଣର ହୋଇ ମଧ୍ୟ ସେମାନଙ୍କର ପୁଅ ବା ଝିଅ ଗୌରବର୍ଣ୍ଣର ହୋଇଥାନ୍ତି ବା ବିପରୀତ ଭାବରେ ମଧ୍ୟ ଏହା ହୋଇଥାଇ ପାରେ । ସେହିଭଳି ସେମାନଙ୍କର କେଶ ବା ଚକ୍ଷୁର ରଙ୍ଗ ଭିତରେ ମଧ୍ୟ ସମ୍ପୂର୍ଣ୍ଣ ପାର୍ଥକ୍ୟ ରହିପାରେ । ଶାରୀରିକ ଲକ୍ଷଣ କ୍ଷେତ୍ରରେ ଯାହା ସତ୍ୟ ଅଟେ, ମାନସିକ ସାମର୍ଥ୍ୟ କ୍ଷେତ୍ରରେ ମଧ୍ୟ ତାହା ଅନୁରୂପ ଅଟେ । ସୁତରାଂ ଜଣେ ବ୍ୟକ୍ତିଙ୍କ ପାଖରେ ଯେଉଁ ଗୁଣ ଥାଏ, ତାହା ତାଙ୍କର ପୁତ୍ର

ବା କନ୍ୟା ପାଖରେ ଥାଇପାରେ ଏବଂ ନ ଥାଇ ବି ପାରେ । ଏହା ରହିବା ନିଶ୍ଚିତ ନୁହେଁ । ସୁତରାଂ ଜଣେ ବ୍ୟକ୍ତିଙ୍କୁ ତାଙ୍କ ପୂର୍ବ ପୁରୁଷଙ୍କ ଜୀବିକା ଭିତରେ ରହିବାକୁ ବାଧ କରିବା ସମ୍ପୂର୍ଣ୍ଣ ଅବୈଜ୍ଞାନିକ ଅଟେ ।

ଏହା ସତ୍ୟ ଯେ ସବୁ ମଣିଷ ସେମାନଙ୍କର ଶାରୀରିକ ଓ ମାନସିକ ସାମର୍ଥ୍ୟ କ୍ଷେତ୍ରରେ ସମାନ ନୁହନ୍ତି । ସେଥିପାଇଁ ସମସ୍ତଙ୍କୁ ସମାନ ସୁବିଧା, ସୁଯୋଗ ଦେବା, କୌଣସି ବ୍ୟକ୍ତି ନିଜର ରୁଚି ଅନୁଯାୟୀ ଜୀବିକା ଗ୍ରହଣ କରିବା, ଆଇନ ଦୃଷ୍ଟିରେ ସମସ୍ତଙ୍କୁ ସମାନ ବୋଲି ବିବେଚନା କରିବା ବା ସମାଜରେ ବ୍ୟକ୍ତିକୁ ମାନବିକ ମର୍ଯ୍ୟାଦା ପ୍ରଦାନ କରିବା କ୍ଷେତ୍ରରେ କଟକଣା ଲଗାଇବା ଠିକ୍ ହେବ କି ? ଅର୍ଥାତ୍ ବ୍ୟକ୍ତି ସ୍ୱଭାବରେ ପାର୍ଥକ୍ୟ ଯୋଗୁଁ ବ୍ୟକ୍ତିମାନଙ୍କୁ ସମାଜରେ ବୈଷମ୍ୟପୂର୍ଣ୍ଣ ବ୍ୟବହାର କରାଯିବା ଦରକାର, ଏକ ଭ୍ରମାତ୍ମକ ସିଦ୍ଧାନ୍ତ ଅଟେ ।

ଅଯଥା ପ୍ରତିଯୋଗିତା ସମ୍ପର୍କରେ ଯାହା କୁହାଯାଇଛି ତାହା ମଧ ଯଥାର୍ଥ ମନେହୁଏ ନାହିଁ । ସମାଜରେ ସମସ୍ତ ବ୍ୟକ୍ତିଙ୍କୁ ସମାନ ସୁବିଧା ସୁଯୋଗ ଦିଆନଗଲେ ସେମାନଙ୍କ ଭିତରେ ପ୍ରତିଯୋଗିତାକୁ ଆମେ କିପରି ଅନାବଶ୍ୟକ ବା ନିରର୍ଥକ କହିପାରିବା ? ଏ କ୍ଷେତ୍ରରେ ଗାନ୍ଧୀଙ୍କର ଉଦାହରଣ ନିଆଯାଉ । ଜାତିଗତ ମାନଦଣ୍ଡରେ ସେ ଥିଲେ ବଣିଆ । ଅନ୍ତତଃ ଔପଚାରିକ ଓ ତ୍ରୁଟିପୂର୍ଣ୍ଣଭାବେ ଗାନ୍ଧୀ ଜନ୍ମଗତ ବର୍ଣ୍ଣବ୍ୟବସ୍ଥାକୁ ସମର୍ଥନ କରିବା ସହ ଧର୍ମ ସହିତ ରାଜନୀତିକୁ ମିଶ୍ରଣ କରିଥିଲେ ସୁଦ୍ଧା ଜଣେ ଜାତୀୟ ନେତା ଭାବରେ ସେ ମହାନ୍ କାର୍ଯ୍ୟ କରିଛନ୍ତି । ଅଯଥା ପ୍ରତିଯୋଗିତାକୁ ବାଦ ଦେବାକୁ ଯାଇ ଗାନ୍ଧୀ ରାଜନୀତି ସ୍ତରକୁ ନ ଆସି ଯଦି ନିଜର ଜାତିଗତ ବୃତ୍ତି ଭିତରେ ରହି ଜଣେ ଦୋକାନୀ ହୋଇଥାନ୍ତେ ତେବେ ତା' ଦ୍ୱାରା ଦେଶର ପ୍ରଭୂତ କ୍ଷତି ହୋଇଥାନ୍ତା । ସେହିପରି ଡକ୍ଟର ବି. ଆର. ଆମ୍ବେଦକର ଗୋଟିଏ ଅସ୍ପୃଶ୍ୟ ଜାତିରେ ଜନ୍ମଗ୍ରହଣ କରିଥିଲେ ମଧ ସ୍ୱାଧୀନ ଭାରତର ଗଣତାନ୍ତ୍ରିକ ସମ୍ବିଧାନ ପ୍ରସ୍ତୁତ କରିବାରେ ଏକ ମୁଖ୍ୟ ଭୂମିକା ନିର୍ବାହ କରିଛନ୍ତି । ସେ ମଧ ଏକ ମହାବିଦ୍ୟାଳୟରେ କିଛିଦିନ ଅଧ୍ୟାପକ ଭାବରେ କାର୍ଯ୍ୟ କରିଛନ୍ତି । ବର୍ଣ୍ଣବ୍ୟବସ୍ଥାର ପରିଭାଷାରେ କହିଲେ ଆମ୍ବେଦକର ଜଣେ ବ୍ରାହ୍ମଣର କାର୍ଯ୍ୟକୁ ଦକ୍ଷତାର ସହ କରି ପାରିଛନ୍ତି ।

ଆମର ସଂକୀର୍ଣ୍ଣ ବର୍ଣ୍ଣବ୍ୟବସ୍ଥା ଯୋଗୁଁ ଆମେ କେତେ ଆମ୍ବେଦକରଙ୍କୁ ଯେ ହରାଇଛେ ତାହା ଆମେ ଅନୁମାନ କରିପାରିବା କି ?

ଆମେ ପୂର୍ବରୁ ଆଲୋଚନା କରିଛେ ଯେ, ବର୍ଣ୍ଣବ୍ୟବସ୍ଥା ଏକ ରୁଦ୍ଧ ସାମାଜିକ ବ୍ୟବସ୍ଥା ଯାହା ବ୍ୟକ୍ତିମାନଙ୍କୁ ଉଚ୍ଚନୀଚ ସ୍ତରରେ ପୃଥକ୍ କରିବା ସହ,

ନିମ୍ନ ସ୍ତରରେ ରହିଥିବା ବ୍ୟକ୍ତିମାନଙ୍କର ଉଚ୍ଚ ସାମାଜିକ ସ୍ତରକୁ ଉନ୍ନିତ ହେବାର ସମ୍ଭାବନାକୁ ବନ୍ଦ କରିଦେଇଛି । ଏମ୍. ହାରାଲାମ୍ବୋସ୍ ତାଙ୍କର ପ୍ରସିଦ୍ଧ ସମାଜବିଜ୍ଞାନ ପୁସ୍ତକରେ ଉଲ୍ଲେଖ କରିଛନ୍ତି, "ଜଣେ ବ୍ୟକ୍ତି ତାର ବାପା, ମା'ଙ୍କ ଜାତି ଅନୁଯାୟୀ ପରିଚିତ ଓ ତା ଜାତିର ଜୀବିକାକୁ ଗ୍ରହଣ କରିବାକୁ ବାଧ୍ୟ । ଜଣେ ଅସ୍ପୃଶ୍ୟ ବ୍ୟକ୍ତିର ଯେତେ ଯୋଗ୍ୟତା ବା ସାମର୍ଥ୍ୟ ରହିଥିଲେ ମଧ୍ୟ ସେ କେବେ ବି ବ୍ରାହ୍ମଣର ସ୍ତରକୁ ଆସିପାରିବ ନାହିଁ । ବ୍ରାହ୍ମଣ ଜାତିର ଲୋକମାନେ ସର୍ବଦା ଉନ୍ନତ ଜିନ୍‌ର ଅଧିକାରୀ ହୋଇଛନ୍ତି ବୋଲି ବିଶ୍ୱାସରୁ ସେମାନେ ଅନ୍ୟ ସହିତ ସମ୍ବନ୍ଧ କ୍ଷେତ୍ରରେ ପୃଥକ୍ ହୋଇଛନ୍ତି । କିନ୍ତୁ ପ୍ରକୃତରେ ବ୍ରାହ୍ମଣ ଜାତିର ଲୋକମାନେ ଅନ୍ୟମାନଙ୍କ ଅପେକ୍ଷା ଯେ ଉନ୍ନତ ଜିନ୍‌ର ଅଧିକାରୀ ଏହା ପଶ୍ଚାତରେ କୌଣସି ଭିତ୍ତି ନାହିଁ । ହିନ୍ଦୁ ସମାଜରେ ଜାତିମାନଙ୍କ ମଧ୍ୟରେ ଯେଉଁ ପ୍ରଭେଦ ରହିଛି ତାହା ଜିନ୍ ଦୃଷ୍ଟିରୁ ନୁହେଁ ବରଂ ସମ୍ପୂର୍ଣ୍ଣ ଭାବରେ ସାମାଜିକ ସ୍ତରରେ ସୃଷ୍ଟ ଭେଦଭାବ ଯୋଗୁଁ ରହିଆସିଛି ।"[୮୫]

ଗାନ୍ଧୀ ଯଦିବା ଅସ୍ପୃଶ୍ୟତା ଓ ଜାତିପ୍ରଥାକୁ ବିରୋଧ କରିଛନ୍ତି ସେ ତାଙ୍କର ବିରୋଧକୁ ଏକ ତାର୍କିକ ପରିଣାମ ସ୍ତରକୁ ନେଇ ନାହାନ୍ତି । ବରଂ ସେ ଜନ୍ମଭିତ୍ତିକ ବର୍ଣ୍ଣବ୍ୟବସ୍ଥାକୁ ସମର୍ଥନ କରିଛନ୍ତି । ଏପରିକି ଗୋଟିଏ ସମୟରେ ସେ ଜାତିମାନଙ୍କ ମଧ୍ୟରେ ସହଭୋଜନ ଓ ଆନ୍ତର୍ଜାତି ବିବାହ କ୍ଷେତ୍ରରେ ଥିବା ପ୍ରତିବନ୍ଧକକୁ ସମର୍ଥନ କରୁଥିଲେ । ୧୯୨୧ରେ ସେ "ୟଙ୍ଗ୍ ଇଣ୍ଡିଆ" ପତ୍ରିକାରେ ଲେଖିଥିଲେ, "ହିନ୍ଦୁଧର୍ମରେ ଜାତିମାନଙ୍କ ମଧ୍ୟରେ ଏକତ୍ର ଭୋଜନ ତଥା ଆନ୍ତର୍ଜାତି ବିବାହକୁ ଦୃଢ଼ଭାବରେ ବିରୋଧ କରାଯାଇଛି । ନିଜର ପୁତ୍ର ସହ ଏକତ୍ର ଭୋଜନ କରିବା ଜଣେ ହିନ୍ଦୁର ମଧ୍ୟ କର୍ତ୍ତବ୍ୟ ନୁହେଁ । କେବଳ ନିର୍ଦ୍ଦିଷ୍ଟ ଗୋଷ୍ଠୀର କନ୍ୟାକୁ ବିବାହ କରିବା ଆବଶ୍ୟକ ହେଉଥିବାରୁ ଜଣେ ହିନ୍ଦୁ ଯୁବକ ଆତ୍ମସଂଯମ ରକ୍ଷା କରିବାକୁ ବାଧ୍ୟ ହେଉଛି । ଆନ୍ତର୍ଜାତି ବିବାହ ଓ ସହଭୋଜନ କ୍ଷେତ୍ରରେ ପ୍ରତିବନ୍ଧକ ଆତ୍ମାର ବିକାଶ ପାଇଁ ଅତ୍ୟନ୍ତ ଉପାଦେୟ ମନେହୁଏ ।"[୮୬]

ପରବର୍ତ୍ତୀ ସମୟରେ ଗାନ୍ଧୀ ତାଙ୍କର ରକ୍ଷଣଶୀଳ ଭାବନାକୁ ପରିବର୍ତ୍ତନ କରି ଆନ୍ତର୍ଜାତି ବିବାହକୁ ସମର୍ଥନ କରିଥିଲେ । ଶେଷରେ ୧୯୪୬ ମସିହାରେ ଯେକୌଣସି ବିବାହ କ୍ଷେତ୍ରରେ ଗୋଟିଏ ପକ୍ଷ ହରିଜନ ହୋଇ ନ ଥିଲେ ସେପ୍ରକାର ବିବାହ ସେବାଗ୍ରାମରେ କରିବା କ୍ଷେତ୍ରରେ ସେ ସହଯୋଗ କରିବେ ନାହିଁ ବୋଲି ଘୋଷଣା କଲେ ।[୮୭] ଯଦି ସେ ଅଧିକ ଦିନ ବଞ୍ଚିଥାନ୍ତେ ତେବେ ହୁଏତ ବର୍ଣ୍ଣବ୍ୟବସ୍ଥାକୁ ପ୍ରତ୍ୟାଖ୍ୟାନ କରିଥାନ୍ତେ । ତାହା ଅବଶ୍ୟ ଏକ କାଳ୍ପନିକ

ଭାବନା ମାତ୍ର, କିନ୍ତୁ ଗାନ୍ଧୀ ଯେ ବର୍ଣ୍ଣବ୍ୟବସ୍ଥାର ସମର୍ଥକ ଥିଲେ ଏହା ନିଃସନ୍ଦେହ । ଅବଶ୍ୟ ଏହା ଉଲ୍ଲେଖନୀୟ ଯେ ସେ ବର୍ଣ୍ଣବ୍ୟବସ୍ଥା ସମ୍ପର୍କରେ ଏକ ନିଜସ୍ୱ ଭାବନା ଦେଇଥିଲେ ଯେଉଁଥିରେ କୌଣସି ଉଚ୍ଚନୀଚ ଭାବନା ନ ଥିଲା ବା ଆନ୍ତର୍ଜାତି ବିବାହ କ୍ଷେତ୍ରରେ କୌଣସି ନିଷେଧ ରହି ନ ଥିଲା । ଗାନ୍ଧୀଙ୍କ ବିଚାର କ୍ଷେତ୍ରରେ ରକ୍ଷଣଶୀଳତା ଓ ସଂସ୍କାର ମଧ୍ୟରେ ଏକ ଅଦ୍ଭୁତ ମିଶ୍ରଣ ଦେଖିବାକୁ ମିଳେ ।

ଏହି ଅନୁଚ୍ଛେଦଟିକୁ ଶେଷ କରିବା ପୂର୍ବରୁ ମୁଁ ଏକ ଅନ୍ୟ ଅଭିଯୋଗ ସମ୍ବନ୍ଧରେ ଆଲୋଚନା କରିବାକୁ ଚାହୁଁଛି । ହୁଏତ କେହି କେହି ଏହା କହିଥାନ୍ତି ଯେ ବର୍ତ୍ତମାନ ଯେଉଁ ହିନ୍ଦୁ ସଂହିତାର ପ୍ରଚଳନ ଦେଖିବାକୁ ମିଳେ ତାହା ମନୁ ପ୍ରବର୍ତ୍ତନ କରିଥିବା ନିୟମଠାରୁ ପୃଥକ । ଏହାଛଡ଼ା ସମ୍ପ୍ରତି ସାଧାରଣ ଭାବରେ ହିନ୍ଦୁମାନେ ମନୁଙ୍କ ନିର୍ଦ୍ଦେଶକୁ ପୂର୍ଣ୍ଣଭାବରେ ସମର୍ଥନ କରୁନାହାନ୍ତି । ଏହା ଅବଶ୍ୟ ସତ୍ୟ । ସାମ୍ପ୍ରତିକ କାଳରେ ହିନ୍ଦୁ ଆଇନରେ ଆନ୍ତର୍ଜାତି ବିବାହ ସ୍ୱୀକୃତି ପାଇବା ସହିତ ଦୁଇଥର ବିବାହ ଓ ବାଲ୍ୟ ବିବାହକୁ ନିଷେଧ କରାଯାଇଛି । ଏହା ସହିତ ଏହା ସ୍ୱାମୀ ସ୍ତ୍ରୀ ମଧ୍ୟରେ ବିଚ୍ଛେଦକୁ ମଧ୍ୟ ଗ୍ରହଣ କରିଛି । ବିଧବା ବିବାହକୁ ଏଥିରେ ସମର୍ଥନ କରାଯାଇଛି ଓ ଝିଅମାନଙ୍କର ବାପା ମା'ଙ୍କ ସମ୍ପତ୍ତିରେ ସମାନ ଅଧିକାରକୁ ଗ୍ରହଣ କରାଯାଇଛି । ତଥାପି ପ୍ରଗତିଶୀଳ ହିନ୍ଦୁ ଆଇନ ଓ ରକ୍ଷଣଶୀଳ ସାମାଜିକ ବ୍ୟବସ୍ଥା ଭିତରେ ଅନେକ ପାର୍ଥକ୍ୟ ରହିଛି । ବାସ୍ତବରେ ହିନ୍ଦୁ ସମାଜରେ ଅଧିକାଂଶ ବିବାହ ଜାତି ଭିତରେ ସମ୍ପନ୍ନ ହେଉଛି । ପୁନଶ୍ଚ କୌଣସି ହିନ୍ଦୁ ନାରୀ ପିତାଙ୍କ ସମ୍ପତ୍ତି ପାଇଁ ଦାବି କରି ନ ଥାନ୍ତି ବା ପାଇ ନ ଥାନ୍ତି ।

ଭାରତୀୟ ସମ୍ବିଧାନରେ ଅନୁସୂଚିତ ଜାତି, ଉପଜାତି ଓ ଶିକ୍ଷା ଏବଂ ସାମାଜିକ ସ୍ତରରେ ଅନଗ୍ରସର ଥିବା ପଛୁଆ ଜାତିର ଲୋକମାନଙ୍କୁ ଯଥାର୍ଥରେ ଚାକିରି କ୍ଷେତ୍ରରେ ସୁବିଧା ଦେବାକୁ ବ୍ୟବସ୍ଥା ରହିଛି । ଏହା ସହିତ କ୍ଷମତାର ଅଧିକାରୀ ହେବାକୁ ସୁଯୋଗ ଦିଆଯାଇଛି ଯାହାକି ଅତୀତରେ ହୋଇନାହିଁ । ଅତୀତରେ ସେମାନଙ୍କୁ ସର୍ବଦା ଏଥିରୁ ବଞ୍ଚିତ କରାଯାଇ ଆସିଛି । କେତେକ ଉଦାରପନ୍ଥୀ ଉଚ୍ଚଜାତିର ଲୋକମାନେ ମଧ୍ୟ ସଂରକ୍ଷଣ ବ୍ୟବସ୍ଥାକୁ ସମର୍ଥନ କରନ୍ତି । କିନ୍ତୁ ଅନେକାଂଶରେ ଉଚ୍ଚଜାତିର ହିନ୍ଦୁମାନେ ଏହି ପ୍ରଗତିଶୀଳ ପଦକ୍ଷେପକୁ ଗ୍ରହଣ କରିପାରନ୍ତି ନାହିଁ । ଉଚ୍ଚଜାତିର ଛାତ୍ରମାନେ ବିଭିନ୍ନ ସମୟରେ ସଂରକ୍ଷଣ ବିରୁଦ୍ଧରେ ହିଂସାତ୍ମକ ଓ ପ୍ରତିହିଂସାମୂଳକ ଆନ୍ଦୋଳନମାନ ଆୟୋଜନ କରିଥାନ୍ତି । ଶିକ୍ଷା, ସରକାରୀ କର୍ମସଂସ୍ଥାନ ଓ ଅନ୍ୟାନ୍ୟ ପଦ ପଦବୀରେ ଉଚ୍ଚଜାତି ଲୋକଙ୍କର ପ୍ରଭୁତ୍ୱକୁ ଜାହିର କରିବା ପାଇଁ ଏହି ପ୍ରକାରର

ପ୍ରତିକ୍ରିୟାଶୀଳ ଆନ୍ଦୋଳନ ହୋଇଛି ତଥା ଉଚ୍ଚଜାତିର ଲୋକମାନଙ୍କ ନିୟନ୍ତ୍ରଣରେ ଥିବା ସମ୍ବାଦପତ୍ର ଗଣମାଧ୍ୟମ ଓ ଶିକ୍ଷାନୁଷ୍ଠାନ ଏହାକୁ ସର୍ବଦା ସମର୍ଥନ କରି ଆସିଛନ୍ତି ।

ହିନ୍ଦୁ ସମାଜ ମୋଟାମୋଟି ଭାବରେ ଏ ପର୍ଯ୍ୟନ୍ତ ମନୁବାଦୀ ବ୍ୟବସ୍ଥାରୁ ମୁକ୍ତ ହୋଇନାହିଁ । ଅସ୍ପୃଶ୍ୟତାର ଦୂରୀକରଣ ପାଇଁ ଭାରତୀୟ ସମ୍ବିଧାନରେ କୁହାଯାଇଥିଲେ ସୁଦ୍ଧା ଜନ୍ମଭିତ୍ତିକ ଜାତିପ୍ରଥା ଓ ଅସ୍ପୃଶ୍ୟତା ଅଦ୍ୟାବଧି ଭାରତୀୟ ସମାଜରେ ରହିଆସିଛି । ଶିକ୍ଷା, କ୍ଷମତା ଓ ସମ୍ପତ୍ତିର ଅଧିକାର କ୍ଷେତ୍ରରେ ଅସମତା ହିନ୍ଦୁ ସମାଜରେ ଅତି ସ୍ପଷ୍ଟ ଭାବରେ ରହିଛି । ପ୍ରତ୍ୟେକ ସ୍ତରରେ ଦ୍ୱିଜମାନେ ଉଚ୍ଚରେ ରହିଥିବାବେଳେ ଶୂଦ୍ରମାନେ ନିମ୍ନରେ ରହିଛନ୍ତି । ଶିକ୍ଷାଦାନ ବ୍ରାହ୍ମଣମାନଙ୍କର ପୂର୍ଣ୍ଣ ଅଧିକାରରେ ନ ଥିଲେ ମଧ୍ୟ ପୁରୋହିତ କାର୍ଯ୍ୟ କରିବାର ଅଧିକାର କେବଳ ବ୍ରାହ୍ମଣମାନଙ୍କ ପାଇଁ ସଂରକ୍ଷିତ ହୋଇ ରହିଛି । ସଂରକ୍ଷଣକୁ ବିରୋଧ କରୁଥିବା ବ୍ୟକ୍ତିଗଣ ବ୍ରାହ୍ମଣମାନଙ୍କର ଏହି ସଂରକ୍ଷଣ ବିରୁଦ୍ଧରେ କେବେ ବି ସ୍ୱର ଉତ୍ତୋଳନ କରିନାହାନ୍ତି ।

## (୩)

ହିନ୍ଦୁଧର୍ମରେ ମୋକ୍ଷପ୍ରାପ୍ତିକୁ ଜୀବନର ସର୍ବୋଚ୍ଚ ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଇଛି । ଅସରନ୍ତି ଜୀବନ-ମୃତ୍ୟୁ ଚକ୍ରରେ ଘୁରୁଥିବା ପର୍ଯ୍ୟନ୍ତ ବ୍ୟକ୍ତି ବନ୍ଧନ ଭିତରେ ଦାସ ହୋଇ ରହିଥାଏ, ମୋକ୍ଷପ୍ରାପ୍ତି ଦ୍ୱାରା ଏହି ଶୃଙ୍ଖଳ ବା ଦାସତ୍ୱରୁ ମୁକ୍ତିପାଏ ।

ବନ୍ଧନ ଓ ମୋକ୍ଷର ପରିକଳ୍ପନା ଆତ୍ମାର ଅସ୍ତିତ୍ୱ ଭାବନା ଉପରେ ଆଧାରିତ । ଏହା ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତି ଭିତରେ ଏକ ଆତ୍ମା ରହିଛି ଯାହା ଶରୀର ଠାରୁ ପୃଥକ ଓ ଏପରିକି ମୃତ୍ୟୁପରେ ମଧ୍ୟ ଏହାର ଅସ୍ତିତ୍ୱ ରହିବା ସମ୍ଭବ । ମୃତ୍ୟୁପରେ ଯେ ଜୀବନ ରହିପାରେ ଏହି ପ୍ରକାରର ଏକ ଅପରୀକ୍ଷିତ ଭାବନାରୁ ହିଁ ଏହିସବୁ ପରିକଳ୍ପନା କରାଯାଇଛି । ଗୀତାର ବକ୍ତବ୍ୟ ଅନୁଯାୟୀ ଯେପରି ଆମେ ବସ୍ତ୍ର ପରିବର୍ତ୍ତନ କରିଥାଉ, ଆତ୍ମା ସେହିପରି ମୃତ୍ୟୁପରେ ନିଜର ଘଟ ପରିବର୍ତ୍ତନ କରିଥାଏ ।[୮୮]

ଆତ୍ମାର ଅସ୍ତିତ୍ୱ, ମୃତ୍ୟୁପରେ ଜୀବନ ବା ପୁନର୍ଜନ୍ମ ଇତ୍ୟାଦି ଭାବନାକୁ ବିଶ୍ୱାସ କରିବା ପଶ୍ଚାତରେ ସେପରି ଯୁକ୍ତିଶୀଳ ଆଧାର ନାହିଁ । ଏହି ବିଶ୍ୱାସ ସକଳକୁ ପ୍ରତିଷ୍ଠା କରିବା ପାଇଁ କୌଣସି ପରୀକ୍ଷିତ ବୈଜ୍ଞାନିକ ଭିତ୍ତି ନାହିଁ । ଏସ୍.

ଏନ୍. ଦାସଗୁପ୍ତଙ୍କ ମତରେ, ''ବୁଦ୍ଧଙ୍କ ପୂର୍ବରୁ ବା ପରେ ପୁନର୍ଜନ୍ମବାଦକୁ ପ୍ରମାଣ କରିବା ବା ଅପ୍ରମାଣ କରିବା ନେଇ ସେପରି ଗୁରୁତର ପ୍ରୟାସ ହୋଇନାହିଁ । ହିନ୍ଦୁ ଦର୍ଶନଧାରାରେ ନ୍ୟାୟ ଦର୍ଶନ ଇତ୍ୟାଦି ପୁନର୍ଜନ୍ମ ଭାବନା କ୍ଷେତ୍ରରେ ଯେଉଁ ପ୍ରମାଣ ଦେଇଛନ୍ତି ତାହା ଅତ୍ୟନ୍ତ ଦୁର୍ବଳ ଓ ନଗଣ୍ୟ ମନେହୁଏ ।''[୮୯]

ଏପରିକି ବୁଦ୍ଧଙ୍କ ପୂର୍ବରୁ ଲୋକାୟତ ଦର୍ଶନରେ ଆତ୍ମାର ଅସ୍ତିତ୍ୱ, ମୃତ୍ୟୁପରେ ଜୀବନ, ପୁନର୍ଜନ୍ମ, ସ୍ୱର୍ଗ, ନର୍କ ଭାବନା ଇତ୍ୟାଦି ପଶ୍ଚାତରେ କୌଣସି ପ୍ରତ୍ୟକ୍ଷ ଅନୁଭୂତି ନ ଥିବାରୁ ସେ ସବୁକୁ ଅସ୍ୱୀକାର କରାଯାଇଛି ।[୯୦]

କୌଣସି ବିରୁଦ୍ଧ ପ୍ରମାଣ ଅଭାବରେ ଏହା ବିଶ୍ୱାସ କରିବା ଯୁକ୍ତିସଂଗତ ଯେ ଆମ ପ୍ରତ୍ୟେକଙ୍କର ଏକମାତ୍ର ଜନ୍ମ ଓ ଜୀବନ ହିଁ ରହିଛି । କୌଣସି ବ୍ୟକ୍ତିଙ୍କର ମୃତ୍ୟୁଦ୍ୱାରା ତାଙ୍କର ଅସ୍ତିତ୍ୱ ସବୁଦିନ ପାଇଁ ବିଲୋପ ହୋଇଯାଏ । ତାଙ୍କର ପୁନର୍ଜନ୍ମ ପ୍ରଶ୍ନ ହିଁ ଉଠୁନାହିଁ । ଶରୀର ଓ ମସ୍ତିଷ୍କର ବିଲୋପ ପରେ ମନ, ଚେତନା, ସ୍ମୃତି ଓ ଜୀବନ ରହିବା ସମ୍ଭବପର ନୁହେଁ । ଏହା ଯେତେ ଅପ୍ରିୟ ହେଲେ ବି ଏହା ହିଁ ହେଉଛି ବାସ୍ତବ ସତ୍ୟ ।

ପ୍ରାଚୀନ ଜଡ଼ାତ୍ମବାଦରୁ ଆତ୍ମା ସଂକ୍ରାନ୍ତରେ ବିଶ୍ୱାସ ସୃଷ୍ଟି ହୋଇଛି ।[୯୧] ଏହା ପଶ୍ଚାତରେ କୌଣସି ବସ୍ତୁନିଷ୍ଠ ଆଧାର ନ ଥିଲେ ସୁଦ୍ଧା ମୃତ୍ୟୁପରି ଏକ ବାସ୍ତବତାକୁ ଗ୍ରହଣ କରିବା ବା ସ୍ୱୀକାର କରିନେବା ଜନିତ ଅସମର୍ଥତାରୁ ଏହି ବିଶ୍ୱାସ ରହିଆସିଛି । ନିଜର ଆତ୍ମୀୟ ବା ବନ୍ଧୁପରିଜନମାନଙ୍କର ମୃତ୍ୟୁପରେ ସେମାନଙ୍କୁ ହରାଇଥିବା ବ୍ୟକ୍ତି ସେମାନେ ଯେ ଏକ କାଳ୍ପନିକ ଜଗତରେ ରହିଛନ୍ତି ଓ ପୁଣି ପୁନର୍ଜନ୍ମ ନେବେ ଏହା ବିଶ୍ୱାସ କରିବାରେ ଆଗ୍ରହ କରେ । ଜଣଙ୍କର ମୃତ୍ୟୁପରେ ସେ ଯେ ବିଲୁପ୍ତ ହେବ ନାହିଁ ଓ ଏକ ଭିନ୍ନ ରୂପରେ ତିଷ୍ଠି ରହିବ ଏହି ଭାବନା ପୋଷଣ କରି ଜଣେ ଆଶ୍ୱସ୍ତ ହୋଇଥାଏ । ଏହା ଏକ ପ୍ରହେଳିକା ଯେ ମୃତ୍ୟୁଭୟ ଓ ଜୀବନପ୍ରତି ଅନୁରାଗ ଯୋଗୁଁ ସେପରି କୌଣସି ଭିତ୍ତି ନ ଥାଇ ମଧ୍ୟ ଜଣେ ଆତ୍ମାର ଅମରତ୍ୱ ଓ ପୁନର୍ଜନ୍ମରେ ଆସ୍ଥା ସ୍ଥାପନ କରିଥାଏ, ଓ ଏପରିକି ଜନ୍ମ ମୃତ୍ୟୁ ଚକ୍ରରୁ ନିଷ୍କୃତି ପାଇଁ ମୋକ୍ଷ ଲାଭ କରିବାକୁ ଏକ ଲକ୍ଷ୍ୟ ଭାବରେ ଧର୍ମୀୟ ବିଶ୍ୱାସ ପୋଷଣ କରିଥାଏ ।[୯୨]

କାଳ୍ପନିକ ଜୀବନ-ମୃତ୍ୟୁ ଚକ୍ରରୁ ନିଷ୍କୃତି ପାଇବାର ସମସ୍ୟା ଏକ ନିରର୍ଥକ ସମସ୍ୟା ଅଟେ, କାରଣ ଏଥିରେ ଜଣେ ଯେଉଁଥିରୁ ନିଷ୍କୃତି ଚାହୁଁଛି ତାର କୌଣସି ବାସ୍ତବତା ହିଁ ନାହିଁ । ମୋକ୍ଷପ୍ରାପ୍ତି ସେହିପରି ଏକ କାଳ୍ପନିକ ଆଦର୍ଶ ଯାହାର ବାସ୍ତବତା ସହିତ କୌଣସି ସମ୍ବନ୍ଧ ହିଁ ନାହିଁ । ମୋକ୍ଷପରି ଏକ କାଳ୍ପନିକ ଆଦର୍ଶକୁ ଅନୁଧାବନ କରିବା ପରିବର୍ତ୍ତେ ବର୍ତ୍ତମାନର ଏହି ଜୀବନକୁ ସୁସ୍ଥ ଭାବରେ ବଞ୍ଚିବା

ଓ ଏହାର ଗୁଣାତ୍ମକ ମାନ ବୃଦ୍ଧି କରିବା ପାଇଁ ପ୍ରୟାସ ହେବା ଆବଶ୍ୟକ ।

ହିନ୍ଦୁ ଆସ୍ତିକ ପରମ୍ପରାର ମୀମାଂସା ଦର୍ଶନରେ ମୋକ୍ଷ ପରିବର୍ତ୍ତେ ସ୍ୱର୍ଗପ୍ରାପ୍ତିକୁ ଜୀବନର ସର୍ବୋଚ୍ଚ ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଇଛି । ମନୁସ୍ମୃତିରେ ମଧ୍ୟ ସ୍ୱର୍ଗ ଓ ନର୍କ ପ୍ରାପ୍ତି ସମ୍ପର୍କରେ ଉଲ୍ଲେଖ ରହିଛି । ସ୍ୱର୍ଗ ପ୍ରାପ୍ତିପାଇଁ ପରିକଳ୍ପନା ସାଧାରଣ ଲୋକଙ୍କ ଭିତରେ ଅଧିକ ବ୍ୟାପକ ଭାବରେ ରହିଛି । ଏହି ସ୍ୱର୍ଗପ୍ରାପ୍ତିର ଭାବନା ପଶ୍ଚାତରେ ମଧ୍ୟ ସେପରି କୌଣସି ପ୍ରମାଣସିଦ୍ଧ ଆଧାର ନାହିଁ । ମୃତ୍ୟୁ ପରେ ଜୀବନ, ସ୍ୱର୍ଗର ଅସ୍ତିତ୍ୱ ଇତ୍ୟାଦି ଭାବନା କ୍ଷେତ୍ରରେ କୌଣସି ଯୁକ୍ତିନିଷ୍ଠ ଭିତ୍ତି ନ ଥିବାରୁ ସ୍ୱର୍ଗପ୍ରାପ୍ତି ପରି କଳ୍ପନାକୁ ଗ୍ରହଣ କରାଯାଇ ପାରିବ ନାହିଁ ।

ହିନ୍ଦୁ ଭାବନାରେ ଏହି ସବୁ ବିଶ୍ୱାସ ପୃଷ୍ଠଭୂମିରେ କର୍ମବାଦ ଏସବୁ ସହିତ ସଂଶ୍ଲିଷ୍ଟ ଥିବା ଅନ୍ୟ ଏକ ସିଦ୍ଧାନ୍ତ ଅଟେ । ଏହି ସିଦ୍ଧାନ୍ତ ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତି ନିଜର କୃତକର୍ମର ଫଳ ଏ ଜୀବନରେ ହେଉ ବା ପରଜନ୍ମରେ ହେଉ ଭୋଗ କରିବାକୁ ବାଧ୍ୟ । ଜଣେ ବ୍ୟକ୍ତିର ଅତୀତ ଜୀବନ ବା ଜୀବନ ସକଳରେ କରିଥିବା କର୍ମର ପରିଣାମ ହେଉଛି ତାର ବର୍ତ୍ତମାନର ଜୀବନ ।

ଏହ ମଧ୍ୟ ଏକ ଅପରୀକ୍ଷିତ ଓ ସତ୍ୟାପନହୀନ ବିଶ୍ୱାସ, ଯାହା ଜନ୍ମ-ମୃତ୍ୟୁ-ଚକ୍ର ପ୍ରକଳ୍ପ ଉପରେ ଆଧାରିତ । ମଣିଷ ସମାଜରେ ରହିଥିବା ଅସମତାକୁ ଏଡ଼ାଇ ଯିବାପାଇଁ ଏହି ବିଶ୍ୱାସର ଅବତାରଣା କରାଯାଇ ତାହାର ବ୍ୟାଖ୍ୟା କରାଯାଇଥାଏ । ହିନ୍ଦୁ ସମାଜରେ ରହିଥିବା ଅନ୍ୟାୟ ଓ ଅସମତାପୂର୍ଣ୍ଣ ବର୍ଣ୍ଣବ୍ୟବସ୍ଥାକୁ ଏକ ବୈଧ ସିଦ୍ଧାନ୍ତ ଭାବରେ ପ୍ରତିଷ୍ଠା କରିବା ପାଇଁ 'କର୍ମବାଦ' ଏକ ସମ୍ଭାବ୍ୟ ଉତ୍ତର ଯୋଗାଇଥାଏ । ଶୂଦ୍ର ଓ ଅସ୍ପୃଶ୍ୟମାନଙ୍କ ମଧ୍ୟରେ ଏହା ଏପରି ଏକ ମାନସିକତା ଆଣିଥାଏ ଯଦ୍ୱାରା ସେମାନେ ସେମାନଙ୍କର ଦୟନୀୟ ସାମାଜିକ ଅବସ୍ଥା ପାଇଁ ସେମାନଙ୍କର କାଳ୍ପନିକ ପୂର୍ବଜନ୍ମର କର୍ମକୁ ଦାୟୀ କରିବେ । ମଣିଷକୃତ ଏହି ଅଗଣତାନ୍ତ୍ରିକ ଓ ଅନ୍ୟାୟପୂର୍ଣ୍ଣ ବ୍ୟବସ୍ଥା ବିରୁଦ୍ଧରେ ବିପ୍ଳବ କରିବା କ୍ଷେତ୍ରରେ ସେମାନଙ୍କୁ ନିବୃତ୍ତ କରିବା ପାଇଁ ଏହିସବୁ ବିଶ୍ୱାସ ଦିଆଯାଇଥାଏ । କିନ୍ତୁ ଏହିସବୁ ସାମାଜିକ ଅନ୍ୟାୟ ସହିତ ଅତୀତ ବା ଭବିଷ୍ୟତ କର୍ମର କୌଣସି ସମ୍ବନ୍ଧ ହିଁ ନାହିଁ ।[୧୩]

ଶେଷରେ ହିନ୍ଦୁ ଅବତାରବାଦ ସମ୍ପର୍କରେ ଆଲୋଚନା କରାଯାଉ । ଏହି ବିଶ୍ୱାସ ଅନୁଯାୟୀ ପୃଥିବୀରେ ଯେତେବେଳେ ଧର୍ମର ଅବକ୍ଷୟ ହୁଏ ସେତେବେଳେ ଈଶ୍ୱର ମଣିଷ ରୂପରେ ଜନ୍ମଗ୍ରହଣ କରି ସମାଜରେ ଧର୍ମ ପ୍ରତିଷ୍ଠା କରିଥାନ୍ତି । ହିନ୍ଦୁମାନେ ରାମ ଓ କୃଷ୍ଣଙ୍କୁ ସାଧାରଣତଃ ଭଗବାନଙ୍କର ଅବତାର

ଭାବରେ ଗ୍ରହଣ କରିଥାନ୍ତି ।

ଅବତାରବାଦରେ ବିଶ୍ୱାସ ମଧ୍ୟ ତାର୍କିକ ବିଚାରରେ ଅବୈଧ ମନେହୁଏ । ଏହି ବିଶ୍ୱାସ ପୋଷଣ କରି ଜଣେ ନିଜର ସାମାଜିକ ଅଙ୍ଗୀକାରବଦ୍ଧତାକୁ ଏଡ଼ାଇ ଯାଇଥାଏ । ନିଜର ସମାଜିକ ସ୍ଥିତିରେ ଉନ୍ନତି ଆଣିବା ପାଇଁ ସାମୂହିକ ଉଦ୍ୟମ କରିବା ପରିବର୍ତ୍ତେ ଏହି ବିଶ୍ୱାସର ବଶବର୍ତ୍ତୀ ବ୍ୟକ୍ତିମାନେ ଏକ ଅବତାରଙ୍କର ଆଗମନକୁ ପ୍ରତୀକ୍ଷା କରିଥାନ୍ତି । ଯେହେତୁ 'ଈଶ୍ୱର' ଏକ କାଳ୍ପନିକ ବିଶ୍ୱାସମାତ୍ର ଓ ତାଙ୍କର ଅସ୍ତିତ୍ୱ ନେଇ କୌଣସି ସତ୍ୟତା ନାହିଁ ସେ କ୍ଷେତ୍ରରେ ତାଙ୍କର ଏହି ଧରାପୃଷ୍ଠରେ ଅବତାର ଗ୍ରହଣ ଅବାନ୍ତର ମନେହୁଏ । ଏହି ପରିପ୍ରେକ୍ଷୀରେ ''ଯୀଶୁଖ୍ରୀଷ୍ଟ ଈଶ୍ୱରଙ୍କର ସନ୍ତାନ'' କିମ୍ବା ''ମହମ୍ମଦ ଈଶ୍ୱରଙ୍କ ଦ୍ୱାରା ପ୍ରେରିତ ଦୂତ'' ଇତ୍ୟାଦି ବକ୍ତବ୍ୟରେ ମଧ୍ୟ ମୁଁ ବିଶ୍ୱାସ କରେନାହିଁ ।

ରାମ ବା କୃଷ୍ଣ (ବା ଅନ୍ୟକେହି) ଈଶ୍ୱରଙ୍କର ଅବତାର ଏ କଥାରେ ମୋର ଯେ ବିଶ୍ୱାସ ନାହିଁ ତାହା ନୁହଁ ମୁଁ ସେମାନଙ୍କୁ ଆଦର୍ଶ ବ୍ୟକ୍ତିତ୍ୱ ଭାବରେ ମଧ୍ୟ ଗ୍ରହଣ କରେନାହିଁ । ପୂର୍ବରୁ ଏହା କୁହାଯାଇଛି ଯେ ରାମ ବର୍ଣ୍ଣବ୍ୟବସ୍ଥାର ସମର୍ଥକ ଥିଲେ । ରାବଣ ସହିତ ଏକ ଭୟାନକ ଯୁଦ୍ଧକରି ସୀତାଙ୍କୁ ଉଦ୍ଧାର କରିବା ପରେ ସୀତାଙ୍କ ପ୍ରତି ରାମଙ୍କର ନିଷ୍ଠୁର ବ୍ୟବହାର ଏପରି ସୁବିଦିତ ଯେ ତାହାର କୌଣସି ଉଲ୍ଲେଖ କରିବାର ଆବଶ୍ୟକତା ନାହିଁ ।

ମହାଭାରତରେ କୃଷ୍ଣଙ୍କୁ ଗୀତାର ପ୍ରବକ୍ତା ଭାବରେ ଉପସ୍ଥାପନ କରାଯାଇଛି । ଗୀତାରେ ଈଶ୍ୱର, ଆତ୍ମାର ଅମରତ୍ୱ, ଅବତାରବାଦ, କର୍ମବାଦ, ବର୍ଣ୍ଣାଶ୍ରମଧର୍ମ ଓ ମୋକ୍ଷ ଆଦି ତତ୍ତ୍ୱଗୁଡ଼ିକର ଅବତାରଣା କରାଯାଇଛି ଯାହା ଅସତ୍ୟ ଓ କ୍ଷତିକାରକ ।

ମହାଭାରତରେ ଶ୍ରୀକୃଷ୍ଣ ନିଜର ଲକ୍ଷ୍ୟ ପ୍ରାପ୍ତି ପାଇଁ ମିଥ୍ୟା ଓ ଠକାମି ପରି ଅନ୍ୟାୟ ପନ୍ଥା ପ୍ରୟୋଗ କରିବା ସହ ଏହା ସପକ୍ଷରେ ମତ ପ୍ରଦାନ କରିଛନ୍ତି । ଲକ୍ଷ୍ୟ ଓ ପନ୍ଥା ଉଭୟ ନୀତି ଦୃଷ୍ଟିରୁ ଆଦର୍ଶଯୁକ୍ତ ହେବା ଆବଶ୍ୟକ ବୋଲି ଗାନ୍ଧୀ ଯାହା ବିଶ୍ୱାସ କରୁଥିଲେ ସେଥିରେ ଶ୍ରୀକୃଷ୍ଣଙ୍କର ବିଶ୍ୱାସ ନ ଥିଲା । ମହାଭାରତ, ଭାଗବତ ଓ ହରିବଂଶରେ ଶ୍ରୀକୃଷ୍ଣଙ୍କୁ ଯେପରି ଚିତ୍ରଣ କରାଯାଇଛି ସେଥିରେ ତାଙ୍କର ଚରିତ୍ରରେ ଅନେକ ତ୍ରୁଟି ପରିଲକ୍ଷିତ ହୁଏ । ''ରାମ ଓ କୃଷ୍ଣ ପ୍ରହେଳିକା'' (The Riddles of Rama and Krishna) ପୁସ୍ତକରେ ଡକ୍ଟର ଆମ୍ବେଦକର ଏହି ତ୍ରୁଟିଗୁଡ଼ିକ ସମ୍ପର୍କରେ ବିଶଦ ବିବରଣୀ ପ୍ରଦାନ କରିଛନ୍ତି ।[୧୪] ଏହା ଜାଣିବାକୁ ଆଗ୍ରହୀ ପାଠକମାନେ ଆମ୍ବେଦକରଙ୍କର ପୁସ୍ତକକୁ ଅନୁଧ୍ୟାନ କରିପାରନ୍ତି ।

ଉପସଂହାରରେ ମୁଁ କହିବାକୁ ଚାହେଁ ଯେ ହିନ୍ଦୁଧର୍ମର ଅଧିକାଂଶ ମୌଳିକ ବିଶ୍ୱାସ ଯଥା ବର୍ଣ୍ଣାଶ୍ରମଧର୍ମ, ମୋକ୍ଷ, କର୍ମବାଦ, ଅବତାରବାଦ ଇତ୍ୟାଦି ତତ୍ତ୍ୱଗୁଡ଼ିକୁ ମୁଁ ପ୍ରତ୍ୟାଖ୍ୟାନ କରିଥାଏ । ସେହିପରି ବେଦର ଜ୍ଞାନ ଯେ ଅଭ୍ରାନ୍ତ ମୁଁ ତାହା ଗ୍ରହଣ କରିପାରେ ନାହିଁ । ମୁଁ ରାମ ଓ କୃଷ୍ଣଙ୍କର ପ୍ରଶଂସକ ନୁହେଁ କିମ୍ବା ପ୍ରତିମା ପୂଜାରେ ମଧ୍ୟ ମୋର ବିଶ୍ୱାସ ନାହିଁ । ହିନ୍ଦୁମାନଙ୍କ ମଧ୍ୟରେ ଗୋମାଂସ ଭକ୍ଷଣ କ୍ଷେତ୍ରରେ ରହିଥିବା ପ୍ରତିବନ୍ଧକକୁ ବି ମୁଁ ଗ୍ରହଣ କରିପାରେ ନାହିଁ । ମୁଁ ତର୍କ ସମ୍ମତ ଓ ବୈଜ୍ଞାନିକ ଚିନ୍ତନର ସମର୍ଥକ । ସ୍ୱାଧୀନତା, ସମତା ଓ ଭ୍ରାତୃତ୍ୱବୋଧ ପରି ଧର୍ମନିରପେକ୍ଷ ଓ ବିଚାରଶୀଳ ନୈତିକ ଆଦର୍ଶଚୟକୁ ମୁଁ ପୂର୍ଣ୍ଣ ଭାବରେ ସମର୍ଥନ କରେ । ସୁତରାଂ ମୁଁ ଏକ ହିନ୍ଦୁ ପରିବାରରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ବୈଚାରିକ ସ୍ତରରେ ମୁଁ ହିନ୍ଦୁ ନୁହେଁ, କାରଣ ହିନ୍ଦୁଧର୍ମର ମୌଳିକ ତତ୍ତ୍ୱଗୁଡ଼ିକୁ ମୁଁ ଗ୍ରହଣ କରି ପାରୁନାହିଁ ।

## ଟିପ୍ପଣୀ ଓ ସହାୟକ ଗ୍ରନ୍ଥ


୧. ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍, ''ଦି ହିନ୍ଦୁ ଭିୟୁ ଅଫ୍ ଲାଇଫ୍'', ପୃଷ୍ଠା-୧୨ ।

୨. ପୂର୍ବ ସୂଚିତ ପୁସ୍ତକ, ପୃଷ୍ଠା ୧୪ ।

୩. ପୂର୍ବ ସୂଚିତ ପୁସ୍ତକ, ପୃଷ୍ଠା ୧୬, ୧୭ ।

୪. ମହାତ୍ମା ଗାନ୍ଧୀ, ''ହିନ୍ଦୁଧର୍ମ'', ପୃଷ୍ଠା ୯ ।

୫. ନିନିଆନ ସ୍ମାର୍ଟ, ''ଏନସାଇକ୍ଲୋପେଡ଼ିଆ ଅଫ୍ ଫିଲୋସଫି''ର ୪ର୍ଥ ଖଣ୍ଡର 'ହିନ୍ଦୁଧର୍ମ' ପ୍ରବନ୍ଧ, ପୃଷ୍ଠା ୧ ।

୬. ସୁରେନ୍ଦ୍ରନାଥ ଦାସଗୁପ୍ତ, ''ଏ ହିଷ୍ଟ୍ରି ଅଫ୍ ଇଣ୍ଡିଆନ ଫିଲୋସଫି'' ପ୍ରଥମ ଖଣ୍ଡ, ପୃଷ୍ଠା ୬୭, ୬୮ ।

୭. ଚାଟର୍ଜି ଓ ଦତ୍ତ, '' ଆନ ଇଣ୍ଟ୍ରୋଡକ୍ସନ ଟୁ ଇଣ୍ଡିଆନ ଫିଲୋସଫି'' ।

୮. ପୂର୍ବ ସୂଚିତ ପୁସ୍ତକ ।

୯. ପୂର୍ବ ସୂଚିତ ପୁସ୍ତକ ।

୧୦. ସୁରେନ୍ଦ୍ରନାଥ ଦାସଗୁପ୍ତ, ଉପର ସୂଚିତ ପୁସ୍ତକ, ପୃଷ୍ଠା ୯୪ ।

୧୧. ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ପର୍କରେ ମୁଁ ମୋର ପୁସ୍ତକ ''କ୍ୟା ଈଶ୍ୱର ମର୍ ଚୁକା ହୈ''ରେ ଏହା ଆଲୋଚନା କରିଛି ।

୧୨. ମହାତ୍ମା ଗାନ୍ଧୀ, ''ହିନ୍ଦୁଧର୍ମ'', ପୃଷ୍ଠା ୯, ୧୦ ।

୧୩. ''ଦି ନିଉ ଏନସାଇକ୍ଲୋପେଡ଼ିଆ ଅଫ୍ ବ୍ରିଟାନିକା'', ୮ମ ଖଣ୍ଡ, ପୃଷ୍ଠା ୯୧୦, ୯୧୧ ।

୧୪. ବି. ଆର. ଆମ୍ବେଦକର, ''ଡଃ ବାବାସାହେବ ଆମ୍ବେଦକର ରାଇଟିଙ୍ଗସ ଆଣ୍ଡ ସ୍ପିଚେସ'' ୪ର୍ଥ ଖଣ୍ଡର 'ରିଡଲସ ଇନ ହିନ୍ଦୁଇଜମ' ପ୍ରବନ୍ଧ, ପୃଷ୍ଠା ୩୩୨ ।

୧୫. ୱାଇ ମାସି, ''ଦି ହିନ୍ଦୁ ରିଲିଜିଅସ ଥଟ'', ପୃଷ୍ଠା ୧୯୨-୧୯୩ ।

୧୬. ଭଗବତ ଗୀତା, ୧/୪୦, ୪୧,୪୨ ଓ ୪୩ ।

୧୮. ୱାଇ ମାସି, ପୂର୍ବ ସୂଚିତ ପୁସ୍ତକ, ପୃଷ୍ଠା ୨୨୪-୨୨୫ ।

୧୯. ଭି. ପି. ବର୍ମା, ''ମଡର୍ଣ୍ଣ ଇଣ୍ଡିଆନ ପଲିଟିକାଲ ଥଟ'', ପୃଷ୍ଠା ୫୦,୫୧ ।

୨୦. ମନୁସ୍ମୃତି, ୧/୩୧ ।

୨୧. ମନୁସ୍ମୃତି, ୧/୫୮ ।

୨୨. ମନୁସ୍ମୃତି, ୧/୮୮ ।

୨୩. ମନୁସ୍ମୃତି, ୧/୮୯ ।

୨୪. ମନୁସ୍ମୃତି, ୧/୯୦ ।

୨୫. ମନୁସ୍ମୃତି, ୧/୯୧ ।

୨୬. ମନୁସ୍ମୃତି, ୧/୯୩ ଓ ୧୦/୩ ।

୨୭. ମନୁସ୍ମୃତି, ୧/୯୫ ।

୨୮. ମନୁସ୍ମୃତି, ୧/୧୦୧ ।

୨୯. ମନୁସ୍ମୃତି, ୧/୧୦୩ ।

୩୦. ମନୁସ୍ମୃତି, ୨/୧୦, ୧୩ ।

୩୧. ମନୁସ୍ମୃତି, ୨/୧୧ ।

୩୨. ମନୁସ୍ମୃତି, ୮/୪୧୦ ।

୩୩. ମନୁସ୍ମୃତି, ୧୦/୯୬ । ଏହାର ସୂଚନା ମଧ୍ୟ ଜେ.ଏନ. ଫାରୁକହାରଙ୍କ ଲିଖିତ ପୁସ୍ତକ, ''ଆନ ଆଉଟଲାଇନ ଅଫ ଦି ରିଲିଜିଅସ୍ ଲିଟରେଚର ଅଫ ଇଣ୍ଡିଆ'' ପୁସ୍ତକରେ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ୧/୩ ରେ ରହିଛି ।

୩୪. ମନୁସ୍ମୃତି, ୨/୧୩୫ ।

୩୫. ମନୁସ୍ମୃତି, ୮/୨୭୨ ।

୩୬. ମନୁସ୍ମୃତି, ୮/୨୮୧ ।

୩୭. ମନୁସ୍ମୃତି, ୬/୬୭ ।

୩୮. ମନୁସ୍ମୃତି, ୫/୧୫୪ ।

୩୯. ମନୁସ୍ମୃତି,୫/୧୬୮, ୧୫୭ ।

୪୦. ମନୁସ୍ମୃତି, ୯/୩ ।
୪୧. ମନୁସ୍ମୃତି, ୧୧/୨ ।
୪୨. ମନୁସ୍ମୃତି, ୫/୧୪୭ ।
୪୩. ମନୁସ୍ମୃତି, ୪/୧୪୮ ।
୪୪. ମନୁସ୍ମୃତି, ୮/୩୭୯ ।
୪୫. ମନୁସ୍ମୃତି, ୮/୧୨୩ ।
୪୬. ମନୁସ୍ମୃତି, ୮/୩୬୪ ।
୪୭. ମନୁସ୍ମୃତି, ୮/୩୬୬ ।
୪୮. ମନୁସ୍ମୃତି, ୮/୪୧୨ ।
୪୯. ମନୁସ୍ମୃତି, ୮/୪୧୩ ।
୫୦. ମନୁସ୍ମୃତି, ୮/୨୬୮ ।
୫୧. ମନୁସ୍ମୃତି, ୮/୨୬୭ ।
୫୨. ମନୁସ୍ମୃତି, ୯/୧୩୧ ।
୫୩. ମନୁସ୍ମୃତି,୨/୩୧, ୩୨ ।
୫୪. ମନୁସ୍ମୃତି, ୨/୧୨୭ ।
୫୫. ମନୁସ୍ମୃତି, ୩/୧୧୧, ୧୧୨ ।
୫୬. ମନୁସ୍ମୃତି,୮/୮୮ ।
୫୭. ମନୁସ୍ମୃତି, ୫/୯୨ ।
୫୮. ମନୁସ୍ମୃତି,୮/୧୪୨ ।
୫୯. ମନୁସ୍ମୃତି, ୩/୪ ।
୬୦. ମନୁସ୍ମୃତି, ୩/୧୨ ।
୬୧. ମନୁସ୍ମୃତି, ୩/୧୪, ୧୫, ୧୬, ୧୭, ୧୮, ୧୯ ।
୬୨. ମନୁସ୍ମୃତି, ୧୦/୪ ।
୬୩. ମନୁସ୍ମୃତି,୧୦/୨୫ ।
୬୪. ମନୁସ୍ମୃତି, ୧୦/୮ ।
୬୫. ମନୁସ୍ମୃତି, ୧୦/୧୨ ।
୬୬. ମନୁସ୍ମୃତି, ୧୦/୧୨ ।
୬୭. ମନୁସ୍ମୃତି, ୧୦/୫୦, ୫୧, ୫୨ ।
୬୮. ମନୁସ୍ମୃତି, ୧୦/୫୪, ୫୫ ।
୬୯. ମନୁସ୍ମୃତି, ୧୦/୫୩ ।

୭୦. ମନୁସ୍ମୃତି, ୧୦/୧୪ ।
୭୧. ମନୁସ୍ମୃତି, ୨/୧୬୮ ।
୭୨. ମନୁସ୍ମୃତି, ୮/୪୧୪ ।
୭୩. ମନୁସ୍ମୃତି, ୨/୧୧୩, ୧୦/୧ ।
୭୪. ମନୁସ୍ମୃତି, ୨/୧୧୬ ।
୭୫. ମନୁସ୍ମୃତି, ୨/୧୧ ।
୭୬. ମନୁସ୍ମୃତି, ୪/୩୦ ।
୭୭. ମନୁସ୍ମୃତି, ୩/୬୫ ।
୭୮. ମନୁସ୍ମୃତି, ୮/୨୨ ।
୭୯. ମନୁସ୍ମୃତି, ୩/୧୫୦, ୧୬୧; ୧୦/୨୨୫ ।
୮୦. ମନୁସ୍ମୃତି, ଚୌଖମ୍ବା ସଂସ୍କୃତ ସଂସ୍ଥାନ, ପୃଷ୍ଠା ୧୦, ୧୧ ।
୮୧. ଏ. କେ. ୱାର୍ଡ଼ର– ''ଇଣ୍ଡିଆନ ବୁଦ୍ଧିଜିମ'', ପୃଷ୍ଠା ୧୬୩ ।
୮୨. ୱାଇ. ମାସି, ''ଦି ହିନ୍ଦୁ ରିଲିଜିଅସ୍ ଥଟ'' ପୃଷ୍ଠା ୩୩୬, ୩୩୭ ।
୮୩. ଏନ୍. କେ. ବୋଷ, ''ସିଲେକସନସ ଫ୍ରମ ଗାନ୍ଧୀ'', ପୃଷ୍ଠା ୨୬୫ ।
୮୪. ପୂର୍ବ ସୂଚିତ, ପୃଷ୍ଠା ୨୬୩ ।
୮୫. ଏମ୍. ହାରାଲାମ୍ବସ– ''ସୋସିଓଲୋଜି, ଥିମସ ଏଣ୍ଡ ପରସ୍ପେକ୍ଟିଭ'', ପୃଷ୍ଠା ୨୭, ୨୮ ।
୮୬. ଏନ୍. କେ. ବୋଷ, ପୂର୍ବ ସୂଚିତ ପୁସ୍ତକ, ପୃଷ୍ଠା ୨୬୬ ।
୮୭. ଲୁଇସ ଫିସର, ''ଗାନ୍ଧୀ'', ପୃଷ୍ଠା ୧୧୧, ୧୧୨ । ଏନ୍. କେ. ବୋଷଙ୍କ ପୂର୍ବ ସୂଚିତ ପୁସ୍ତକ, ପୃଷ୍ଠା ୨୬୮ ।
୮୮. ଭଗବତ ଗୀତା, ୨/୨୦-୨୫ ।
୮୯. ଏସ୍. ଏନ୍. ଦାସଗୁପ୍ତ, ''ଏ ହିଷ୍ଟ୍ରି ଅଫ୍ ଇଣ୍ଡିଆନ ଫିଲୋସଫି, ପ୍ରଥମ ଖଣ୍ଡ ପୃଷ୍ଠା ୮୭ ।
୯୦. ଚାଟର୍ଜି ଓ ଦତ୍ତ, ''ଆନ ଇଣ୍ଟ୍ରୋଡକସନ ଟୁ ଇଣ୍ଡିଆନ ଫିଲୋସଫି'' ।
୯୧. ଏମ୍. ଏନ୍. ରାୟ, ''ଇଣ୍ଡିଆସ ମେସେଜ'', ପୃଷ୍ଠା ୪-୬ ।
୯୨. ସମ୍ଭବତଃ ''ଜନ୍ମ ମୃତ୍ୟୁର ଚକ୍ର''କୁ ବନ୍ଧନ ବୋଲି ମନେକରାଯାଉଛି କାରଣ ଏଥିରେ ବାରମ୍ବାର ଜନ୍ମ ଓ ମୃତ୍ୟୁର ସମ୍ମୁଖୀନ ହେବାକୁ ହେବ । ସୁତରାଂ ଏହା ବିରୁଦ୍ଧରେ ପ୍ରତିକ୍ରିୟା ସ୍ୱରୂପ ମୁକ୍ତିର ଭାବନାକୁ କଳ୍ପନା କରାଯାଇଛି ।
୯୩. ''ଯେଉଁମାନଙ୍କର ଚରିତ୍ର ଉନ୍ନତ ସେମାନେ ଉନ୍ନତ ପରିବେଶରେ ହୁଏତ ବ୍ରାହ୍ମଣ, କ୍ଷତ୍ରିୟ କିମ୍ବା ବୈଶ୍ୟ ହୋଇ ଜନ୍ମଗ୍ରହଣ କରିବେ । ଅଥଚ ଯେଉଁମାନେ

ନୀଚ କର୍ମରେ ସମ୍ପୃକ୍ତ ସେମାନେ ପରଜନ୍ମରେ କୁକୁର, ଶୂକର କିମ୍ବା ଅଛୁଆଁ ଜାତିରେ ଜନ୍ମ ହେବେ । ଜେ. ଏନ୍. ଫାରୁକହାରଙ୍କ ''ଆନ ଆଉଟଲାଇନ ଅଫ ଦି ରିଲିଜିଅସ ଲିଟରେଚର'' ପୁସ୍ତକରେ ବୃହଦାରଣ୍ୟକ ଲେଖାର ପୃଷ୍ଠା ୩୪ ଦ୍ରଷ୍ଟବ୍ୟ । ସୁରେନ୍ଦ୍ରନାଥ ଦାସଗୁପ୍ତଙ୍କ ପୂର୍ବ ସୂଚିତ ପୁସ୍ତକର ପୃଷ୍ଠା ୩୬୩ ମଧ୍ୟ ଦ୍ରଷ୍ଟବ୍ୟ ।

୯୪. ବି. ଆର୍. ଆମ୍ବେଦକର, ''ଡଃ ବାବାସାହେବ ଆମ୍ବେଦକର ରାଇଟିଙ୍ଗସ୍ ଆଣ୍ଡ ସ୍ପିଚେସ'' ୪ର୍ଥ ଖଣ୍ଡର ''ରିଡ୍‌ଲସ ଇନ୍ ହିନ୍ଦୁଇଜିମ'' ପ୍ରବନ୍ଧ ।



# ମୁଁ କାହିଁକି ରାମରାଜ୍ୟ ଚାହେଁ ନାହିଁ

**ଡକ୍ଟର ରମେନ୍ଦ୍ର**

ମହାତ୍ମା ଗାନ୍ଧୀଙ୍କଠାରୁ ଲାଲକୃଷ୍ଣ ଆଡ଼ଭାନିଙ୍କ ପର୍ଯ୍ୟନ୍ତ ରାମରାଜ୍ୟର ବହୁ ପ୍ରଶଂସକ ଓ ସମର୍ଥକ ରହିଛନ୍ତି । ଗାନ୍ଧୀଙ୍କର ଭାରତବର୍ଷର ପରିକଳ୍ପନା ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ପରିକଳ୍ପନାଠାରୁ ସଂପୂର୍ଣ୍ଣ ପୃଥକ ଓ ଉଭୟ ଭାବନା ଏପରିକି ପରସ୍ପର ବିରୋଧୀ । ତଥାପି ଉଭୟ ସେମାନଙ୍କର ଆଦର୍ଶ ସମାଜର ପରିକଳ୍ପନା ଭିତରେ ରାମରାଜ୍ୟର କଥା ହିଁ କହିଥାନ୍ତି । ମୁଁ ଆର.ଏସ.ଏସ. ଭାବନା ଅପେକ୍ଷା ଗାନ୍ଧୀଙ୍କର ଭାବନାକୁ ଅଧିକ ପସନ୍ଦ କରିଥାଏ, ଯଦିବା ମୁଁ ଗାନ୍ଧୀଙ୍କର ଭାବନା ସହିତ ସଂପୂର୍ଣ୍ଣ ଏକମତ ନୁହେଁ । କାରଣ ଗାନ୍ଧୀଙ୍କ ପ୍ରକଳ୍ପର ଧର୍ମୀୟ ଆଧାରକୁ ମୁଁ ଗ୍ରହଣ କରିପାରେ ନାହିଁ । କିନ୍ତୁ ବାସ୍ତବପକ୍ଷେ ରାମରାଜ୍ୟ ପ୍ରକଳ୍ପକୁ ମୁଁ ଆଦୌ ସମର୍ଥନ କରେ ନାହିଁ । ବାସ୍ତବରେ ମୁଁ ରାମରାଜ୍ୟ ପ୍ରତୀତିକୁ ବିରୋଧ କରିଥାଏ ଓ ଏହା କହିବାବେଳେ ମୁଁ ଏହାକୁ ଆକ୍ଷରିକ ଅର୍ଥରେ ନିଏ । ବିଶେଷତଃ ବାଲ୍ମୀକି ରାମାୟଣରେ ରାମରାଜ୍ୟର ଯେଉଁ ବର୍ଣ୍ଣନା ରହିଛି ତାହା ମୁଁ ଚାହେଁ ନାହିଁ ।[୧]

ମୁଁ ରାମରାଜ୍ୟ ନ ଚାହିଁବା ପଶ୍ଚାତରେ ରହିଥିବା କାରଣ ଅତି ସରଳ ଓ ସହଜ । ବାଲ୍ମୀକିଙ୍କର ବର୍ଣ୍ଣନା ଅନୁଯାୟୀ ରାମରାଜ୍ୟ ଏକ ହିନ୍ଦୁ ରାଜତନ୍ତ୍ର ବ୍ୟବସ୍ଥାର ସୂଚନା ଦିଏ, ଅଥଚ ଅନ୍ୟ ବହୁ ଭାରତୀୟଙ୍କ ପରି ଏକ ଧର୍ମନିରପେକ୍ଷ ଗଣତାନ୍ତ୍ରିକ ରାଷ୍ଟ୍ରକୁ ମୁଁ ଗ୍ରହଣ କରିଥାଏ ।

## (୧)

ବାଲ୍ମୀକିଙ୍କର ବର୍ଣ୍ଣନା ଅନୁଯାୟୀ ଦଶରଥ ଅଯୋଧ୍ୟାର ରାଜା ଥିଲେ । ତାଙ୍କର ଚାରି ପୁଅ ହେଲେ ରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ । ରାମ ଥିଲେ ଜ୍ୟେଷ୍ଠ । ରାମଚନ୍ଦ୍ର ପୁତ୍ରମାନଙ୍କ ମଧ୍ୟରେ ବଡ଼ ଥିବାରୁ ଦଶରଥ ତାଙ୍କୁ ଅଯୋଧ୍ୟାର ରାଜା ଭାବରେ ମନୋନୀତ କରିଥିଲେ । ସୁତରାଂ ଏହା ଏକ ବଂଶାନୁକ୍ରମ ଶାସନ

ବ୍ୟବସ୍ଥା ଥିଲା । ରାମ ଅଯୋଧ୍ୟାବାସୀଙ୍କଦ୍ୱାରା ନିର୍ବାଚିତ ହୋଇଥିବା ଶାସନମୁଖ୍ୟ ବା ରାଷ୍ଟ୍ରମୁଖ୍ୟ ନ ଥିଲେ । ସୁତରାଂ ରାମ୍‌ରାଜ୍ୟ ଥିଲା ଏକ ରାଜତନ୍ତ୍ର ।

ରାମରାଜ୍ୟ ହିନ୍ଦୁ ରାଜତନ୍ତ୍ର ଥିଲା ଯେଉଁଥିରେ କ୍ଷତ୍ରିୟ ରାଜା ବର୍ଣ୍ଣାଶ୍ରମ ଧର୍ମକୁ ନିଷ୍ଠାର ସହ ଓ ଆବଶ୍ୟକ ସ୍ଥଳେ ଶକ୍ତି ପ୍ରୟୋଗକରି ପାଳନ କରୁଥିଲେ । ବିଶେଷକରି ଶମ୍ବୁକ ଶୂଦ୍ରକୁ ହତ୍ୟା କରିବା ଘଟଣା ଏହାର ପ୍ରମାଣ ଦିଏ । ବାଲ୍ମୀକି ରାମାୟଣର ବର୍ଣ୍ଣନାକୁ ନେଇ ଡଃ. ବି.ଆର. ଆମ୍ବେଦକର ତାଙ୍କର ''ରାମ ଓ କୃଷ୍ଣ ପ୍ରହେଳିକା'' (The Riddle of Rama and Krishna) ପୁସ୍ତକରେ ଲେଖିଛନ୍ତି :

''ବାଲ୍ମୀକିଙ୍କର ବର୍ଣ୍ଣନା ଅନୁଯାୟୀ ରାମଙ୍କ ଶାସନ ସମୟରେ ତାଙ୍କ ରାଜ୍ୟରେ କୌଣସି ଅପମୃତ୍ୟୁ ହେଉ ନ ଥିଲା । କିନ୍ତୁ ଏକଦା ରାମଙ୍କ ଶାସନ ସମୟରେ ଜଣେ ବ୍ରାହ୍ମଣଙ୍କର ପୁତ୍ର ଅକାଳ ମୃତ୍ୟୁଲାଭ କଲେ । ଶୋକ ସନ୍ତପ୍ତ ବାପା ପୁତ୍ରର ମରଶରୀରକୁ ନେଇ ରାମଙ୍କ ନଅର ପାଖ ଦ୍ୱାରରେ ପହଞ୍ଚି ଉଚ୍ଚ ସ୍ୱରରେ କାନ୍ଦିଲେ ଓ ରାମଙ୍କୁ ଏହି ମୃତ୍ୟୁ ପାଇଁ ଦାୟୀ କରି ତିରସ୍କାର କରିବାକୁ ଲାଗିଲେ । ବ୍ରାହ୍ମଣ କହିଲେ ଯେ ରାମଙ୍କ ରାଜ୍ୟରେ ନିଶ୍ଚୟ କିଛି ପାପ କାର୍ଯ୍ୟ ହୋଇଛି ଯେଉଁଥି ଯୋଗୁଁ ତାଙ୍କ ପୁତ୍ରର ଅପମୃତ୍ୟୁ ହେଲା । ଯଦି ପାପୀକୁ ଧରି ରାମ ଦଣ୍ଡବିଧାନ ନ କରନ୍ତି ତେବେ ସେ ଏହି ଅପମୃତ୍ୟୁ ପାଇଁ ଦାୟୀ ରହିବେ । ପୁନଶ୍ଚ ଯଦି ତାଙ୍କର ପୁତ୍ର ଜୀବନ ଫେରି ନ ପାଏ, ତେବେ ପ୍ରତିବାଦରେ ସେ ରାମଙ୍କ ବିରୁଦ୍ଧରେ ଅନଶନରେ ବସି ମୃତ୍ୟୁବରଣ କରିବେ । ଏହି ଘଟଣାରେ ରାମ ତାଙ୍କର ପରାମର୍ଶଦାତା ଆଠଜଣ ବିଜ୍ଞ ଋଷିଙ୍କ ସହିତ ଆଲୋଚନା କଲେ । ସେହି ପରାମର୍ଶଦାତାଙ୍କ ମଧ୍ୟରେ ଥିବା ନାରଦ ରାମଙ୍କୁ ଜଣାଇଲେ ଯେ ତାଙ୍କର ଜଣେ ଶୂଦ୍ର ପ୍ରଜା ଧର୍ମବିଧାନକୁ ଉଲଙ୍ଘନ କରି ତପସ୍ୟା ଓ ଆଧ୍ୟାତ୍ମିକ କାର୍ଯ୍ୟରେ ନିୟୋଜିତ ରହିଛି । ଜଣେ ବ୍ରାହ୍ମଣଙ୍କର କେବଳ ଆଧ୍ୟାତ୍ମିକ କାର୍ଯ୍ୟ କରିବାର ଅଧିକାର ରହିଛି ଯାହା ଶୂଦ୍ରର ନାହିଁ; ଶୂଦ୍ରର କାର୍ଯ୍ୟ ବ୍ରାହ୍ମଣର ସେବା ପାଇଁ ଉଦ୍ଦିଷ୍ଟ । ସୁତରାଂ ରାମ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଶୂଦ୍ର ଜଣକ ଧର୍ମ କାର୍ଯ୍ୟରେ ନିୟୋଜିତ ଥିବାରୁ ଯେଉଁ ପାପ ସୃଷ୍ଟି ହେଲା ତାହାର ପରିଣାମ ସ୍ୱରୂପ ବ୍ରାହ୍ମଣଙ୍କର ପୁତ୍ର ମୃତ୍ୟୁ ମୁଖରେ ପଡ଼ିଲା । ଫଳରେ ରାମ ତାଙ୍କର ବିମାନରେ ପଦାର୍ପଣ କରି ସେହି ଅପରାଧୀକୁ ଧରିବା ପାଇଁ ନଗର ବାହାରେ ସନ୍ଧାନ କଲେ । ଶେଷରେ ତାଙ୍କ ରାଜ୍ୟର ଦକ୍ଷିଣ ଭାଗରେ ଥିବା ଏକ ଜଙ୍ଗଲ ମଧ୍ୟରେ ଜଣେ ବ୍ୟକ୍ତି କଠୋର ସାଧନା କରୁଥିବାର ସନ୍ଧାନ ପାଇଲେ । ରାମ ସେହି ବ୍ୟକ୍ତିଙ୍କ ପାଖକୁ ଯାଇ ସ୍ୱର୍ଗ ପ୍ରାପ୍ତି ପାଇଁ ଆଧ୍ୟାତ୍ମିକ ତପସ୍ୟାରେ ମଗ୍ନଥିବା ବ୍ୟକ୍ତିଟି

ଶମ୍ବୁକ ଓ ଜଣେ ଶୂଦ୍ର ବୋଲି ଯେତେବେଳେ ଜାଣିଲେ ସେତେବେଳେ ତାଙ୍କୁ କୌଣସି ସତର୍କ, ପ୍ରତିରୋଧ ବା ସେପରି କିଛି ନ ଜଣାଇ ତାର ମୁଣ୍ଡ କାଟିଦେଲେ । ଆଶ୍ଚର୍ଯ୍ୟର କଥା, ସେହି ମୁହୂର୍ତ୍ତରେ ମୃତ୍ୟୁବରଣ କରିଥିବା ବ୍ରାହ୍ମଣ ସନ୍ତାନଟି ଅଯୋଧ୍ୟାରେ ପୁନଶ୍ଚ ଜୀବନ ଫେରିପାଇଲେ । ତପସ୍ୟାକରି ସ୍ୱର୍ଗଲାଭ କରିବାର ଅଧିକାର ପାଇ ନ ଥିବା ଜଣେ ଶୂଦ୍ରକୁ ସ୍ୱର୍ଗଲାଭରୁ ବଞ୍ଚିତ କରିଥିବାରୁ ଦେବତାମାନେ ସନ୍ତୁଷ୍ଟ ହୋଇ ରାମଚନ୍ଦ୍ରଙ୍କ ଉପରେ ସ୍ୱର୍ଗରୁ ପୁଷ୍ପ ବୃଷ୍ଟିକଲେ । ସେମାନେ ରାମଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ରାମଙ୍କର ଏହି କାର୍ଯ୍ୟ ପାଇଁ ତାଙ୍କୁ ସମ୍ମାନର ସହ ବଧାଇ ଜଣାଇଲେ । ଅଯୋଧ୍ୟାର ନଅର ପାଖରେ ପଡ଼ିରହିଥିବା ବ୍ରାହ୍ମଣର ମୃତ ସନ୍ତାନଟିକୁ ପୁନର୍ଜୀବନ ଦେବା ପାଇଁ ରାମଙ୍କର ଅନୁରୋଧରେ ବ୍ରାହ୍ମଣ ସନ୍ତାନ ଜୀବନ୍ୟାସ ପାଇ ସାରିଥିବା କଥା ଦେବତାମାନେ ଜଣାଇଲେ । ଏହାପରେ ଅନତିଦୂରରେ ଥିବା ଋଷି ଅଗସ୍ତ୍ୟଙ୍କର ଆଶ୍ରମ ବୁଲିବାକୁ ରାମଚନ୍ଦ୍ର ଯିବାବେଳେ ଶମ୍ବୁକ ବିରୁଦ୍ଧରେ ଏହି କାର୍ଯ୍ୟ ପାଇଁ ଋଷି ତାଙ୍କୁ ପ୍ରଶଂସା କରିବା ସହ ତାଙ୍କୁ ଏକ ଦିବ୍ୟ ଉପହାର ପ୍ରଦାନ କଲେ । ଏହାପରେ ରାମଚନ୍ଦ୍ର ତାଙ୍କ ରାଜଧାନୀକୁ ଫେରିଆସଲେ ।''[୨]

ଏହି ଘଟଣାରୁ ଏହା ପ୍ରମାଣିତ ହୁଏ ଯେ ରାମ ହିନ୍ଦୁ ବର୍ଣ୍ଣବ୍ୟବସ୍ଥାର ସମର୍ଥକ ଓ ରକ୍ଷକ ଥିଲେ । ମନୁସ୍ମୃତିରେ ବର୍ଣ୍ଣିତ ହୋଇଥିବା ବର୍ଣ୍ଣ ବ୍ୟବସ୍ଥାରେ ଜଣେ ଶୂଦ୍ର ବେଦ ଅଧ୍ୟୟନ କରିବା ଠିକ୍ ନୁହେଁ ବୋଲି ମଧ୍ୟ କୁହାଯାଉଛି ।[୩] ମୋଟାମୋଟି ଭାବେ ସେ ଅନ୍ୟ ସବୁ ଦ୍ୱିଜମାନଙ୍କର (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ) ଓ ମୁଖ୍ୟତଃ ବ୍ରାହ୍ମଣମାନଙ୍କର ବିନା ଦ୍ୱିଧାରେ ସେବା କରିବ ।[୪] ସେହିପରି ଯଜ୍ଞ କରିବା ବା କୌଣସି ବ୍ରାହ୍ମଣ ନିୟୋଜିତ କରି ଆଧ୍ୟାତ୍ମିକ କାର୍ଯ୍ୟ ବା କିଛି ଧର୍ମୀୟ କର୍ମକାଣ୍ଡ ପାଳନ କରିବା ଜଣେ ଶୂଦ୍ରର ଆଦୌ କର୍ତ୍ତବ୍ୟ ନୁହେଁ ।[୫] ଅନ୍ୟର ସେବା କରିବା ପାଇଁ ବ୍ରାହ୍ମଣ ଶୂଦ୍ରକୁ ବାଧ୍ୟ କରିପାରିବ । ଏଥିପାଇଁ ଶୂଦ୍ରକୁ କୌଣସି ପାରିଶ୍ରମିକ ଦେବା ନ ଦେବା ବ୍ରାହ୍ମଣର ଇଚ୍ଛାଧୀନ ଅଟେ । ମନୁ ମଧ୍ୟ ଏହାକୁ ସମର୍ଥନ କରିଛନ୍ତି କାରଣ ତାଙ୍କ ମତରେ ଶୂଦ୍ରମାନେ ବ୍ରାହ୍ମଣମାନଙ୍କର ସେବା ପାଇଁ ଉଦ୍ଭବ ହୋଇଛନ୍ତି ।[୬]

ଏହି ବ୍ୟବସ୍ଥାଟି ଯେତେ ଅନ୍ୟାୟ ଓ ଅଗଣତାନ୍ତ୍ରିକ ହେଲେ ମଧ୍ୟ ଏହାକୁ ନିଷ୍ଠାର ସହ ରକ୍ଷା କରିବା ଜଣେ ରାଜାଙ୍କର ଧର୍ମ ବୋଲି କୁହାଯାଇଛି । ମନୁଙ୍କ ମତ ଅନୁଯାୟୀ ଯଦି କୌଣସି ନିମ୍ନ ବର୍ଣ୍ଣର ବ୍ୟକ୍ତି ଏକ ଉଚ୍ଚ ବର୍ଣ୍ଣ ବ୍ୟକ୍ତିର କାର୍ଯ୍ୟକରେ, ତେବେ ରାଜା ସେହି ବ୍ୟକ୍ତିକୁ ସମସ୍ତ ସମ୍ପତ୍ତିରୁ ବଞ୍ଚିତ କରିବା ସହ ତାକୁ ରାଜ୍ୟରୁ ବହିଷ୍କୃତ କରିପାରିବେ ।[୭] ସୁତରାଂ ରାମ କେବଳ ନିଜର ବର୍ଣ୍ଣ

ଧର୍ମକୁ ପାଳନ କରିଛନ୍ତି । ଅର୍ଥାତ ଜଣେ କ୍ଷତ୍ରିୟ ଭାବରେ ଜୈନିକ ବ୍ରାହ୍ମଣଙ୍କର ଅଭିଯୋଗ କ୍ରମେ ସେ ଶମ୍ବୁକଙ୍କୁ ହତ୍ୟା କରିବାକୁ ଯଥାର୍ଥ ମନେ କରିଛନ୍ତି । ହିନ୍ଦୁ ଧର୍ମଶାସ୍ତ୍ର ମନୁ ସଂହିତାରେ ବର୍ଣ୍ଣବ୍ୟବସ୍ଥାର ସୁରକ୍ଷା ପାଇଁ ଯେଉଁ ବିଧାନ ରହିଛି ରାମଚନ୍ଦ୍ର ସେହି ବିଧାନକୁ ରକ୍ଷା କରିବା କ୍ଷେତ୍ରରେ ଅଧିକ ଉତ୍ସାହ ପ୍ରଦର୍ଶନ କରିଛନ୍ତି । ଶମ୍ବୁକଙ୍କୁ ରାଜ୍ୟରୁ ବିତାଡ଼ିତ କରିବା ପରିବର୍ତ୍ତେ ସେ ତାଙ୍କୁ ହତ୍ୟା କରିଛନ୍ତି । ଏହି କୃତୀତ୍ୱପୂର୍ଣ୍ଣ କାର୍ଯ୍ୟରେ ଦେବତାମାନେ ମଧ୍ୟ ଅତି ଖୁସିରେ ରାମଙ୍କ ଉପରେ ପୁଷ୍ପ ବୃଷ୍ଟି କରିଛନ୍ତି ।

ରାମାୟଣର ଏହି ଶମ୍ବୁକ ଉପାଖ୍ୟାନଟିର ଏକ ସାଙ୍କେତିକ ତାତ୍ପର୍ଯ୍ୟ ମଧ୍ୟ ରହିଛି । ବ୍ରାହ୍ମଣମାନଙ୍କ ପାଇଁ ସଂପୂର୍ଣ୍ଣ ସଂରକ୍ଷିତ ଥିବା କାର୍ଯ୍ୟ ଯଦି ଶୂଦ୍ରମାନେ ପାଳନ କରିବେ ତେବେ ବର୍ଣ୍ଣବ୍ୟବସ୍ଥା ତଥା ବ୍ରାହ୍ମଣବାଦ ଭୁଷୁଡ଼ି ପଡ଼ିବ । ସୁତରାଂ ଶମ୍ବୁକଙ୍କୁ ହତ୍ୟାକରି ରାମ ବ୍ରାହ୍ମଣବାଦକୁ ଏକ ନୂଆ ଦିଗଦର୍ଶନ ଦେଇଛନ୍ତି । ବସ୍ତୁତଃ ରାମରାଜ୍ୟ– ତାହା ବାସ୍ତବ ହେଉ ବା କାଳ୍ପନିକ ହେଉ, ଏକ ହିନ୍ଦୁ ରାଜତନ୍ତ୍ରକୁ ବୁଝାଏ । ଏହା ଧର୍ମନିରପେକ୍ଷ ନୁହେଁ ବା ଗଣତାନ୍ତ୍ରିକ ମଧ୍ୟ ନୁହେଁ । ଏଣୁ ସାଂପ୍ରତିକ ଭାରତବର୍ଷରେ ଏହାକୁ ଏକ ଆଦର୍ଶ ବ୍ୟବସ୍ଥା ଭାବରେ ଗ୍ରହଣ କରାଯାଇପାରିବ ନାହିଁ ।

ସେହିପରି ବାଲ୍ମୀକି ରାମାୟଣ ବର୍ଣ୍ଣନା ଅନୁଯାୟୀ ରାମ ଅଯୋଧ୍ୟାର ରାଜା ହେବାପରେ ଅନ୍ତଃସତ୍ତ୍ୱା ସୀତାଙ୍କୁ ଜଙ୍ଗଲକୁ ନିର୍ବାସିତ କରିଥିଲେ । ଏହି ଲଜ୍ଜାକର ଘଟଣାକୁ ନେଇ କେତେକ ରାମଭକ୍ତ ରାମଙ୍କୁ ଏକ ଗଣତାନ୍ତ୍ରିକ ତଥା ଆଦର୍ଶବାନ ବ୍ୟକ୍ତି ଭାବେ ଚିତ୍ରଣ କରିଥାନ୍ତି । ଏହା ସତ୍ୟର ଅପଳାପ କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରଥମତଃ ରାମ ଗଣତନ୍ତ୍ରବାଦୀ ନ ଥିଲେ, ବରଂ ଏକ ସମ୍ରାଟ ଥିଲେ । ଦ୍ୱିତୀୟତଃ ଗଣତାନ୍ତ୍ରିକ ଭାବନା ପୃଷ୍ଠଭୂମିରେ ରାମଙ୍କର ସୀତାଙ୍କ ପ୍ରତି ବ୍ୟବହାରକୁ କେବେହେଲେ ଯଥାର୍ଥ କୁହାଯାଇ ପାରିବ ନାହିଁ । ସୀତାଙ୍କର ସତୀତ୍ୱ ଏକ ସର୍ବସାଧାରଣ ମତାମତ ଦ୍ୱାରା ପରିଚାଳିତ ହେବେ । ଯଦି ବାସ୍ତବପକ୍ଷେ ରାମ ସୀତାଙ୍କୁ ନିରୀହ ଓ ନିର୍ଦ୍ଦୋଷ ବୋଲି ମନେ କରୁଥିଲେ ତେବେ ସେ ଅନର୍ଥକ ଜନରବକୁ ଏଡ଼ାଇ ଯାଇ ପାରିଥାନ୍ତେ କିମ୍ବା ସେସବୁକୁ ପରିବର୍ତ୍ତନ କରିବା ପାଇଁ ପ୍ରୟାସ କରିଥାନ୍ତେ । ଅପରପକ୍ଷରେ ଏହି ପ୍ରକାରର ସମାଲୋଚନା ନିରର୍ଥକ ହେଲେ ମଧ୍ୟ ଯଦି ତାଙ୍କର ରାଜକୀୟ ଆତ୍ମମର୍ଯ୍ୟାଦା ପ୍ରତି ଆଞ୍ଚ ଆଣିବା ସେ ଅନୁଭବ କରୁଥିଲେ ତେବେ ସେ ତାଙ୍କର ସିଂହାସନକୁ ପରିହାର କରିବା ଠିକ୍ ହୋଇଥାନ୍ତା । ପୁନଶ୍ଚ ସୀତାଙ୍କୁ ଏ ବିଷୟରେ କୌଣସି କଥା ନ ଜଣାଇ ତାଙ୍କୁ ନିର୍ବାସିତ କରିବା ପରି ଏକ ସହଜ ପନ୍ଥା ସେ ବାଛିନେଲେ । ଏଥିରୁ ତାଙ୍କ ନିଜର

ଆତ୍ମମର୍ଯ୍ୟାଦା ଅନ୍ୟ ସବୁ କଥାଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ସେ ବିଚାର କରିବା ମନେହୁଏ ।[୮]

ଜଣେ କ୍ଷତ୍ରିୟ ସ୍ୱଭାବ ବ୍ୟକ୍ତିଙ୍କ ପରି ରାମ ନିଜର ଆତ୍ମମର୍ଯ୍ୟାଦା ନେଇ ସଚେତନ ଥିଲେ । ରାବଣଙ୍କୁ ଯୁଦ୍ଧରେ ପରାଜିତ କରି ସୀତାଙ୍କୁ ଉଦ୍ଧାର କଲାପରେ ସେ ସୀତାଙ୍କୁ ଯାହା କହିଥିଲେ ତାହା ଏହି କଥାକୁ ସାବ୍ୟସ୍ତ କରିଥାଏ । ସେ ସୀତାଙ୍କୁ କହିଥିଲେ,

''ତୁମର ଅପହରଣକାରୀ ମୋର ଶତ୍ରୁକୁ ଯୁଦ୍ଧରେ ପରାସ୍ତ କରିବାର ଫଳ ସ୍ୱରୂପ ମୁଁ ତୁମକୁ ଏକ ପୁରସ୍କାର ଭାବରେ ପ୍ରାପ୍ୟ ହୋଇଛି । ମୁଁ ମୋର ଶତ୍ରୁକୁ ପରାସ୍ତ କରି ମୋର ସମ୍ମାନକୁ ରକ୍ଷା କରିପାରିଛି । ମୋର ସାମରିକ ସାମର୍ଥ୍ୟ ଦେଖି ଲୋକମାନେ ବିମୋହିତ ହୋଇଛନ୍ତି ଓ ମୁଁ ଆନନ୍ଦିତ ଯେ ମୋର ପରିଶ୍ରମ ସାର୍ଥକ ହୋଇଛି । ମୁଁ ରାବଣକୁ ବଧ କରି ମୋର ଅସମ୍ମାନକୁ ନଷ୍ଟ କରିବା ପାଇଁ ଏଠାକୁ ଆସିଥିଲି । ମୁଁ ତୁମ ପାଇଁ ଏହି କଷ୍ଟକର କାର୍ଯ୍ୟ କରିନାହିଁ ।''

''ମୁଁ ତୁମର ଚରିତ୍ରକୁ ସନ୍ଦେହ କରୁଛି । ରାବଣ ତୁମର ସତୀତ୍ୱକୁ ନଷ୍ଟ କରିଥାଇପାରେ । ତୁମର ଦୃଶ୍ୟ ମୋ ପାଇଁ ଅସହ୍ୟ ହେଉଛି । ହେ ଜନକସୂତା, ତୁମ ଇଚ୍ଛାରେ ତୁମେ ଯେଉଁଆଡ଼େ ଚାହିଁବ ଯିବାରେ ମୋର ଦ୍ୱିଧା ନାହିଁ । ସେଥିରେ ମୁଁ କୌଣସି ବାଧା ଦେବି ନାହିଁ । ମୁଁ ଯୁଦ୍ଧକରି ତୁମକୁ ଉଦ୍ଧାର କରିଛି, ତାହାହିଁ ଥିଲା ମୋର ଲକ୍ଷ୍ୟ । ସେହି ଲକ୍ଷ୍ୟ ପୂରଣରେ ମୁଁ ଆନନ୍ଦିତ । ତୁମପରି ଜଣେ ସୁନ୍ଦରୀ ନାରୀଙ୍କୁ ରାବଣ ଉପଭୋଗ ନ କରି ଛାଡ଼ିଥିବ ଏହା ମୁଁ ବିଶ୍ୱାସ କରିପାରୁ ନାହିଁ ।''[୯]

## (୨)

ଗାନ୍ଧୀ ଯେତେବେଳେ ରାମରାଜ୍ୟ ବିଷୟରେ କହୁଛନ୍ତି ସେ କ'ଣ ପ୍ରକୃତରେ ବାଲ୍ମୀକିଙ୍କ ରାମାୟଣରେ ବର୍ଣ୍ଣିତ ରାଜନୈତିକ ବ୍ୟବସ୍ଥାକୁ ବୁଝୁଛନ୍ତି ? ଏହା ସେ ଯେ ବୁଝୁନାହାନ୍ତି ଏହା ସ୍ପଷ୍ଟ ମନେହୁଏ । ଏଠାରେ ଗାନ୍ଧୀଙ୍କ ଲେଖାର ଉଦ୍ଧୃତି ଦିଆଯାଇପାରେ ।

''ରାଜନୈତିକ ସ୍ୱାଧୀନତା ଅର୍ଥ ମୋ ପାଇଁ ବ୍ରିଟିଶ ସଂସଦୀୟ ବ୍ୟବସ୍ଥା ନୁହେଁ, ରୁଷିଆରେ ପ୍ରବର୍ତ୍ତିତ ସମାଜବାଦୀ ଶାସନ ପଦ୍ଧତି ନୁହେଁ କିମ୍ବା ଜର୍ମାନି ବା ଇଟାଲିରେ ପ୍ରବର୍ତ୍ତିତ ଏକଛତ୍ରବାଦୀ ଶାସନ ନୁହେଁ । ମୋର ସ୍ୱାଧୀନତାକୁ ମୁଁ ରାମରାଜ୍ୟ ବୋଲି ମନେକରେ ଯାହା ନୈତିକ କର୍ତ୍ତୃତ୍ୱ ଉପରେ ଆଧାରିତ

ଜନଗଣଙ୍କର ସାର୍ବଭୌମ ଅଟେ ।''[୧୦]

''ପୁନଶ୍ଚ ସ୍ୱରାଜ ଓ ରାମରାଜ୍ୟ ମୋ ପାଇଁ ସମାର୍ଥବୋଧକ । ଏହାର ତାତ୍ପର୍ଯ୍ୟ ପୃଥିବୀରେ ଏକ ଆଦର୍ଶ ଜନରାଜ୍ୟର ପ୍ରତିଷ୍ଠା ।''[୧୧]

ବାସ୍ତବରେ ଗାନ୍ଧୀ ଯେତେଦୂର ସମ୍ଭବ ଏକ ବିକେନ୍ଦ୍ରୀଭୂତ ସ୍ୱାବଲମ୍ବନଶୀଳ ଓ ସ୍ୱୟଂଶାସିତ ଗ୍ରାମ ବା ପଞ୍ଚାୟତ ବ୍ୟବସ୍ଥାକୁ ସମର୍ଥନ କରିଛନ୍ତି । ଥୋରୋଙ୍କ ନୀତି, ''ସେହି ସରକାର ହିଁ ସବୁଠାରୁ ଉତ୍ତମ ଯିଏ ସବୁଠାରୁ କମ୍ ଶାସନ କରିଥାଏ'' ଗାନ୍ଧୀଙ୍କ ପାଇଁ ଗ୍ରହଣଯୋଗ୍ୟ । ସେ ଏକ ଉନ୍ନତ ନୈରାଜ୍ୟବାଦକୁ ତାଙ୍କର ରାଜନୈତିକ ଆଦର୍ଶ ଭାବରେ ଗ୍ରହଣ କରିଛନ୍ତି ।[୧୨]

ବର୍ଣ୍ଣବ୍ୟବସ୍ଥାକୁ ଗାନ୍ଧୀ ସମର୍ଥନ କରିଛନ୍ତି ଯଦିବା ସେ ଏହାର ଏକ ସ୍ୱତନ୍ତ୍ର ବ୍ୟାଖ୍ୟା ଦେଇଛନ୍ତି । ଲୋକମାନଙ୍କର ଜନ୍ମଗତ ଅଭିରୁଚିକୁ ନେଇ ସୁସ୍ଥ ଶ୍ରମ ବିଭାଜନକୁ ସେ ଗ୍ରହଣ କରିଛନ୍ତି । କୌଣସି ପ୍ରକାର ପ୍ରତିଯୋଗିତା ପରିବର୍ତ୍ତେ ଲୋକମାନଙ୍କର ସ୍ୱାଭାବିକ ପ୍ରବୃତ୍ତି ଉପରେ ଆଧାରିତ ଶ୍ରମ ବିଭାଜନ ଜନିତ ଆଦର୍ଶକୁ ସେ ନେଇଛନ୍ତି । ଗୋଟିଏ ସମୟରେ ସେ ସହଭୋଜନ ଓ ଆନ୍ତଃଜାତି ବିବାହ କ୍ଷେତ୍ରରେ ଥିବା ପ୍ରତିବନ୍ଧକକୁ ସମର୍ଥନ କରୁଥିଲେ । ମଣିଷ ଆତ୍ମାର ଶୁଦ୍ଧ ବିକାଶ ପାଇଁ ସେ ସହଭୋଜନ ଓ ଆନ୍ତଃଜାତି ବିବାହକୁ ବିରୋଧ କରିଛନ୍ତି । ଏହି ରକ୍ଷଣଶୀଳ ଭାବନାକୁ ପରେ ସେ ବିରୋଧ କରି ଆନ୍ତଃଜାତି ବିବାହକୁ ପୂର୍ଣ୍ଣ ସମର୍ଥନ କଲେ । ଅସ୍ପୃଶ୍ୟତାକୁ ସେ ଅତି ତୀବ୍ର ଭାବରେ ବିରୋଧ କରିଛନ୍ତି ଓ ଏହାକୁ ହିନ୍ଦୁ ସମାଜର ''କଳଙ୍କ'' ବୋଲି ନେଇଛନ୍ତି । ଯଦିବା ଗାନ୍ଧୀ ଜାତିପ୍ରଥା ଓ ଅସ୍ପୃଶ୍ୟତାକୁ ବିରୋଧ କରିଛନ୍ତି, ସେ ଜନ୍ମଭିତ୍ତିକ ବର୍ଣ୍ଣବ୍ୟବସ୍ଥାକୁ ଅସଙ୍ଗତ ଭାବରେ ସମର୍ଥନ କରିଛନ୍ତି । ସେ ବର୍ଣ୍ଣବ୍ୟବସ୍ଥାର ଏକ ସ୍ୱକୀୟ ବ୍ୟାଖ୍ୟା ଦେଇଛନ୍ତି, ଯଦ୍ୱାରା ବର୍ଣ୍ଣବ୍ୟବସ୍ଥା ସହିତ ଉଚ୍ଚ ନୀଚ ଭେଦଭାବ ବା ଆନ୍ତର୍ଜାତି ବିବାହ କ୍ଷେତ୍ରରେ କୌଣସି ପ୍ରତିବନ୍ଧକ ନାହିଁ ।[୧୩]

ବିଚାରଶୀଳ ଏବଂ ମାନବୀୟ ଦୃଷ୍ଟିକୋଣରୁ ବର୍ଣ୍ଣବ୍ୟବସ୍ଥାକୁ ଏକ ଉନ୍ନତ ବ୍ୟବସ୍ଥା ବୋଲି ଗ୍ରହଣ କରିବା ସମ୍ଭବ ନୁହେଁ । ଗାନ୍ଧୀ ବର୍ଣ୍ଣବ୍ୟବସ୍ଥାକୁ ସମର୍ଥନ କରିବା ବା ରାମ ତଥା ରାମରାଜ୍ୟ ପ୍ରତି ଭାଗବତ ସମର୍ଥନ ଦେବା ସତ୍ତ୍ୱେ ସେ ରାମଙ୍କର ଶମ୍ବୁକ ଶୂଦ୍ରଙ୍କୁ ହତ୍ୟା କରିବା ଘଟଣାକୁ ସମର୍ଥନ କରିବେ ନାହିଁ । ଏହି ପ୍ରସଙ୍ଗ ଉପରେ ସେ ନିଜର ମତ ବ୍ୟକ୍ତ କରି କହିଛନ୍ତି, ''ଜଣେ ଶୂଦ୍ର ବେଦ ଅଧ୍ୟୟନ କରିବାକୁ ସାହସ କରିବାରୁ ରାମଚନ୍ଦ୍ରଙ୍କଦ୍ୱାରା ଦଣ୍ଡିତ ହେବା କାହାଣୀଟିକୁ ମୁଁ ଏକ ପ୍ରକ୍ଷେପ ବୋଲି ମନେ କରୁଛି । ମୁଁ ରାମଙ୍କୁ ଏକ ମର୍ଯ୍ୟାଦାବାଦ ଓ ଆଦର୍ଶ ବ୍ୟକ୍ତି ଭାବରେ ଗ୍ରହଣ କରୁଛି । ମୋ କଳ୍ପନାର ଆଦର୍ଶ

ରାମଙ୍କ ସହିତ କୌଣସି ଐତିହାସିକ ବା ପୌରାଣିକ ଚରିତ୍ରର ସମ୍ବନ୍ଧ ନାହିଁ । ପୁରାଣରେ ବର୍ଣ୍ଣିତ ରାମଙ୍କ ଜୀବନୀ ସହିତ ନାନା ଘଟଣା ହୁଏତ ଗବେଷଣାଦ୍ୱାରା ସଂଶ୍ଲିଷ୍ଟ କରାଯାଇପାରେ । କୌଣସି ଶୂଦ୍ରଙ୍କର ବେଦ ଅଧ୍ୟୟନ ବା ଆଧ୍ୟାତ୍ମିକ କାର୍ଯ୍ୟ ପ୍ରତି ପ୍ରତିବନ୍ଧକ ସୃଷ୍ଟି କରିବା ଘଟଣାକୁ ମୁଁ ଆଦୌ ସମର୍ଥନ କରେ ନାହିଁ ।''[୧୪]

ପୁନଶ୍ଚ ସେ ଲେଖିଛନ୍ତି, ''ଶମ୍ବୁକ ନାମକ ଶୂଦ୍ର ସନ୍ନ୍ୟାସୀ ହେବାକୁ ପ୍ରୟାସ କରିବାରୁ ରାମ ତାର ଶିରଚ୍ଛେଦ କରିଥିବା କାହାଣୀଟିକୁ ମୁଁ ପ୍ରତ୍ୟାଖ୍ୟାନ କରୁଛି । ମୁଁ ଶାସ୍ତ୍ରମାନଙ୍କୁ ସେମାନଙ୍କର ଆକ୍ଷରିକ ଅର୍ଥରେ ଗ୍ରହଣ କରେ ନାହିଁ କିମ୍ବା ସେସବୁକୁ ଇତିହାସ ବୋଲି ବିବେଚନା କରେ ନାହିଁ । ରାମଙ୍କର ଚରିତ୍ର ସହ ଶମ୍ବୁକର ହତ୍ୟା ଘଟଣା ମେଳଖାଏ ନାହିଁ । ବିଭିନ୍ନ ରାମାୟଣରେ ଯାହା କିଛି ବର୍ଣ୍ଣନା ଥାଉନା କାହିଁକି ଜଣେ ଶୂଦ୍ର ବା ଅନ୍ୟ କାହାକୁ ରାମ ଏପରି ହତ୍ୟା କରିବା କଥାକୁ ମୁଁ ଗ୍ରହଣ କରିପାରୁ ନାହିଁ ।''[୧୫]

ବସ୍ତୁତଃ ଗାନ୍ଧୀ ଶମ୍ବୁକ କାହାଣୀଟିକୁ ଏକ ପ୍ରକ୍ଷେପ ଭାବରେ ନେଇଛନ୍ତି । ଅବଶ୍ୟ ଧର୍ମଗ୍ରନ୍ଥମାନଙ୍କରେ ଥିବା ଏହିପରି ଅସୁବିଧାଜନକ କାହାଣୀମାନଙ୍କୁ ପ୍ରକ୍ଷେପ କହି ଏଡ଼ାଇଯିବା ଧର୍ମବିଶ୍ୱାସୀ ଲୋକଙ୍କ ପାଇଁ ସ୍ୱାଭାବିକ ଅଟେ । ସେପରି ହେଲେ ମଧ୍ୟ ଗାନ୍ଧୀ ଯେତେବେଳେ ରାମରାଜ୍ୟ କଥା କହୁଛନ୍ତି ବାଲ୍ମୀକିଙ୍କ ରାମାୟଣରେ ବର୍ଣ୍ଣିତ ସାମାଜିକ ଓ ରାଜନୈତିକ ବ୍ୟବସ୍ଥାକୁ ସେ ଏହାର ଆକ୍ଷରିକ ଅର୍ଥରେ ରାମରାଜ୍ୟ ବୋଲି ନେଇନାହାନ୍ତି ।[୧୬] ବରଂ ସେହି ବ୍ୟବସ୍ଥା ଗାନ୍ଧୀଙ୍କ ପ୍ରଦର୍ଶିତ ସାମାଜିକ ଓ ରାଜନୈତିକ ଆଦର୍ଶଠାରୁ ପୃଥକ ମନେହୁଏ । ଏକ ଆଦର୍ଶ ଜନରାଜ୍ୟ ଓ ବାଲ୍ମୀକିଙ୍କ ପ୍ରଦତ୍ତ ରାମରାଜ୍ୟ ଯେ ସମାର୍ଥବୋଧକ ଏହା କହିବା ମଧ୍ୟ ସମୀଚୀନ ମନେହୁଏ ନାହିଁ । କାରଣ ବାଲ୍ମୀକି ଯେଉଁ ରାମରାଜ୍ୟର ଚିତ୍ର ଦେଇଛନ୍ତି ତାହା ଗଣତାନ୍ତ୍ରିକ ବା ଧର୍ମନିରପେକ୍ଷ ନୁହେଁ । ଏପରିକି ଗାନ୍ଧୀଙ୍କ ପ୍ରଦର୍ଶିତ ସାମାଜିକ ପ୍ରକଳ୍ପ ମାନଦଣ୍ଡରୁ ଏହା ଏକ ଆଦର୍ଶ ବ୍ୟବସ୍ଥା ନୁହେଁ । ଗାନ୍ଧୀ ଯେଉଁ ନୂତନ ସାମାଜିକ ଓ ରାଜନୈତିକ ବିକଳ୍ପ ବିଷୟରେ କହିଛନ୍ତି ସେ କ୍ଷେତ୍ରରେ ସେ ତାଙ୍କର ଭାବନାକୁ ସ୍ପଷ୍ଟ ଓ ଅଧିକ ନିରପେକ୍ଷ ଭାବନା ମାଧ୍ୟମରେ ବ୍ୟକ୍ତ କରିଥିଲେ ଭଲ ହୋଇଥାନ୍ତା । ଗ୍ରାମ ସ୍ୱରାଜ ପ୍ରତୀତି ଏ କ୍ଷେତ୍ରରେ ଅଧିକ ଗ୍ରହଣଯୋଗ୍ୟ ମନେହୁଏ । କିନ୍ତୁ ସେ ବରାବର ରାମରାଜ୍ୟ ଶବ୍ଦ ବ୍ୟବହାର କରିଛନ୍ତି । ସେପରି କରିବାର କାରଣ କ'ଣ ହୋଇପାରେ ?

ରାମରାଜ୍ୟ ତାଙ୍କର ପ୍ରକଳ୍ପିତ ସାମାଜିକ ବ୍ୟବସ୍ଥା ସହିତ ସମତାଳଯୁକ୍ତ ନ ହେଲେ ମଧ୍ୟ ଏହାର ଆବେଗିକ ଆବେଦନ ରହୁଥିବାରୁ ଓ ବିଶେଷତଃ

ସାଧାରଣ ଜନତାଙ୍କୁ ଏହା ସ୍ପର୍ଶ କରିବାର ସମ୍ଭାବନା ଥିବାରୁ ଗାନ୍ଧୀ ରାମରାଜ୍ୟ ଶବ୍ଦ ପ୍ରୟୋଗ କରିବା ଅନୁମାନ କରାଯାଏ । ଏହା ହିଁ ସମସ୍ୟାଟିର ଗୁରୁତ୍ୱ ପ୍ରତି ଆମର ଦୃଷ୍ଟି ଆକର୍ଷଣ କରିଥାଏ । ରାମରାଜ୍ୟ ଜଣେ ରକ୍ଷଣଶୀଳ ଓ ଧର୍ମାନ୍ଧ ହିନ୍ଦୁଙ୍କୁ ହୁଏତ ଆକର୍ଷଣୀୟ ମନେ ହୋଇପାରେ କିନ୍ତୁ ଜଣେ ବୌଦ୍ଧ, ଖ୍ରୀଷ୍ଟିଆନ, ମୁସଲମାନ, ହେତୁବାଦୀ, ମାନବବାଦୀ ଓ ଏପରିକି ରାଜତନ୍ତ୍ର ଓ ବର୍ଣ୍ଣବ୍ୟବସ୍ଥାକୁ ଗ୍ରହଣ କରୁନଥିବା ଜଣେ ସଚେତନ ହିନ୍ଦୁଙ୍କୁ କାହିଁକି ଏହା ଆକର୍ଷଣୀୟ ମନେହେବ ?

ଏକ ନିରପେକ୍ଷ ରାଜନୈତିକ ଆଦର୍ଶକୁ ବୁଝାଇବାକୁ ଯାଇ ଗାନ୍ଧୀ ରାମରାଜ୍ୟ ପରି ଏକ ଧାର୍ମିକ ଶବ୍ଦ ବ୍ୟବହାର କରିଥିବା ଯୋଗୁଁ ଧର୍ମ ଓ ରାଜନୀତିକୁ ମିଶାଇ ଦୁର୍ବୋଧତା ସୃଷ୍ଟି କରିଛନ୍ତି । ବସ୍ତୁତଃ ସେ ତାଙ୍କର ଭାବନା କେବଳ ରକ୍ଷଣଶୀଳ ହିନ୍ଦୁଙ୍କ ଭିତରେ ସୀମିତ ରଖିଛନ୍ତି । ଧର୍ମକୁ ଆଧାର କରି ଏକ ନିରପେକ୍ଷ ରାଜନୈତିକ ଲକ୍ଷ୍ୟ ସାଧନର ପ୍ରୟାସ ଯୋଗୁଁ ତାଙ୍କୁ ଜଣେ ଧର୍ମାନ୍ଧ ହିନ୍ଦୁଙ୍କ ଦ୍ୱାରା ହିଁ ନିହତ ହେବାକୁ ହୋଇଛି । ସାଂପ୍ରତିକ ସ୍ଥିତିରେ ବି.ଜେ.ପି. ଓ ଆର.ଏସ.ଏସ. ଗାନ୍ଧୀଙ୍କ ଲେଖାରୁ ନାନା ଉଦ୍ଧୃତି ନେଇ ରାଜନୈତିକ କ୍ଷମତା ହାସଲ ପାଇଁ ପ୍ରୟାସ କରୁଛନ୍ତି । ସେମାନେ ରାମ ଓ ହିନ୍ଦୁଧର୍ମକୁ ସାଧନ ଭାବରେ ରାଜନୈତିକ ଲକ୍ଷ୍ୟ ହାସଲ ପାଇଁ ନେଉଛନ୍ତି । ଏହି ପରିପ୍ରେକ୍ଷୀରେ ଗାନ୍ଧୀଙ୍କ ରାମରାଜ୍ୟ ବର୍ଣ୍ଣନାତ୍ମକ ବା ଭାବାତ୍ମକ କୌଣସି ମାନଦଣ୍ଡରୁ ଯେ ଗ୍ରହଣଯୋଗ୍ୟ ନୁହେଁ ଏହା ନିଃସନ୍ଦେହ ମନେହୁଏ । ଧର୍ମ ଓ ରାଜନୀତିକୁ ମିଶାଇ ଓ ଧର୍ମନିରପେକ୍ଷ ମୂଲ୍ୟବୋଧଠାରୁ ଅପସରି ଯାଇ ରାଜନୀତି କରୁଥିବା ବି.ଜେ.ପି. ପ୍ରତି ଅଭିଯୋଗ ଯଥାର୍ଥ ମନେହୁଏ । କିନ୍ତୁ ଏହି ତ୍ରୁଟି ଏକ ବିଭକ୍ତ ଭାରତର ଜନକଙ୍କ ବିଚାର କ୍ଷେତ୍ରରେ ମଧ୍ୟ ଦେଖାଯାଏ ।

## ଟିପ୍ପଣୀ ଓ ସହାୟକ ପୁସ୍ତକ

୧. ମୁଁ ରାମ ବା ବାଲ୍ମୀକିଙ୍କୁ ଐତିହାସିକ ବ୍ୟକ୍ତି ଭାବେ ଗ୍ରହଣ କରେ ନାହିଁ ।

୨. ଡଃ ବାବାସାହେବ ଆମ୍ବେଦକରଙ୍କ ''ରିଡ୍‌ଲସ୍ ଇନ ହିନ୍ଦୁଇଜମ''; ଡଃ ବାବାସାହେବ ଆମ୍ବେଦକର ରାଇଟିଙ୍ଗସ୍ ଆଣ୍ଡ ସ୍ପିଚେସ୍'' ପୁସ୍ତକ, ଚତୁର୍ଥ ଖଣ୍ଡ, ପୃଷ୍ଠା ୩୩୨ ଦ୍ରଷ୍ଟବ୍ୟ ।

୩. ମନୁସ୍ମୃତି, ୨/୧୧୩, ୧୦/୧ ।

୪. ମନୁସ୍ମୃତି, ୧/୯୧ ।

୫. ମନୁସ୍ମୃତି, ୧୦/୧୨୩, ୧୧/୨୪।
୬. ମନୁସ୍ମୃତି, ୮/୪୧୩।
୭. ମନୁସ୍ମୃତି, ୧୦/୯୬।
୮. ବାବାସାହେବ ଆମ୍ବେଦକରଙ୍କ ପୂର୍ବ ସୂଚିତ ପୁସ୍ତକ, ପୃଷ୍ଠା ୩୨୮ ଦ୍ରଷ୍ଟବ୍ୟ।
୯. ଉପର ସୂଚିତ ପୁସ୍ତକ, ପୃଷ୍ଠା ୩୨୭।
୧୦. ନିର୍ମଳ କୁମାର ବୋଷଙ୍କ ''ସିଲେକସନସ୍ ଫ୍ରମ ଗାନ୍ଧୀ'' ପୁସ୍ତକ, ପୃଷ୍ଠା ୧୧୫।
୧୧. ପୂର୍ବ ସୂଚିତ ପୁସ୍ତକ, ପୃଷ୍ଠା ୨୫୫।
୧୨. ଲୁଇସ ଫିସରଙ୍କ ପୁସ୍ତକ, ''ଗାନ୍ଧୀ''।
୧୩. ଲୁଇସ ଫିସରଙ୍କ ପୁସ୍ତକ, ''ଗାନ୍ଧୀ'', ପୃଷ୍ଠା ୮୬, ୮୭। ନିର୍ମଳ କୁମାର ବୋଷଙ୍କ ପୂର୍ବ ସୂଚିତ ପୁସ୍ତକ, ପୃଷ୍ଠା ୪୦ ମଧ୍ୟ ଦ୍ରଷ୍ଟବ୍ୟ। ମୋର ରଚିତ ପୁସ୍ତକ ''ହ୍ୱାଏ ଆଇ ଆମ ନଟ୍ ଏ ହିନ୍ଦୁ'' ପୁସ୍ତକରେ ଏ ସମ୍ବନ୍ଧୀୟ ବିସ୍ତୃତ ବିବରଣୀ ମଧ୍ୟ ରହିଛି।
୧୪. ମହାତ୍ମା ଗାନ୍ଧୀଙ୍କ ''ହିନ୍ଦୁଧର୍ମ'' ପୁସ୍ତକର 'ଦି ହିନ୍ଦୁଇ' ପ୍ରବନ୍ଧ, ପୃଷ୍ଠା ୩୯, ୪୦ ଦ୍ରଷ୍ଟବ୍ୟ।
୧୫. ମହାତ୍ମା ଗାନ୍ଧୀଙ୍କ ''ହିନ୍ଦୁଧର୍ମ'' ପୁସ୍ତକର 'ବର୍ଣ୍ଣାଶ୍ରମ' ପ୍ରବନ୍ଧ, ପୃଷ୍ଠା ୫୬ ଦ୍ରଷ୍ଟବ୍ୟ।
୧୬. ଉପର ସୂଚିତ ପୁସ୍ତକ।



# ମୁଁ କାହିଁକି ଖ୍ରୀଷ୍ଟିଆନ ନୁହେଁ

ବର୍ଟ୍ରାଣ୍ଡ ରସେଲ

ମୁଁ ଆଜି ସନ୍ଧ୍ୟାରେ ଯେଉଁ ବିଷୟଟି ଉପରେ କହିବି ସେ ସମ୍ପର୍କରେ ଆପଣଙ୍କର ସଭାପତି ପୂର୍ବରୁ ସୂଚନା ଦେଇଛନ୍ତି । ମୋର ବକ୍ତବ୍ୟର ବିଷୟ ହେଉଛି ''ମୁଁ କାହିଁକି ଖ୍ରୀଷ୍ଟିଆନ ନୁହେଁ ।'' ପ୍ରଥମରେ ''ଖ୍ରୀଷ୍ଟିଆନ'' କହିବା ଦ୍ୱାରା ଜଣେ କ'ଣ ବୁଝେ ସେ ସମ୍ପର୍କରେ ବ୍ୟକ୍ତ କରିବା ପାଇଁ ପ୍ରୟାସ କରିବା ଯଥାର୍ଥ ହେବ । ସଂପ୍ରତି ବହୁ ବ୍ୟକ୍ତି ଏହି ଶବ୍ଦଟିକୁ ଏକ ବ୍ୟାପକ ଅର୍ଥରେ ବ୍ୟବହାର କରିଥାନ୍ତି । କେତେକ ଏହାକୁ ଏପରି ଅର୍ଥରେ ବ୍ୟବହାର କରନ୍ତି ଯଦ୍ୱାରା ଯେଉଁମାନେ ଏକ ନୀତିପୂର୍ଣ୍ଣ ଜୀବନଯାପନ ପାଇଁ ପ୍ରୟାସ କରନ୍ତି ସେମାନଙ୍କୁ ଖ୍ରୀଷ୍ଟିଆନ କହୁଯାଇ ପାରିବ । ସେହି ମାନଦଣ୍ଡରେ ପ୍ରତ୍ୟେକ ଧର୍ମମତ ବା ସଂପ୍ରଦାୟ ମଧ୍ୟରେ ଖ୍ରୀଷ୍ଟିଆନ ରହିଥିବା ସମ୍ଭବ । କିନ୍ତୁ ତାହା ଖ୍ରୀଷ୍ଟିଆନ ଶବ୍ଦର ଯଥାର୍ଥ ଅର୍ଥ ବୋଲି ମୁଁ ବିଚାର କରୁନାହିଁ । କାରଣ ତା'ହେଲେ ଯେଉଁମାନେ ଖ୍ରୀଷ୍ଟିଆନ ନୁହଁନ୍ତି– ଯଥା, ବୌଦ୍ଧ, କନ୍‌ଫୁସୀୟ, ମୁସଲମାନ ଇତ୍ୟାଦି– ସେମାନେ ଉନ୍ନତ ଜୀବନ ପାଇଁ ପ୍ରୟାସୀ ନୁହଁନ୍ତି ବୋଲି କୁହାଯିବ । ନିଜର ବିଶ୍ୱାସ ଅନୁଯାୟୀ ଏକ ମାର୍ଜିତ ବା ଶିଷ୍ଟ ଜୀବନ ବଞ୍ଚିବା ପାଇଁ ସଚେଷ୍ଟ ହେବା ବ୍ୟକ୍ତିଙ୍କୁ ଖ୍ରୀଷ୍ଟିଆନ କହିବା ଯଥାର୍ଥ ବୋଲି ମୁଁ ଗ୍ରହଣ କରୁନାହିଁ । ମୋ ମତରେ ଆପଣ ନିଜକୁ ଖ୍ରୀଷ୍ଟିଆନ କହିବା ବେଳେ ଆପଣଙ୍କର କେତେକ ନିର୍ଦ୍ଦିଷ୍ଟ ବିଶ୍ୱାସ ରହିବା ଆବଶ୍ୟକ । ସେଣ୍ଟ ଅଗଷ୍ଟିନ୍ ଓ ସେଣ୍ଟ ଥୋମାସ ଆକୁଇନସଙ୍କ ସମୟରେ ଏହି ଶବ୍ଦର ଯେପରି ଏକ ଓଜସ୍ୱୀ ଅର୍ଥ ଥିଲା ସେହି ଅର୍ଥରେ ସଂପ୍ରତି ଏହା ବୁଝାଯାଏ ନାହିଁ । ସେହି ସମୟରେ କୌଣସି ବ୍ୟକ୍ତି ନିଜକୁ ଖ୍ରୀଷ୍ଟିଆନ କହିବାଦ୍ୱାରା ତାର ଯଥାର୍ଥ ଅର୍ଥ ସହଜରେ ଅନୁମାନ କରାଯାଉଥିଲା । ବିଭିନ୍ନ ମତ ଇତ୍ୟାଦିକୁ ନେଇ ଶୃଙ୍ଖଳିତ ଭାବେ ଖ୍ରୀଷ୍ଟୀୟ ଧର୍ମମତର ବିକାଶ ହୋଇଥିଲା

ଓ ସେହି ଧର୍ମମତର ପ୍ରତ୍ୟେକଟି କଥାକୁ ଅତି ନିଷ୍ଠାର ସହ ବିଶ୍ୱାସ କରାଯାଉଥିଲା ।

## ଖ୍ରୀଷ୍ଟିଆନ ହେବା କ'ଣ ବୁଝାଏ ?

ସଂପ୍ରତି ଏହାର ଅର୍ଥ ପୂର୍ବପରି ନାହିଁ । ଖ୍ରୀଷ୍ଟଧର୍ମ କହିବାବେଳେ ଏହାର ଅର୍ଥରେ କିଛି ଅସ୍ପଷ୍ଟତା ରହିବା ଦେଖାଯାଏ । ମୋ ମତରେ ଆପଣ ନିଜକୁ ଖ୍ରୀଷ୍ଟିଆନ କହିବାବେଳେ ଅନ୍ତତଃ ଦୁଇଟି ବିଷୟ ଗ୍ରହଣ କରିବେ ଯାହା ଖ୍ରୀଷ୍ଟଧର୍ମ ପାଇଁ ମୌଳିକ ଅଟେ । ପ୍ରଥମରେ, ଯାହା ହୁଏତ ଏକ ସୈଦ୍ଧାନ୍ତିକ ମତ ଅଟେ, ଆପଣ ଈଶ୍ୱର ଓ ଆତ୍ମାର ଅମରତ୍ୱରେ ବିଶ୍ୱାସ କରିବା ଆବଶ୍ୟକ । ଆପଣ ଏଥିରେ ବିଶ୍ୱାସ ନ କଲେ ନିଜକୁ ଖ୍ରୀଷ୍ଟିଆନ କହିପାରିବେ ମୁଁ ତାହା ଭାବୁନାହିଁ । ଏତଦ୍‌ବ୍ୟତୀତ ଖ୍ରୀଷ୍ଟଧର୍ମ ନାମରୁ ଯାହା ବୁଝାଯାଏ, ଆପଣ ଖ୍ରୀଷ୍ଟଙ୍କ ବିଷୟରେ କେତେକ ବିଶ୍ୱାସ ପୋଷଣ କରିବା ଦରକାର । ମୁସଲମାନମାନେ ସେମାନେ ନିଜକୁ ଖ୍ରୀଷ୍ଟିଆନ କୁହନ୍ତି ନାହିଁ । ମୋ ମତରେ ସର୍ବନିମ୍ନ ବିଶ୍ୱାସ ଭାବେ ଯୀଶୁଖ୍ରୀଷ୍ଟ ଦିବ୍ୟ ନ ହେଲେ ମଧ୍ୟ ଅନ୍ତତଃ ମହାନ ଓ ସମସ୍ତଙ୍କ ଅପେକ୍ଷା ବିଜ୍ଞ ବୋଲି ଗ୍ରହଣ କରିବା ଦରକାର । ଯଦି ଅନ୍ତତଃ ଯୀଶୁଙ୍କ ସମ୍ପର୍କରେ ଆପଣ ଏତିକି ମଧ୍ୟ ବିଶ୍ୱାସ କରୁ ନାହାନ୍ତି ତେବେ ଆପଣ ନିଜକୁ ଖ୍ରୀଷ୍ଟିଆନ କହିବାର କୌଣସି ଯଥାର୍ଥତା ଅଛି ବୋଲି ମୁଁ ଭାବୁ ନାହିଁ । ଅବଶ୍ୟ ହ୍ୱିଟାକରଙ୍କର ପଞ୍ଜିକା ବା ଭୂଗୋଳ ପୁସ୍ତକମାନଙ୍କରେ ଅନ୍ୟ ଏକ ଅର୍ଥ ଦିଆଯାଇଛି । ସେଠାରେ ପୃଥିବୀର ଜନସମୂହକୁ ଖ୍ରୀଷ୍ଟିଆନ, ମୁସଲମାନ, ବୌଦ୍ଧ, ଜଡ଼ପୂଜକ ଇତ୍ୟାଦିରେ ବିଭକ୍ତ କରାଯାଇଛି ଓ ସେହି ଅନୁଯାୟୀ ଆମେ ସମସ୍ତେ ଖ୍ରୀଷ୍ଟିଆନ । ଭୂଗୋଳ ପୁସ୍ତକଗୁଡ଼ିକରେ ଭୌଗୋଳିକ ସ୍ଥିତି ଅନୁଯାୟୀ ଆମ ସମସ୍ତଙ୍କୁ ଖ୍ରୀଷ୍ଟିଆନ ବୋଲି ଅଭିହିତ କରାଯାଇଛି, ଯାହାକୁ ଆମେ ସହଜରେ ଏଡ଼ାଇ ଦେଇ ପାରିବା । ସୁତରାଂ ''ମୁଁ ଖ୍ରୀଷ୍ଟିଆନ ନୁହେଁ'' ବୋଲି ଯେତେବେଳେ ଆପଣଙ୍କୁ କହୁଛି ସେତେବେଳେ ମୁଁ ଦୁଇଟି କଥା ଆପଣଙ୍କ ପାଖରେ ଉପସ୍ଥାପନ କରିବାକୁ ଚାହୁଁଛି । ପ୍ରଥମରେ ମୁଁ କାହିଁକି ଈଶ୍ୱର ଓ ଅମରତ୍ୱରେ ବିଶ୍ୱାସ କରେ ନାହିଁ ଓ ଦ୍ୱିତୀୟରେ ଯୀଶୁଖ୍ରୀଷ୍ଟ ଏକ ମହାନ ବ୍ୟକ୍ତି ଓ ସମସ୍ତଙ୍କ ଅପେକ୍ଷା ବିଜ୍ଞ ବୋଲି ମୁଁ ଗ୍ରହଣ କରେ ନାହିଁ ଯଦିବା ମୁଁ ତାଙ୍କର ନୈତିକ ମହାନତାକୁ ଯଥେଷ୍ଟ ଅଧିକ ମୂଲ୍ୟ ଦେଇଥାଏ ।

ଅତୀତରେ ଧର୍ମର ଅବିଶ୍ୱାସୀ ବ୍ୟକ୍ତିଗଣଙ୍କ ପରି ମୁଁ ଖ୍ରୀଷ୍ଟିଆନ ଧର୍ମର ଏକ ନମନୀୟ ସଂଜ୍ଞା ଦେବାକୁ ଚାହୁଁ ନାହିଁ । ଅତୀତରେ ଏହାର ଅର୍ଥ ବହୁ

ବ୍ୟାପକ ଥିଲା । ଉଦାହରଣସ୍ୱରୂପ ନର୍କର ଅବସ୍ଥିତିରେ ବିଶ୍ୱାସ ଧର୍ମ ଧାରଣାର ଅନ୍ତର୍ଭୁକ୍ତ ଥିଲା । ସାଂପ୍ରତିକ ସମୟ ପର୍ଯ୍ୟନ୍ତ ଚିରନ୍ତନ ନର୍କ ଅଗ୍ନିରେ ଆସ୍ଥା ଖ୍ରୀଷ୍ଟୀୟ ବିଶ୍ୱାସର ଏକ ମୌଳିକ ଅଙ୍ଗ ହୋଇ ରହିଥିଲା । ସର୍ବୋଚ୍ଚ ନ୍ୟାୟାଳୟର ନିଷ୍ପତ୍ତି ଯୋଗୁଁ ଏହି ଦେଶରେ କିପରି ଏ ବିଶ୍ୱାସ ଧର୍ମର ଅନ୍ତର୍ଭୁକ୍ତ ହୋଇ ରହିଲା ନାହିଁ ତାହା ଆପଣମାନେ ଜାଣନ୍ତି । ସର୍ବୋଚ୍ଚ ନ୍ୟାୟାଳୟର ନିଷ୍ପତ୍ତି ସହିତ କାଣ୍ଟରବେରୀର ଆର୍କବିଶପ ଓ ୟର୍କର ଆର୍କବିଶପ ସହମତ ହୋଇ ନ ଥିଲେ । କିନ୍ତ ଏହି ଦେଶରେ ସଂସଦର ଆଇନ ଦ୍ୱାରା ଧର୍ମ ବିଷୟର ନିଷ୍ପତ୍ତି ହେଉଥିବାରୁ ସର୍ବୋଚ୍ଚ ନ୍ୟାୟାଳୟ ବିଶପଙ୍କର ମତକୁ ଅତିକ୍ରମ କରିବାରେ ସଫଳ ହୋଇଥିଲା । ଫଳରେ ଖ୍ରୀଷ୍ଟଧର୍ମରେ ନର୍କର ଭାବନା ଆବଶ୍ୟକ ହୋଇରହିଲା ନାହିଁ । ସୁତରାଂ ଜଣେ ଖ୍ରୀଷ୍ଟିଆନ ଯେ ନର୍କରେ ବିଶ୍ୱାସ କରିବା ଅବଶ୍ୟମ୍ଭାବୀ ଏହା ମୁଁ ବିଶ୍ୱାସ କରୁ ନାହିଁ ।

## ଈଶ୍ୱରଙ୍କର ଅସ୍ତିତ୍ୱ

ଈଶ୍ୱରଙ୍କର ଅସ୍ତିତ୍ୱ ସମ୍ପର୍କିତ ପ୍ରଶ୍ନ ଏକ ଜଟିଳ ଓ ଗୁରୁତର ପ୍ରଶ୍ନ । ଏହି ପ୍ରଶ୍ନକୁ ବିସ୍ତୃତ ଆଲୋଚନା କରିବାକୁ ହେଲେ ପରିକଳ୍ପିତ ସ୍ୱର୍ଗରାଜ୍ୟର ସମ୍ଭାବନା ପର୍ଯ୍ୟନ୍ତ ଆପଣଙ୍କୁ ଅପେକ୍ଷା କରିବାକୁ ହେବ । ସୁତରାଂ ଏହି ପ୍ରଶ୍ନକୁ ମୁଁ ସଂକ୍ଷେପରେ ଆଲୋଚନା କରିବାକୁ ଯାଉଥିବାରୁ ଆପଣମାନେ ମୋତେ କ୍ଷମା କରିବେ । କାଥୋଲିକ ଚର୍ଚ୍ଚ ଅନୁଯାୟୀ ଈଶ୍ୱରଙ୍କର ଅସ୍ତିତ୍ୱକୁ ଯୁକ୍ତିଦ୍ୱାରା ପ୍ରମାଣ କରାଯିବା ସମ୍ଭବ । ସେମାନଙ୍କର ନାନା ଧର୍ମ ସିଦ୍ଧାନ୍ତ ଭିତରେ ଏହି ମତଟି ଯେ କୌତୂହଳପ୍ରଦ ତାହା ଆପଣମାନେ ଜାଣନ୍ତି । ଗୋଟିଏ ସମୟରେ ମୁକ୍ତଚିନ୍ତକମାନେ ଯୁକ୍ତି କରୁଥିଲେ ଯେ ଈଶ୍ୱରଙ୍କ ଅସ୍ତିତ୍ୱ ବିରୁଦ୍ଧରେ ଯୁକ୍ତିର ଅବତାରଣା କରାଯାଇ ପାରିବ ଯଦିବା ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ସେମାନେ ବିଶ୍ୱାସ ପୋଷଣ କରୁଥିଲେ । ଫଳରେ ଈଶ୍ୱରଙ୍କୁ ବିଶ୍ୱାସ ନେଇ ନାନା କାରଣ ବାହାର କରିବା ସହିତ ଈଶ୍ୱରଙ୍କ ଅସ୍ତିତ୍ୱ ବିରୁଦ୍ଧରେ ମଧ୍ୟ ବିଭିନ୍ନ ପ୍ରମାଣ ବିଷୟରେ ଚିନ୍ତା କରୁଥିଲେ । ମୁକ୍ତଚିନ୍ତକଙ୍କର ଏହି ସବୁ ଭାବନାକୁ ପରାଭୂତ କରି ବନ୍ଦ କରିବା ପାଇଁ କାଥୋଲିକ ଚର୍ଚ୍ଚ ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରମାଣ କରିବାକୁ ଚାହିଁଥିଲେ । ସେମାନେ ଏପରି କେତେକ ଯୁକ୍ତିର ଅବତାରଣା କରିଥିଲେ ଯାହା ସେମାନଙ୍କ ଭାବନାନୁଯାୟୀ ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରମାଣ କରିପାରିବ । ଯଦିବା ଏ ସମ୍ବନ୍ଧରେ ନାନା ଯୁକ୍ତି ରହିଛି ମୁଁ କେବଳ କେତେକ ମୁଖ୍ୟ ଯୁକ୍ତିକୁ ଏଠାରେ ବ୍ୟାଖ୍ୟା କରିବି ।

## ଆଦିକାରଣ ଯୁକ୍ତି

ଈଶ୍ୱରଙ୍କ ଅସ୍ତିତ୍ୱ ସଂପର୍କରେ ସରଳ ଓ ସହଜତମ ଯୁକ୍ତିଟି ହେଲା, ''ଆଦିକାରଣ ଯୁକ୍ତି'' । ଏହା କୁହାଯାଏ ଯେ ଏ ଜଗତରେ ପ୍ରତ୍ୟେକ ବସ୍ତୁର ଏକ କାରଣ ରହିଛି ଓ କାରଣର କାରଣ ଖୋଜି ଖୋଜି ଗଲେ ଆମେ ଶେଷରେ ଏକ ଆଦିକାରଣରେ ଉପନୀତ ହେବା ଓ ସେହି ଆଦିକାରଣ ହିଁ ହେଉଛି ଈଶ୍ୱର । ମୋ ମତରେ ସଂପ୍ରତି ଏହି ଯୁକ୍ତି ଏତେ ଗୁରୁତ୍ୱପୂର୍ଣ୍ଣ ନୁହେଁ ଯାହାକି ଅତୀତରେ ଏତେ ମହତ୍ତ୍ୱପୂର୍ଣ୍ଣ ମନେ ହେଉଥିଲା । ଏହାର କାରଣ ହେଉଛି ''କାର୍ଯ୍ୟ କାରଣ'' ନେଇ ଅତୀତରେ ଯେଉଁ ଭାବନା ଥିଲା ତାହା ବର୍ତ୍ତମାନ ସେହି ଭାବରେ ବୁଝାଯାଉ ନାହିଁ । ଦାର୍ଶନିକ ଓ ବୈଜ୍ଞାନିକମାନେ ଏହି 'କାର୍ଯ୍ୟ-କାରଣ' ପ୍ରତୀତି ଉପରେ ନୂତନ ବିଶ୍ଳେଷଣ କରିଛନ୍ତି । ଅତୀତରେ ଏହା ଯେପରି ଏକ ମୂଳ-କାରଣ ସ୍ତରକୁ ଏହି ଯୁକ୍ତିଟିକୁ ପ୍ରସାରିତ କରି ନେଉଥିଲା ତାହା ସଂପ୍ରତି ବୈଧ ବୋଲି ଗ୍ରହଣଯୋଗ୍ୟ ହେଉନାହିଁ । ମୁଁ ଯେତେବେଳେ ଯୁବକ ଥିଲି ଏହି 'ଆଦିକାରଣ' ଯୁକ୍ତି ସଂପର୍କରେ ମୁଁ ଗଭୀର ଭାବେ ଅନୁଶୀଳନ କରି ଏହାକୁ ନେଇ ବିତର୍କ କରୁଥିଲି । ଏପରିକି ମୋତେ ଅଠର ବର୍ଷ ହେବା ପର୍ଯ୍ୟନ୍ତ ଏହି ଯୁକ୍ତିଟିକୁ ମୁଁ ଗ୍ରହଣ କରି ନେଉଥିଲି । ସେହି ସମୟରେ ମୁଁ ଜନ ଷ୍ଟୁଆର୍ଟ ମିଲଙ୍କର 'ଆତ୍ମ ଜୀବନୀ' ପଢ଼ିଲି ଓ ସେହି ପୁସ୍ତକରେ ଏହି ବାକ୍ୟଟି ଥିବାର ଦେଖିଲି, ''ମୋର ବାପା ମୋତେ କହିଥିଲେ ଯେ– 'ମୋତେ କିଏ କରିଛି ?' ପ୍ରଶ୍ନଟିର ଉତ୍ତର ଦେବା ସମ୍ଭବ ନୁହେଁ, କାରଣ ଏହି ପ୍ରଶ୍ନରୁ ତତ୍‌କ୍ଷଣାତ 'ଈଶ୍ୱରଙ୍କୁ କିଏ କରିଛି ?' ପ୍ରଶ୍ନ ମଧ୍ୟ ଆସିପାରିବ ।'' ଏହି ସାଧାରଣ ବକ୍ତବ୍ୟଟି ଆଦିକାରଣ ଯୁକ୍ତି କ୍ଷେତ୍ରରେ ରହିଥିବା ତର୍କଦୋଷ ବିଷୟରେ ମୋତେ ଅବଗତ କରାଇ ପାରିଥିଲା ଯେ ଯଦି ପ୍ରତ୍ୟେକର ଏକ କାରଣ ରହିବା ନିଶ୍ଚିତ ତେବେ ଈଶ୍ୱରଙ୍କର ମଧ୍ୟ ଏକ କାରଣ ଥିବ । ଯଦି ବିନା କରଣରେ କିଛି ରହିବା ସମ୍ଭବ ତେବେ ଏହି ଜଗତକୁ ଈଶ୍ୱର ଭାବେ ଆଦିକାରଣ ବୋଲି ନିଆଯାଇ ପାରିବ, ସୁତରାଂ ଏହି ଯୁକ୍ତିରେ କୌଣସି ବୈଧତା ରହିପାରିବ ନାହିଁ । ଏହି ଯୁକ୍ତି ଠିକ୍ ଏକ ଭାରତୀୟଙ୍କ ମତ ପରି ବୋଧ ହୁଏ । ଭାରତୀୟଙ୍କ ମତରେ ପୃଥିବୀ ଏକ ହାତୀ ଉପରେ ରହିଛି ଓ ହାତୀଟି ଏକ କଚ୍ଛପ ଉପରେ ଅବସ୍ଥାନ କରିଛି; ପୁନଶ୍ଚ ''କଇଁଛ କାହା ଉପରେ ରହିଛି ?'' ପ୍ରଶ୍ନର ଉତ୍ତରରେ ଭାରତୀୟ କହନ୍ତି, ''ଏହି ପ୍ରସଙ୍ଗକୁ ପରିବର୍ତ୍ତନ କଲେ କିପରି ହେବ ।'' ଏହି ଯୁକ୍ତିଠାରୁ ସେ ଯୁକ୍ତି କୌଣସିମତେ ଉନ୍ନତ ନୁହେଁ । କୌଣସି କାରଣ ନ ଥାଇ ଜଗତ ରହିବା ଯେପରି ଅବାନ୍ତର ନୁହେଁ, ସେହିପରି ଏହା

ଅନାଦି କାଳରୁ  ରହିବା ମଧ୍ୟ ଅର୍ଥଶୂନ୍ୟ ନୁହେଁ । ଏହି ଜଗତର ଏକ ଉତ୍ପତ୍ତିକାଳ ରହିଛି ବୋଲି କହିବା ପଶ୍ଚାତରେ ଯୁକ୍ତିଶୀଳ କାରଣ ନାହିଁ । ବସ୍ତୁମାନଙ୍କର ଏକ ଉତ୍ପତ୍ତି ସମୟ ରହିଛି ଭାବନା ଆମ କଳ୍ପନାର ଦୈନତାକୁ ହିଁ ସୂଚାଇ ଥାଏ । ସୁତରାଂ ଆଦିକାରଣ ପ୍ରସଙ୍ଗରେ ସମୟ ନଷ୍ଟ କରିବା ଅନାବଶ୍ୟକ ମନେହୁଏ ।

## ପ୍ରାକୃତିକ ନିୟମ ଯୁକ୍ତି

ପ୍ରାକୃତିକ ନିୟମକୁ ଆଧାର କରି ଈଶ୍ୱରଙ୍କର ଅସ୍ତିତ୍ୱ ସମ୍ପର୍କରେ ସାଧାରଣତଃ ଏକ ଯୁକ୍ତି ଦିଆଯାଇଥାଏ । ବିଶେଷକରି ନିଉଟନଙ୍କର ପ୍ରଭାବ ଓ ସୃଷ୍ଟିର ଉତ୍ପତ୍ତି ସଂକ୍ରାନ୍ତୀୟ ମତର ଆଧାର ଉପରେ ଅଷ୍ଟାଦଶ ଶତାବ୍ଦୀରେ ଏହି ଯୁକ୍ତି ବେଶ୍ ଆଦୃତ ହୋଇଥିଲା । ମହାକର୍ଷଣ ନିୟମ ଅନୁଯାୟୀ ଗ୍ରହଗୁଡ଼ିକ ସୂର୍ଯ୍ୟଙ୍କ ଚତୁର୍ପାର୍ଶ୍ୱରେ ଘୂର୍ଣନ କରୁଥିବା ପର୍ଯ୍ୟବେକ୍ଷଣରୁ ଲୋକମାନେ ଚିନ୍ତାକଲେ ଯେ ଈଶ୍ୱରଙ୍କ ନିର୍ଦ୍ଦେଶକ୍ରମେ ଗ୍ରହଗୁଡ଼ିକ ଏପରି ନିୟମ ଅନୁସାରେ ଘୂରୁଛନ୍ତି । ଏହିପ୍ରକାର ଭାବନାଦ୍ୱାରା ସେମାନେ ସହଜ ଓ ସରଳ ଭାବରେ ମହାକର୍ଷଣ ନିୟମକୁ ଅବଧାରଣା କଲେ, ଫଳରେ ଏହି ନିୟମର ଅନ୍ୟାନ୍ୟ ବ୍ୟାଖ୍ୟା ଦିଗରେ କୌଣସି କୌତୂହଳ ପୋଷଣ କଲେ ନାହିଁ । କିନ୍ତୁ ଆଇନଷ୍ଟାଇନଙ୍କ ବ୍ୟାଖ୍ୟା ପରଠୁ ମହାକର୍ଷଣ ନିୟମକୁ ଅତି ଜଟିଳ ଭାବରେ ବିଶ୍ଳେଷଣ କରାଯାଉଛି । ଆଇନଷ୍ଟାଇନ ମହାକର୍ଷଣ ନିୟମକୁ କିପରି ବ୍ୟାଖ୍ୟା କରିଛନ୍ତି ସେ ସମ୍ବନ୍ଧରେ ଏଠାରେ ଭାଷଣ ଦେବାକୁ ମୁଁ ଯାଉନାହିଁ, କାରଣ ତାହା ବୁଝାଇବାକୁ କିଛି ସମୟ ଲାଗିଯିବ । କିନ୍ତୁ ନିଉଟନଙ୍କର ଚିନ୍ତନ ପରିପ୍ରେକ୍ଷୀରେ ପ୍ରାକୃତିକ ନିୟମ କହିଲେ ଯେଉଁପରି ବୁଝାଯାଉଥିଲା ତାହା ସଂପ୍ରତି ବୁଝାଯାଉ ନାହିଁ । 'ପ୍ରକୃତି ସମତାଳତା ରକ୍ଷାକରି କାର୍ଯ୍ୟକରେ' ସଂପ୍ରତି ଏପରି କହିବା ସଂଗତ ହୁଏ ନାହିଁ କିମ୍ବା ଏପରି ବୁଝିବାକୁ ପ୍ରୟାସ କରିବା ଯଥାର୍ଥ ନୁହେଁ । ଏକଦା ଅନେକ ଘଟଣା ଯାହାକୁ ପ୍ରାକୃତିକ ନିୟମ କୁହାଯାଉଥିଲା, ତାହାକୁ ଏବେ ମନୁଷ୍ୟର ପାରମ୍ପରିକ ଅବଧାରଣା ଭାବରେ ବୁଝାଯାଉଛି । ଏପରିକି ନକ୍ଷତ୍ରମାନଙ୍କରେ କିମ୍ବା ଅନ୍ତରୀକ୍ଷରେ ଏକ ଗଜ ଯେ ତିନିଫୁଟ ହେବ ଆମେ ଗ୍ରହଣ କରୁଛେ । ଏହା ଯେତେ ଉଲ୍ଲେଖନୀୟ ହେଲେ ବି ଏହାକୁ ଏକ ପ୍ରାକୃତିକ ନିୟମ ଭାବରେ ଆମେ ଗ୍ରହଣ କରିବା ନାହିଁ । ଏକ ଗଜ ତିନିଫୁଟ ଯେପରି ଏକ ପ୍ରାକୃତିକ ନିୟମ ନୁହେଁ, ସେହିପରି ଅନେକ କଥା ରହିଛି ଯାହାକୁ ଆମେ ପ୍ରାକୃତିକ ନିୟମ ବୋଲି ଧରିନେଇଥାଉ କିନ୍ତୁ ସେସବୁ କୌଣସି ପ୍ରାକୃତିକ ନିୟମ ନୁହେଁ । ଅଣୁର କାର୍ଯ୍ୟକାରିତା ନେଇ ଆପଣ ଯାହା ଜ୍ଞାନ ପାଇଛନ୍ତି ବା ସେଗୁଡ଼ିକୁ ଯେତେ ନିୟମ

ଆଧାରିତ ବୋଲି ଭାବନ୍ତି ତାହା ପ୍ରକୃତରେ ସେପରି ନୁହେଁ । ଆପଣ ଉପନୀତ ହେଉଥିବା ନିୟମଗୁଡ଼ିକ କେବଳ କେତେକ ହାରାହାରି ପରିସଂଖ୍ୟାଗତ ତଥ୍ୟ ଯାହାର ସମ୍ଭାବନା ମାତ୍ର ଆକସ୍ମିକ । ଯଦି ଆପଣ ପଶାକାଠି ପକାଇବେ ତେବେ ଛତିଶ ଥର ଭିତରେ ଥରଟିଏ ଦୁଇ ଛ' ପଡ଼ିବାର ସମ୍ଭାବନା ରହିଥାଏ, ଏବଂ ଏ କ୍ଷେତ୍ରରେ ପଶାକାଠିର ଦାନ ପଡ଼ିବା କୌଣସି ଉଦ୍ଦେଶ୍ୟାତ୍ମକ ବା ଅଭିକଳ୍ପନୀୟ ନିୟମ ଉପରେ ଆଧାରିତ ନୁହେଁ । ଯଦି ଜଣଙ୍କର ବାରମ୍ବାର ଦୁଇ ଛ' ପଡ଼ିଲା, ଏହା ଯେ କିଛି ଉଦ୍ଦେଶ୍ୟାତ୍ମକ ଅଭିକଳ୍ପଦ୍ୱାରା ନିୟନ୍ତ୍ରିତ ହେଉଛି ସେପରି କୁହାଯାଇ ପାରିବ ନାହିଁ । ପ୍ରାକୃତିକ ନିୟମ ବୋଲି କୁହାଯାଉଥିବା ଅନେକ ଘଟଣା କ୍ଷେତ୍ରରେ ଠିକ୍ ତାହା ବି କୁହାଯାଇ ପାରିବ । ଅର୍ଥାତ ପ୍ରକୃତିର ଅନେକ କ୍ଷେତ୍ର ପରିସଂଖ୍ୟାନ ଜନିତ ଆକସ୍ମିକ ଘଟଣା ମାତ୍ର । ସୁତରାଂ ଅତୀତରେ ପ୍ରାକୃତିକ ନିୟମ ବୋଲି ଯାହା ଏତେ ଆକର୍ଷଣୀୟ ବୋଧ ହେଉଥିଲା ତାହା କେବଳ ପାରିସାଂଖ୍ୟିକ ସମ୍ଭାବନା । ଅବଶ୍ୟ ବୈଜ୍ଞାନିକ ତଥ୍ୟ ଉପରେ ଆଧାରିତ ସିଦ୍ଧାନ୍ତ ଗୁଡ଼ିକ ପରିବର୍ତ୍ତନଶୀଳ ହେଲେ ସୁଦ୍ଧା ପ୍ରାକୃତିକ ନିୟମ ଭାବନା ପଶ୍ଚାତରେ ଏକ ନିୟାମକ ରହିଥିବା ପରିକଳ୍ପନା କରାଯାଏ । କିନ୍ତୁ ପ୍ରାକୃତିକ ନିୟମ ପଶ୍ଚାତରେ ଜଣେ ନିୟାମକ ରହିବା ଧାରଣା ଏକ ଭ୍ରମାତ୍ମକ ପ୍ରତୀତି ଅଟେ । ଏଠାରେ ପ୍ରାକୃତିକ ନିୟମ ଓ ମନୁଷ୍ୟକୃତ ବୈଧିକ ନିୟମ ମଧ୍ୟରେ ରହିଥିବା ପାର୍ଥକ୍ୟକୁ ବିଚାରକୁ ନିଆଯାଏ ନାହିଁ । ବୈଧିକ ନିୟମ ସାହାଯ୍ୟରେ ଜଣେ ବ୍ୟକ୍ତି ଗୋଟିଏ ପରିସ୍ଥିତିରେ କିପରି ବ୍ୟବହାର କରିବ ବା କେଉଁ ନିୟମଦ୍ୱାରା ପରିଚାଳିତ ହେବ ସେ ନେଇ ନିର୍ଦ୍ଦେଶ ଦିଆଯାଇଥାଏ । ହୁଏତ ସେହି ନିର୍ଦ୍ଦେଶ ଅନୁଯାୟୀ ଜଣେ କାର୍ଯ୍ୟ କରିପାରେ କିମ୍ବା ନିର୍ଦ୍ଦେଶକୁ ଉଲଘଂନ କରିପାରେ । କିନ୍ତୁ ପ୍ରାକୃତିକ ନିୟମଗୁଡ଼ିକ ବର୍ଣ୍ଣନାତ୍ମକ ଯେଉଁଥିରେ ଘଟଣା କିପରି ଘଟୁଛି ତାହାକୁ ସାମାନ୍ୟକୃତ କରାଯାଇଥାଏ । ବୈଧିକ ନିୟମଗୁଡ଼ିକ ପରି ବର୍ଣ୍ଣନାତ୍ମକ ବା ପ୍ରାକୃତିକ ନିୟମଗୁଡ଼ିକ ନୁହେଁ । ପ୍ରାକୃତିକ ନିୟମ କ୍ଷେତ୍ରରେ କୌଣସି ନିୟାମକ ନ ଥାଏ । ଅର୍ଥାତ ଘଟଣା ଗୁଡ଼ିକ କିପରି ଘଟିବ ସେ ନେଇ ନିୟମ କେହି ସୃଷ୍ଟି କରି ନାହିଁ । ଯଦିବା ଯୁକ୍ତି ପାଇଁ ସେପରି କୁହାଯାଏ ଯେ ପ୍ରାକୃତିକ ନିୟମ କ୍ଷେତ୍ରରେ ନିୟାମକ ରହିଛି ତେବେ ଏହି ପ୍ରଶ୍ନ ଆସିବ ଯେ ଈଶ୍ୱର କାହିଁକି ଏ ପ୍ରକାର ନିୟମ ପ୍ରଣୟନ କଲେ, ଅନ୍ୟ ପ୍ରକାର ନୁହେଁ ? ଯଦି ଆପଣ କହିବେ ଯେ ତାଙ୍କର ଯେପରି ଖୁସି ହେଲା ସେ ସେପରି କରିଛନ୍ତି ଓ ଏ କ୍ଷେତ୍ରରେ କିଛି କାରଣ ନାହିଁ, ତେବେ ଆପଣ ଏହା ସ୍ୱୀକାର କରୁଛନ୍ତି ଯେ ଏପରି କେତେକ କ୍ଷେତ୍ର ରହିଛି ଯାହା ନିୟମର ନିୟନ୍ତ୍ରଣ ଭିତରେ ନାହିଁ । ତେବେ ସେପରି ହେଲେ

ଆପଣଙ୍କର ପ୍ରାକୃତିକ-ନିୟମ-ଧାରା ବ୍ୟାହତ ହେଉଛି । ଅନେକ ରକ୍ଷଣଶୀଳ ଧର୍ମଶାସ୍ତ୍ରୀ କହିବେ ଯେ ଈଶ୍ୱର ଏ ପ୍ରକାର ନିୟମ କାହିଁକି କରିଛନ୍ତି ତାହା ପଶ୍ଚାତର କାରଣ ହେଉଛି ଏକ ସର୍ବୋତ୍ତମ ବିଶ୍ୱ ସୃଷ୍ଟି କରିବା; ଯଦିବା ଏହାକୁ ସର୍ବୋତ୍ତମ କହିବା ସଂପୂର୍ଣ୍ଣ ଗ୍ରହଣୀୟ ନୁହେଁ । ଯଦି ଈଶ୍ୱର ଯେଉଁ ନିୟମ ଦେଇଛନ୍ତି ତାହାର ଏହିପରି କାରଣ ରହିଛି, ତେବେ ଈଶ୍ୱର ମଧ୍ୟ ସେହି ନିୟମର ନିୟନ୍ତ୍ରଣ ମଧ୍ୟରେ ରହିଛନ୍ତି । ଈଶ୍ୱରଙ୍କୁ ନିୟମର ନିୟନ୍ତ୍ରଣରେ ରଖିବା ବା ତାଙ୍କୁ ମଧ୍ୟସ୍ଥ ଭାବରେ ନେବା କ୍ଷେତ୍ରରେ ଆପଣ କିଛି ସୁବିଧାଜନକ ସ୍ଥିତିରେ ରହିପାରିବେ ନାହିଁ । ଯଦି ଈଶ୍ୱରଙ୍କ କୃତୀ ପଶ୍ଚାତରେ ବାହ୍ୟିକ ନିୟମ ରହିବ ତେବେ ଈଶ୍ୱର ପରମ ନିୟାମକ ହୋଇପାରିବେ ନାହିଁ । ସଂକ୍ଷେପରେ କହିଲେ ପ୍ରାକୃତିକ ନୟମକୁ ଯେପରି ମାନ୍ୟତା ଦିଆଯାଉଥିଲା ତାହା ସେପରି ହେବ ନାହିଁ ଓ ଏପରିକି ଏହା ପଶ୍ଚାତରେ ଥିବା ଯୁକ୍ତି କେତେ ଦୁର୍ବଳ ହେବ ତାହା ସହଜରେ ଅନୁମେୟ । ସମୟର ପରିବର୍ତ୍ତନ ଯେପରି ହେଉଛି ଈଶ୍ୱରଙ୍କ ଅସ୍ତିତ୍ୱ ସଂପର୍କରେ ଦିଆଯାଉଥିବା ଯୁକ୍ତିଗୁଡ଼ିକ କାଳକ୍ରମେ ସେପରି ନିଷ୍ପ୍ରଭ ମନେ ହେଉଛି । ଆରମ୍ଭରେ ସେହି ବୌଦ୍ଧିକ ଯୁକ୍ତିଗୁଡ଼ିକ କେତେକ ନିର୍ଦ୍ଦିଷ୍ଟ ତର୍କଦୋଷରେ ଆକ୍ରାନ୍ତ ହୋଇଥିଲେ । ପରନ୍ତୁ ଆଧୁନିକ ଅନ୍ୱେଷାରେ ସେଗୁଡ଼ିକ ବୌଦ୍ଧିକ ମାନଦଣ୍ଡରୁ ସେପରି କିଛି ଆକର୍ଷଣୀୟ ନୁହଁନ୍ତି । ପରନ୍ତୁ କେବଳ କେତେକ ନୈତିକ ଅସ୍ପଷ୍ଟତା ଭିତରେ ସେହି ଯୁକ୍ତିଗୁଡ଼ିକର ଅବତାରଣା ମାତ୍ର ଦେଖିବାକୁ ମିଳିଥାଏ ।

## ଅଭିକଳ୍ପ ଯୁକ୍ତି

ପରବର୍ତ୍ତୀ କ୍ଷେତ୍ରରେ ଯେଉଁ ଅଭିକଳ୍ପ ଯୁକ୍ତିଦ୍ୱାରା ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରତିଷ୍ଠା କରିବାକୁ ଚେଷ୍ଟା କରାଯାଇଛି ତାହା ବିଚାରକୁ ନିଆଯାଉ । ଆପଣମାନେ ଏହି ଯୁକ୍ତିଟି ସମ୍ବନ୍ଧରେ ପ୍ରାୟ ଅବଗତ । ଏହି ପୃଥିବୀର ସ୍ତରେ ସ୍ତରେ ଏପରି ଶୃଙ୍ଖଳା ରହିଛି ଯଦ୍ୱାରା ଏଠାରେ ଆମେ ଜୀବନ ଧାରଣ କରିବା ସମ୍ଭବ ହୋଇଛି । ଯଦି ଏଥିରେ ସାମାନ୍ୟ ବ୍ୟତିକ୍ରମ ହୋଇଥାନ୍ତା ତେବେ ଏଠାରେ ଆମେ ବଞ୍ଚିରହି ପାରନ୍ତେ ନାହିଁ । ଏହା ହିଁ ହେଉଛି ଅଭିକଳ୍ପ ଯୁକ୍ତି । ଏପରିକି ଏହି ଯୁକ୍ତିକୁ ବେଳକେ ବିଚିତ୍ର ଭାବରେ ବ୍ୟକ୍ତ କରାଯାଏ, ଏହା କୁହାଯାଏ ଯେ ଠେକୁଆର ଲାଞ୍ଜ ଧଳା ହୋଇଥିବାରୁ ତାକୁ ଗୁଳି କରିବା ସହଜ ହୋଇଥାଏ । ଠେକୁଆମାନେ ଏହି ବିନ୍ୟାସକୁ କିପରି ଦୃଷ୍ଟିରେ ନେବେ ମୁଁ ତାହା କହିପାରିବି ନାହିଁ । ଏହି ଯୁକ୍ତିକୁ ସହଜରେ ବ୍ୟଙ୍ଗ କରାଯାଇ ପାରିବ । ଆପଣମାନେ ଭୋଲଟାଆରଙ୍କ ମତ ପ୍ରାୟ ଜାଣନ୍ତି । ତାଙ୍କ ମତରେ ନାକର ଗଠନ ଏପରି ହେବାର କାରଣ ହେଉଛି ଏଥିରେ

ଆମେ ସହଜରେ ଚଷମା ପିନ୍ଧି ପାରିବା । ଏହି ପ୍ରକାର ବ୍ୟଙ୍ଗକୁ ଆମେ ବର୍ତ୍ତମାନ ଯେପରି ବ୍ୟାପକ ସ୍ତରରେ ପ୍ରୟୋଗ କରିପାରୁଛେ ଅଷ୍ଟାଦଶ ଶତାବ୍ଦୀରେ ପ୍ରାୟ ସେପରି କରିପାରୁ ନ ଥିଲେ । କାରଣ ଡରଓ୍ୱିନଙ୍କ ପରଠାରୁ ପ୍ରାଣୀମାନେ କିପରି ପରିବେଶକୁ ନିଜ ପାଇଁ ଉପଯୋଗୀ କରିଥାନ୍ତି ତାହା ଆମେ ବୁଝିବାକୁ ସମର୍ଥ ହୋଇଛେ । ପରିବେଶ ଜୀବମାନଙ୍କ ପାଇଁ ଅନୁକୂଳ ହେବାକୁ ସୃଷ୍ଟି ହୋଇ ନାହିଁ, ବରଂ ପରିବେଶ ସହିତ ଯେଉଁ ପ୍ରାଣୀମାନେ ଖାପ ଖୁଆଇ ରହିପାରିବେ ସେହି ପ୍ରାଣୀମାନେ ହିଁ ରହିଛନ୍ତି । ତାହା ହିଁ ହେଉଛି ପରିବେଶ ସହ ଖାପଖୁଆଇ ବଞ୍ଚିବାର ନିୟମ । ସୁତରାଂ ପ୍ରକୃତିର ଯେ ଏକ ଅଭିକଳ୍ପ ରହିଛି ଏହା ପଶ୍ଚାତରେ କୌଣସି ଭିତ୍ତି ନାହିଁ ।

ଅଭିକଳ୍ପ ଯୁକ୍ତି ଅନୁଯାୟୀ ଲୋକମାନେ ବିଶ୍ୱାସ କରନ୍ତି ଯେ ଏକ ସର୍ବଶକ୍ତିମାନ ଓ ସର୍ବଜ୍ଞ ଈଶ୍ୱର କର୍ତ୍ତା ଭାବରେ ଏହି ବିଶ୍ୱକୁ ନିୟୁତ ନିୟୁତ ବର୍ଷ ଧରି ଏହାର ସମସ୍ତ ବସ୍ତୁ ଓ ଉପାଦାନକୁ ନିପୁଣତାର ସହ ସୃଷ୍ଟି କରିଛନ୍ତି । କିନ୍ତୁ ସେମାନେ ବିଶ୍ୱର ତ୍ରୁଟି ସକଳକୁ ଗୁରୁତ୍ୱ ଦେଇ ନଥାନ୍ତି । ସୁତରାଂ ମୁଁ ଏହି ଯୁକ୍ତିରେ ବିଶ୍ୱାସ କରିପାରୁ ନାହିଁ । ଯଦି ଆପଣଙ୍କୁ ସର୍ବଜ୍ଞ ଓ ସର୍ବଶକ୍ତିମାନ କରାଯାଏ ତଥା ଏହି ସୃଷ୍ଟିକୁ ପରିପୂର୍ଣ୍ଣ ତଥା ଆଦର୍ଶ ସ୍ଥାନୀୟ କରି ଗଢ଼ିବାକୁ ନିୟୁତ ନିୟୁତ ବର୍ଷ ଦିଆଯାଏ ତେବେ ଆପଣ କ'ଣ କୁ କ୍ଲକ୍ସ ଖାଁ, ସ୍ୱେଚ୍ଛାଚାରୀ ଫାସିଷ୍ଟ ବା ଓ୍ୱିନ୍‌ଷ୍ଟନ୍ ଚର୍ଚ୍ଚିଲଙ୍କଠାରୁ ଉତ୍ତମ ବ୍ୟକ୍ତି ସୃଷ୍ଟି କରିପାରିବେ ନାହିଁ ? ଲୋକମାନେ ଯେତେବେଳେ କୁହନ୍ତି, "ମୋତେ ଦେଖନ୍ତୁ, ମୋର ଜୀବନ ଏପରି ଅଭୂତପୂର୍ବ ଯେଉଁଥିରୁ ପ୍ରମାଣ ମିଳିବ କି ଏହି ବିଶ୍ୱର ସୃଷ୍ଟି ପଶ୍ଚାତରେ ସୁଘଟିତ କର୍ତ୍ତାର ହାତ ବା ଅଭିକଳ୍ପ ରହିଛି"– ସେହି ଗୌରବମୟ ବ୍ୟକ୍ତିମାନଙ୍କର ବକ୍ତବ୍ୟରେ ମୁଁ ଏତେ ଆହ୍ଲାଦିତ ହୁଏ ନାହିଁ । ମୋ ମତରେ ଅଭିକଳ୍ପ ଯୁକ୍ତି ବାସ୍ତବରେ ଏକ ଅତି ଦୁର୍ବଳ ଯୁକ୍ତି । ଅଧିକନ୍ତୁ ଯଦି ଆପଣ ବିଜ୍ଞାନର ମାମୁଲି ନିୟମଗୁଡ଼ିକୁ ଦେଖିବେ ତେବେ ଆପଣଙ୍କୁ ଏହା ବିଶ୍ୱାସ କରିବାକୁ ହେବ ଯେ ମାନବ ଜୀବନ ଓ ଏପରିକି ଜୀବନ ସତ୍ତା ଏହି ଗ୍ରହରେ ମୃତ୍ୟୁ ଦିଗରେ ଅଗ୍ରଗାମୀ । ଏଠାରେ ସୃଷ୍ଟି ହୋଇଥିବା ଜୀବନ ସତ୍ତା କ୍ଷଣସ୍ଥାୟୀ, ଗ୍ରହମଣ୍ଡଳ ଅବକ୍ଷୟ ଦିଗରେ ଧାବିତ, ଏହି ଅବକ୍ଷୟ ଧାରାରେ ଉତ୍ତାପ ଯେତେବେଳେ ଏକ ଅନୁକୂଳ ସ୍ଥିତିକୁ ଆସିଛି ସେତେବେଳେ ଜୀବନ ସତ୍ତାର ବିକାଶ ହୋଇଛି ଓ ସମଗ୍ର ଗ୍ରହରାଜିର ଜୀବନକାଳ ମଧ୍ୟରେ ଜୀବସତ୍ତାର ଜୀବନକାଳ କେବଳ ସାମୟିକ ସମୟ ପାଇଁ ହୋଇଛି । ଚନ୍ଦ୍ର ଯେପରି ସ୍ଥିତିରେ ଅଛି ପୃଥିବୀ ସେହିପରି ମୃତ୍ୟୁ, ଶୀତଳ ଓ ଜୀବନହୀନ ଅବସ୍ଥା ପାଇଁ ଆଗେଇ ଚାଲିଛି ।

ମୋତେ କୁହାଯାଏ ଯେ ଏହି ମତ ନୈରାଶ୍ୟଜନକ, ସେହିପରି ଏହା ମଧ୍ୟ ଆପଣଙ୍କୁ ଅନ୍ୟମାନେ କହିପାରନ୍ତି ଯେ ଯଦି ସେଥିରେ ସେମାନେ ବିଶ୍ୱାସ କରିବେ, ତେବେ ସେମାନେ ବଞ୍ଚି ପାରିବେ ନାହିଁ । କିନ୍ତୁ ସେହି ବକ୍ତବ୍ୟରେ ବିଶ୍ୱାସ କରିବାର କିଛି ନାହିଁ, କାରଣ ତାହା ଅଯୌକ୍ତିକ । ଆଜିଠାରୁ ନିଯୁତ ନିଯୁତ ବର୍ଷ ଆଗକୁ କ'ଣ ହେବ ସେଥିପାଇଁ କେହି ବିଚଳିତ ହେବାର ମାନେ କିଛି ନାହିଁ । ଯଦି ସେମାନେ ଭବିଷ୍ୟତରେ ସେହି ଘଟଣାକୁନେଇ ବିବ୍ରତ ହୁଅନ୍ତି ତେବେ ସେମାନେ ନିଜକୁ ଠକାମୀ ଭିତରେ ରଖୁଛନ୍ତି । ସେମାନେ ବାସ୍ତବପକ୍ଷେ ଐହିକ ଘଟଣା ପ୍ରତି ଅଧିକ ଚିନ୍ତିତ, ହୁଏତ ଏହା କହିବା ଅଯୌକ୍ତିକ ହୋଇପାରେ । କିନ୍ତୁ ଆଜକୁ ନିଯୁତ ନିଯୁତ ବର୍ଷ ପରେ କ'ଣ ହେବାକୁ ଯାଉଛି ସେ ବିଷୟ କୌଣସି ବ୍ୟକ୍ତି ଚିନ୍ତାକରି ଦୁଃଖିତ ହେବା ଅର୍ଥହୀନ ମନେହୁଏ । ଜୀବନ ବିଲୁପ୍ତ ହୋଇଯିବ ଏହା ନିଶ୍ଚୟ ଆମମାନଙ୍କ ପାଇଁ ଏକ ନୈରାଶ୍ୟଜନକ ଘଟଣା ତଥାପି ମୁଁ ଯେତେବେଳେ କେତେକ ଲୋକଙ୍କର ଆଚରଣ ଓ ଜୀବନର ଦୃଷ୍ଟିକୋଣ ସଂପର୍କରେ ଅନୁଶୀଳନ କରେ ମୁଁ ସେତେବେଳେ ବରଂ ସାନ୍ତ୍ୱନା ପାଇଥାଏ । କାରଣ ଜୀବନ ଯେ ଅଧିକ ଦୟନୀୟ ହେବ ଅନ୍ତତଃ ସେହି ସମ୍ଭାବନା ନ ଥାଏ । ଏହି ପରିପ୍ରେକ୍ଷୀରେ ଅନ୍ୟ ପ୍ରସଙ୍ଗ ପ୍ରତି ମୁଁ ଆପଣମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି ।

## ନୈତିକ ଯୁକ୍ତି

ଈଶ୍ୱରବାଦୀମାନେ ନୈତିକତାର ଆଧାର ଉପରେ ଈଶ୍ୱରଙ୍କର ଅସ୍ତିତ୍ୱ ବିଷୟ କହିଥାନ୍ତି । ସେମାନଙ୍କର ଏହି ଯୁକ୍ତିକୁ ଏକ ବୌଦ୍ଧିକ ଅବରୋହଣ କୁହାଯାଇ ପାରିବ । ଆପଣମାନେ ଜାଣନ୍ତି ଅତୀତରେ ଈଶ୍ୱରଙ୍କର ଅସ୍ତିତ୍ୱ ସଂପର୍କରେ ତିନୋଟି ବୌଦ୍ଧିକ ଯୁକ୍ତି ପ୍ରଦାନ କରାଯାଉଥିଲା । ଇମାନୁଏଲ କାଣ୍ଟ ତାଙ୍କର ପୁସ୍ତକ କ୍ରିଟିକ ଅଫ ପିଓର ରିଜନ (Critique of Pure Reason) ରେ ଏହି ତିନୋଟି ଯୁକ୍ତିକୁ ଆଲୋଚନା କରି ସେଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଥିଲେ । କିନ୍ତୁ ଏହି ଯୁକ୍ତିସବୁକୁ ପରିହାର କରିବା ପରେ ସେ ଏକ ନୈତିକ ଯୁକ୍ତି ଉଦ୍ଭାବନ କଲେ ଓ ଏହି ଯୁକ୍ତିଟି ତାଙ୍କୁ ବେଶ୍ ସନ୍ତୋଷଜନକ ମନେହେଲା । ଅଧିକାଂଶ ବ୍ୟକ୍ତିଙ୍କ ପରି କାଣ୍ଟ ଈଶ୍ୱରଙ୍କ ଅସ୍ତିତ୍ୱ ସଂପର୍କରେ ଥିବା ବୌଦ୍ଧିକ ଯୁକ୍ତିଗୁଡ଼ିକୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ ସୁଦ୍ଧା ନୈତିକ ଯୁକ୍ତି ଉପରେ ତାଙ୍କର ଗଭୀର ଆସ୍ଥା ଥିଲା, କାରଣ ଏହା ସେ ଅତି ପିଲାଟି ଦିନରୁ ଲାଭ କରିଥିଲେ । ପିଲାଟି ସମୟରୁ ଜଣେ ଯେଉଁ ଭାବନା ପାଇଥାଏ ଜୀବନସାରା ତାହା ତାର ବ୍ୟକ୍ତିତ୍ୱକୁ ପ୍ରଭାବିତ

କରିଥାଏ । ପରବର୍ତ୍ତୀ ସମୟର ଭାବନା ପରିବର୍ତ୍ତିତ ହୋଇ ଯାଉଥିବା ବେଳେ ଅତି ଛୋଟ ବୟସରୁ ପାଇଥିବା ଭାବନା ମଣିଷ ମନରେ ଲିପିବଦ୍ଧ ହୋଇ ରହିଥାଏ । ମନୋବିଜ୍ଞାନରେ ଏହା ଏକ ପ୍ରତିପାଦ୍ୟ ବିଷୟ ବୋଲି କୁହାଯାଏ ।

ଈଶ୍ୱରଙ୍କ ଅସ୍ତିତ୍ୱ ପାଇଁ କାଣ୍ଟ ଯେଉଁ ନୈତିକ ଯୁକ୍ତିର ଅବତାରଣା କରିଥିଲେ ଊନବିଂଶ ଶତାବ୍ଦୀରେ ତାହା ବିଭିନ୍ନ ରଙ୍ଗ ଧାରଣ କରି ବେଶ୍ ଜନପ୍ରିୟ ହୋଇ ପାରିଥିଲା । ଏହା ନାନା ପ୍ରକାରରେ ବ୍ୟକ୍ତ ହେଉଥିଲା । ଗୋଟିଏ ଭାବରେ ଏହା କୁହାଗଲା ଯେ ଈଶ୍ୱର ନ ରହିଲେ ଭଲ ମନ୍ଦର ପାର୍ଥକ୍ୟ ରହିବ ନାହିଁ । ଭଲ ମନ୍ଦ ଭିତରେ କ'ଣ ପାର୍ଥକ୍ୟ ରହିଛି କି ନାହିଁ ସେ ପ୍ରସଙ୍ଗ ଉପରେ ମୁଁ ଏଠାରେ ଆଲୋଚନା କରିବାକୁ ଯାଉ ନାହିଁ କାରଣ ତାହା ଏକ ଭିନ୍ନ ପ୍ରଶ୍ନ ଅଟେ । କିନ୍ତୁ ଆପଣ ଯଦି ନିଶ୍ଚିତ ଯେ ଭଲ ମନ୍ଦ ଭିତରେ ବସ୍ତୁନିଷ୍ଠ ପାର୍ଥକ୍ୟ ରହିଛି ତେବେ ଏଠାରେ ଏହି ପ୍ରଶ୍ନ ଉଠିବ, ଯଥା– ଏହି ପ୍ରଭେଦ କ'ଣ ଈଶ୍ୱରଙ୍କ ଇଚ୍ଛା ଯୋଗୁଁ ହୋଇଛି ନା ଏହା ଈଶ୍ୱରଙ୍କ ଇଚ୍ଛାରୁ ମୁକ୍ତ ? ଯଦି ଏହା ଈଶ୍ୱରଙ୍କ ଇଚ୍ଛାରୁ ହୋଇଛି ତେବେ ଈଶ୍ୱରଙ୍କ ପାଇଁ ଭଲ ମନ୍ଦ ଭିତରେ କୌଣସି ପାର୍ଥକ୍ୟ ରହିବ ନାହିଁ ଓ ଅଧିକନ୍ତୁ 'ଈଶ୍ୱର ମଙ୍ଗଳମୟ' ଏହା ଅର୍ଥପୂର୍ଣ୍ଣ ହେବ ନାହିଁ । ଧର୍ମଶାସ୍ତ୍ରୀମାନଙ୍କ ପରି ଆପଣ ବି ଯଦି ଈଶ୍ୱର ମଙ୍ଗଳମୟ ବୋଲି କୁହନ୍ତି ତେବେ ଈଶ୍ୱରଙ୍କ ଇଚ୍ଛା ବାହାରେ ଭଲ ମନ୍ଦର ପାର୍ଥକ୍ୟ ରହିଛି ବୋଲି ସ୍ୱୀକାର କରିବାକୁ ହେବ । କାରଣ ଈଶ୍ୱର ମଙ୍ଗଳମୟ ବୋଲି ଗ୍ରହଣ କରିବାକୁ ହେଲେ ଭଲ ମନ୍ଦ ଭିତରେ ଥିବା ପାର୍ଥକ୍ୟ ଈଶ୍ୱରଙ୍କ ଇଚ୍ଛା ସ୍ୱୀକୃତ ହେବ କାରଣ ଈଶ୍ୱର କେବେହେଲେ ମନ୍ଦର ସ୍ରଷ୍ଟା ହୋଇ ନ ଥିବେ । ବାହାରେ ଥିବା ସେପରି ସ୍ଥିତିରେ ଭଲ ମନ୍ଦର ପାର୍ଥକ୍ୟ ଯେ କେବଳ ଈଶ୍ୱରଙ୍କ ଦ୍ୱାରା ହୋଇଛି ତା ନୁହେଁ ବରଂ ତର୍କ ଦୃଷ୍ଟିରୁ ସେସବୁ ଈଶ୍ୱରଙ୍କ ପୂର୍ବବର୍ତ୍ତୀ ବୋଲି କହିବାକୁ ପଡ଼ିବ । ସେପରି ସ୍ଥଳେ ଆପଣ ଏକଥା ଚାହିଁଲେ କହିବେ ଯେ ସୃଷ୍ଟିକର୍ତ୍ତା ଈଶ୍ୱରଙ୍କ ଊର୍ଦ୍ଧ୍ୱରେ ଅନ୍ୟ ଏକ ଶକ୍ତି ରହିଛି ଯେ'କି ଈଶ୍ୱରଙ୍କୁ ନିର୍ଦ୍ଦେଶ ଦେଇ ପାରିବେ । କିମ୍ବା ଆପଣ ରହସ୍ୟବାଦୀଙ୍କ ପରି କହିବେ ଯେ, ଯାହା ଅଧିକ ବୋଧଗମ୍ୟ ବୋଲି ମୁଁ ମନେକରୁଛି,– ଆମେ ରହିଥିବା ଏହି ଜଗତକୁ ଈଶ୍ୱରଙ୍କ ଅନାଗ୍ରହ ବେଳେ ସଇତାନ ହିଁ ସୃଷ୍ଟି କରିଛି । ଏହି ବିଷୟରେ ଅନେକ କଥା କୁହାଯାଇ ପାରିବ ଓ ଯାହା କୁହାଯିବ ତାହାକୁ ପ୍ରତ୍ୟାଖ୍ୟାନ କରିବା ନେଇ ମୁଁ ସଂପୃକ୍ତ ନୁହେଁ ।

## ଅନ୍ୟାୟ ପ୍ରତିବିଧାନ ଯୁକ୍ତି

ନୈତିକ ଯୁକ୍ତିର ଏକ କୌତୁହଳପ୍ରଦ ଦିଗ ମଧ୍ୟ ରହିଛି । ସେଥିରେ

କୁହାଯାଏ ଯେ ଜଗତରେ ନ୍ୟାୟ ପ୍ରତିଷ୍ଠା ପାଇଁ ଈଶ୍ୱରଙ୍କର ଆବଶ୍ୟକତା ରହିଛି । ଆମେ ଯେଉଁ ସଂସାରରେ ରହିଛୁ ସେଠାରେ ଅନ୍ୟାୟ ରହିଛି । ଉତ୍ତମ ଲୋକମାନେ ନିଜର ଦୋଷତ୍ରୁଟି ନଥାଇ ମଧ ନିର୍ଯ୍ୟାତନା ଭୋଗ କରନ୍ତି ଓ ଦୁଷ୍ଟ ଓ ଖଳ ପ୍ରକୃତିର ଲୋକମାନେ ସୁଖ ସମ୍ଭୋଗ ଭିତରେ ଜୀବନ ଅତିବାହିତ କରନ୍ତି । ଏହା ଅବଶ୍ୟ କେତେକଙ୍କୁ ଆଘାତ ଦେଇଥାଏ । ସୁତରାଂ ଭଲ ଲୋକମାନଙ୍କୁ ସେମାନଙ୍କର ପ୍ରାପ୍ୟ ଓ ଖଳ ଲୋକମାନଙ୍କୁ ଶାସ୍ତି ଦେଇ ସଂସାରରେ ନ୍ୟାୟ ପ୍ରତିଷ୍ଠା କରିବାକୁ ହେଲେ ଈଶ୍ୱରଙ୍କୁ ସ୍ୱୀକାର କରିବାକୁ ପଡ଼ିବ । ଏହା ସହିତ ସ୍ୱର୍ଗ ଓ ନର୍କର ଧାରଣା ରଖିବାକୁ ହେବ ଯଦ୍ୱାରା କି ଭବିଷ୍ୟତରେ ନ୍ୟାୟ ପ୍ରତିଷ୍ଠା ହେବ । ଯଦି ଏକ ବୈଜ୍ଞାନିକ ଦୃଷ୍ଟିକୋଣରୁ ଏହି ଯୁକ୍ତିଟିର ବିଚାର କରାଯାଏ ତେବେ ଆପଣ କହିବେ, ''ମୁଁ କେବଳ ଏହି ପୃଥିବୀକୁ ଜାଣେ । ବିଶ୍ୱର ଅନ୍ୟ ଅଂଶକୁ ମୁଁ ଜାଣେ ନାହିଁ । ସମ୍ଭାବନା ଦୃଷ୍ଟିରୁ ଏହି ପୃଥିବୀ ଏକ ଉନ୍ନତ ଦୃଷ୍ଟାନ୍ତ ବୋଲି ଯୁକ୍ତି କରାଯାଇପାରେ । ସୁତରାଂ ଏଠାରେ ଯଦି ଅନ୍ୟାୟ ରହିଛି, ତେବେ ଅନ୍ୟ ସ୍ଥାନରେ ମଧ ଅନ୍ୟାୟ ଥିବ ।'' ମନେ କରନ୍ତୁ ଆପଣ କମଳା ଥିବା ଗୋଟିଏ ଝୁଡ଼ିକୁ ଖୋଲିଲେ । ଯଦି ଉପରି ଭାଗରେ ଥିବା କମଳାଗୁଡ଼ିକ ସଡ଼ା ବୋଲି ଦେଖିଲେ ଆପଣ ''ଉପରେ ଥିବା ପଚା କମଳାର କ୍ଷତି ପୂରଣ ପାଇଁ ତଳେ ନିଶ୍ଚୟ ଭଲ କମଳା ଥିବ'' ବୋଲି ଯୁକ୍ତି କରିବେ ନାହିଁ । ବରଂ ଆପଣ କହିବେ, ''ସମ୍ଭବତଃ ଝୁଡ଼ିରେ ସବୁ କମଳାଗୁଡ଼ିକ ସଡ଼ା ।'' ଜଣେ ବୈଜ୍ଞାନିକ ଦୃଷ୍ଟିସଂପନ୍ନ ବ୍ୟକ୍ତି ବିଶ୍ୱ ସମ୍ବନ୍ଧରେ ସେହି ପ୍ରକାର ଯୁକ୍ତି କରିଥାନ୍ତି । ସେ କହିବେ, ''ଆମ ପୃଥିବୀରେ ଆମେ ବହୁ ଅନ୍ୟାୟ ଦେଖୁଛେ ଓ ଆମ ସଂସାର ନ୍ୟାୟଦ୍ୱାରା ପରିଚାଳିତ ହେଉନାହିଁ । ସୁତରାଂ ଏହି ଅନୁଭୂତି ଈଶ୍ୱରଙ୍କ ଅସ୍ତିତ୍ୱ ବିରୁଦ୍ଧରେ ଯାଉଛି, କିନ୍ତୁ ସପକ୍ଷରେ ନୁହେଁ ।'' ଅବଶ୍ୟ ଯେଉଁ ବୌଦ୍ଧିକ ସ୍ତରରୁ ଏହି ଯୁକ୍ତିଗୁଡ଼ିକ ସଂପର୍କରେ ମୁଁ କହୁଛି ତାହା ଲୋକମାନଙ୍କୁ ଯେ ବାସ୍ତବରେ ପ୍ରଭାବିତ କରିବ ତାହା ମୁଁ ଭାବୁନାହିଁ । ଲୋକମାନେ କୌଣସି ବୌଦ୍ଧିକ ଯୁକ୍ତି ଦୃଷ୍ଟିରୁ ଈଶ୍ୱରଙ୍କୁ ବିଶ୍ୱାସ କରି ନ ଥାନ୍ତି । ବରଂ ମା' କୋଳରୁ ହିଁ ଈଶ୍ୱରଙ୍କୁ ବିଶ୍ୱାସ କରିବାକୁ ସେମାନଙ୍କୁ ଶିକ୍ଷା ଦିଆଯାଇଥାଏ । ସେମାନଙ୍କର ବିଶ୍ୱାସ ପଶ୍ଚାତରେ ହିଁ ଏହି କାରଣ ବିଦ୍ୟମାନ ।

ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କାରଣ ହେଉଛି ଲୋକମାନେ ନିରାପତ୍ତା କାରଣରୁ ଈଶ୍ୱରଙ୍କୁ ବିଶ୍ୱାସ କରିଥାନ୍ତି । 'ଜଣେ ଶକ୍ତିମାନ ବ୍ୟକ୍ତି ଅଛନ୍ତି ଯେ'କି ଆପଦ ବିପଦରେ ରକ୍ଷା କରିବେ' ଏହି ପ୍ରକାରର ଏକ ଆସ୍ଥା ଈଶ୍ୱର ବିଶ୍ୱାସ କ୍ଷେତ୍ରରେ ମୁଖ୍ୟ ସ୍ଥାନ ନେଇଥାଏ ।

## ଖ୍ରୀଷ୍ଟଙ୍କ ଚରିତ୍ର

ଖ୍ରୀଷ୍ଟ କେତେଦୂର ସମସ୍ତଙ୍କ ଭିତରେ ଉତ୍ତମ ଓ ପ୍ରାଜ୍ଞ ବ୍ୟକ୍ତି ମୁଁ ବର୍ତ୍ତମାନ ଏହି ପ୍ରସଙ୍ଗଟି ଉପରେ ସାମାନ୍ୟ ଚର୍ଚ୍ଚା କରିବାକୁ ଯାଉଛି ଯାହା ଉପରେ ହେତୁବାଦୀମାନେ ଯଥେଷ୍ଟ ଗୁରୁତ୍ୱ ଦେବା ମନେହୁଏ ନାହିଁ । ସେ ଯେ ସବୁଠାରୁ ଉତ୍ତମ ଓ ପ୍ରାଜ୍ଞ ଏହାକୁ ସାଧାରଣତଃ ସମସ୍ତେ ଗ୍ରହଣ କରିବା ଆବଶ୍ୟକ ବୋଲି କୁହାଯାଏ । କିନ୍ତୁ ମୁଁ ଏଥିରେ ସମ୍ମତ ନୁହେଁ । ଏପରି କେତେକ କ୍ଷେତ୍ର ରହିଛି ଯେଉଁଠାରେ ମୁଁ ଖ୍ରୀଷ୍ଟଙ୍କ ମତକୁ ଅତ୍ୟନ୍ତ ସମ୍ମାନର ସହ ଗ୍ରହଣ କରିଥାଏ ଯାହାକି ଅତ୍ୟନ୍ତ ଅନୁଗତ ଖ୍ରୀଷ୍ଟିଆନମାନେ କରନ୍ତି ନାହିଁ । ଖ୍ରୀଷ୍ଟଙ୍କ ମତକୁ କେତେ ଦୂର ସବୁ କ୍ଷେତ୍ରରେ ଗ୍ରହଣ କରିହେବ ତାହା ମୁଁ ଜାଣେ ନାହିଁ, କିନ୍ତୁ ଅନେକ ପ୍ରଚାରଧର୍ମୀ ଖ୍ରୀଷ୍ଟିଆନଙ୍କଠାରୁ ମୁଁ ଯେ ତାଙ୍କର ମତ ସହ ଅଧିକ ସହମତ ହୋଇ ପାରିବି ଏହା ମୁଁ ଭାବୁଛି । ଖ୍ରୀଷ୍ଟଙ୍କର ବକ୍ତବ୍ୟ ମନେପକାନ୍ତୁ । ସେ କହିଛନ୍ତି, ''ମନ୍ଦର ପ୍ରତିରୋଧ କର ନାହିଁ, କେହି ତୁମର ଡାହାଣ ଗାଲରେ ଆଘାତ କଲେ, ତାଙ୍କୁ ବାମ ଗାଲଟିକୁ ଦେଖାଇଦିଅ ।'' ଖ୍ରୀଷ୍ଟଙ୍କର ଏହି ଉପଦେଶ ବା ମୂଲ୍ୟବୋଧ ସଂପୂର୍ଣ୍ଣ ନୂଆ ନୁହେଁ । ତାଙ୍କ ଆବିର୍ଭାବର ପାଞ୍ଚଶହ ବା ଛ' ଶହ ବର୍ଷ ପୂର୍ବରୁ ଲାଓ ସେ ଓ ବୁଦ୍ଧ ମଧ୍ୟ ଏହା କହିଥିଲେ । ଖ୍ରୀଷ୍ଟଙ୍କର ଏହି ନିୟମକୁ ସମସ୍ତ ଖ୍ରୀଷ୍ଟିଆନମାନେ ଯେ ଗ୍ରହଣ କରନ୍ତି ତାହା କୁହାଯାଇ ପାରିବ ନାହିଁ । ବର୍ତ୍ତମାନର ପ୍ରଧାନମନ୍ତ୍ରୀ ଯେ ଜଣେ ନିଷ୍ଠାପର ଖ୍ରୀଷ୍ଟିଆନ ଏଥିରେ ମୋର ସନ୍ଦେହ ନାହିଁ । ଆପଣମାନେ କେହି ଯାଇ ତାଙ୍କର ଗାଲରେ ଆଘାତ ଦେବାକୁ ମୁଁ କାହାକୁ କହୁ ନାହିଁ । କିନ୍ତୁ ଖ୍ରୀଷ୍ଟଙ୍କର ଏହି ଉପଦେଶକୁ ସେ ଯେ ଗ୍ରହଣ କରନ୍ତି ମୁଁ ତାହା ଭାବୁ ନାହିଁ । ସେ ବରଂ ଏହାକୁ ଏକ ଆଳଙ୍କାରିକ ବକ୍ତବ୍ୟ ବୋଲି ଗ୍ରହଣ କରିବା ଆପଣମାନେ ଦେଖିବେ ।

ଅନ୍ୟ ଏକ ବିଷୟରେ ଖ୍ରୀଷ୍ଟଙ୍କର ବକ୍ତବ୍ୟ ଉତ୍କୃଷ୍ଟ ବୋଲି ମୁଁ ଭାବୁଛି । ଖ୍ରୀଷ୍ଟ କହିଛନ୍ତି, ''ଅନ୍ୟର ବିଚାର କର ନାହିଁ, ଅନ୍ୟଥା ତୁମର ମଧ୍ୟ ବିଚାର କରିହେବ ।'' ଖ୍ରୀଷ୍ଟଧର୍ମ ଥିବା ଦେଶମାନଙ୍କରେ ଏହା ଗ୍ରହଣ ହେଉଥିବା ଆପଣ ପାଇବେ ନାହିଁ । ମୁଁ ମୋ ସମୟର କେତେକ ବିଚାରପତିଙ୍କୁ ଜାଣେ ଯେଉଁମାନେ କି ଅତି ବିଶ୍ୱସ୍ତ ଖ୍ରୀଷ୍ଟିଆନ । କିନ୍ତୁ ସେମାନଙ୍କ କାର୍ଯ୍ୟରେ ସେମାନେ ଯେ ଖ୍ରୀଷ୍ଟଧର୍ମରେ ଥିବା ଆଦର୍ଶର ପରିପନ୍ଥୀ କାର୍ଯ୍ୟ କରୁଛନ୍ତି ଏହା ସେମାନଙ୍କ ମଧ୍ୟରୁ କେହି ମଧ୍ୟ ଅନୁଭବ କରନ୍ତି ନାହିଁ । ଖ୍ରୀଷ୍ଟ କହିଛନ୍ତି, ''ଯିଏ ତୁମର ସାହାଯ୍ୟ କାମନା କରନ୍ତି, ତାଙ୍କୁ ସାହାଯ୍ୟ କର, ଯେ ତୁମଠାରୁ କିଛି ଧାର ଚାହାନ୍ତି

ତାଙ୍କଠାରୁ ମୁହଁ ଫେରାଇ ନିଅ ନାହିଁ ।'' ଏହା ଏକ ଉତ୍ତମ ନୀତି । ଆପଣଙ୍କର ସଭାପତି ଆପଣମାନଙ୍କୁ କହିଛନ୍ତି ଯେ ଆମେ ଏଠାରେ କିଛି ରାଜନୀତି ବିଷୟ ଆଲୋଚନା କରିବାକୁ ଯାଉ ନାହେଁ । କିନ୍ତୁ ଧାର କରିବା କେତେଦୂର ସମୀଚୀନ ବା ଧାର ପ୍ରତି ବିମୁଖ ହେବା ଆବଶ୍ୟକ, ପ୍ରଶ୍ନକୁ ନେଇ ଗତ ନିର୍ବାଚନ ହୋଇଯାଇଛି । ମୋର ଏହି ପର୍ଯ୍ୟବେକ୍ଷଣ ସହିତ ଆପଣମାନେ ଏକମତ ହେବେ ଯେ ଏହି ଦେଶର ଲିବେରାଲ ଓ କଂଜରଭେଟିଭ ଦଳର ବ୍ୟକ୍ତିମାନେ ଖ୍ରୀଷ୍ଟଙ୍କର ଏହି ଉପଦେଶକୁ ଗ୍ରହଣ କରିବେ ନାହିଁ କାରଣ ସେମାନେ ଏହିପରି ଏକ ପରିସ୍ଥିତିରେ ଖ୍ରୀଷ୍ଟଙ୍କର ମତଠାରୁ ସଂପୂର୍ଣ୍ଣ ଦୂରେଇ ଯାଇଛନ୍ତି ।

ଖ୍ରୀଷ୍ଟଙ୍କର ଅନ୍ୟ ଏକ ନିୟମ ରହିଛି ଯାହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ କିନ୍ତୁ ଖ୍ରୀଷ୍ଟିଆନ ବନ୍ଧୁମାନଙ୍କ ମଧ୍ୟରେ ତାହା ଆଦୃତ ଥିବା ମୁଁ ଅନୁଭବ କରେ ନାହିଁ । ସେ କହିଛନ୍ତି, ''ଯଦି ଆପଣ କୌଣସିଥିରେ ପୂର୍ଣ୍ଣତା ଲାଭ କରନ୍ତି ତେବେ ତାହା ଅନ୍ୟକୁ ପଛେ ବିକ୍ରି କରନ୍ତୁ କିନ୍ତୁ ଗରିବ ଲୋକମାନଙ୍କୁ ଦିଅନ୍ତୁ ।'' ଏହା ଏକ ଉତ୍ତମ ନିୟମ, କିନ୍ତୁ ଏହାକୁ ବିଶେଷ କାର୍ଯ୍ୟକାରୀ କରାଯାଏ ନାହିଁ । ଏହି ନିୟମ ଗୁଡ଼ିକ ମୋ ମତରେ ନିଶ୍ଚୟ ଉତ୍ତମ ଓ ଏହି ଆଦର୍ଶରେ ଜୀବନ ବଞ୍ଚିବା କିଛିଟା କଷ୍ଟସାଧ ନିଶ୍ଚୟ । ମୁଁ ସେହି ଆଦର୍ଶରେ ଯେ ବଞ୍ଚୁଛି ତାହା କହୁନାହିଁ । କିନ୍ତୁ ନିଜକୁ ଖ୍ରୀଷ୍ଟିଆନ କହୁଥିବା ଅଥଚ ଏହି ଆଦର୍ଶ ସକଳକୁ ପାଳନ କରିବାରେ ପ୍ରୟାସ କରୁନଥିବା ବ୍ୟକ୍ତି ଓ ମୋ ମଧ୍ୟରେ ନିଶ୍ଚୟ ପାର୍ଥକ୍ୟ ରହିଛି ।

## ଖ୍ରୀଷ୍ଟଙ୍କ ଶିକ୍ଷାରେ ଥିବା ତ୍ରୁଟି

ଏହି ନୀତିବାକ୍ୟ ଜନିତ ନିୟମଗୁଡ଼ିକର ଉତ୍କର୍ଷତାକୁ ସ୍ୱୀକାର କଲାପରେ ଖ୍ରୀଷ୍ଟଙ୍କ ପ୍ରଦତ୍ତ ସୁସମାଚାରରେ ତାଙ୍କର ଯେଉଁ ଉପଦେଶ ରହିଛି ସେସବୁକୁ ମହନୀୟ କହିବା ବା ଖ୍ରୀଷ୍ଟଙ୍କର ସେହି ବକ୍ତବ୍ୟ ପାଇଁ ତାଙ୍କ ପ୍ରଜ୍ଞାକୁ ସର୍ବଶ୍ରେଷ୍ଠ ଭାବିବା ମୁଁ ଯଥାର୍ଥ ମନେକରୁ ନାହିଁ । ଏଠାରେ କୌଣସି ଐତିହାସିକ ପ୍ରଶ୍ନ ସଂଶ୍ଲିଷ୍ଟ ନାହିଁ । ଯୀଶୁଖ୍ରୀଷ୍ଟ ଯେ ବାସ୍ତବରେ ଜଣେ ଐତିହାସିକ ବ୍ୟକ୍ତି ଏହା ସନ୍ଦେହ କରିବାରେ ଅନେକ କାରଣ ଅଛି । କାରଣ ଧରାପୃଷ୍ଠରେ ଜୀବନ ବଞ୍ଚିଥିବା ଜଣେ ଐତିହାସିକ ବ୍ୟକ୍ତିଭାବରେ ଖ୍ରୀଷ୍ଟଙ୍କୁ ନେବାରେ ସେପରି କିଛି ଭିତ୍ତି ନାହିଁ । ସୁତରାଂ ମୁଁ ଏଠାରେ କୌଣସି ଐତିହାସିକ ପ୍ରଶ୍ନ ସହ ଜଡ଼ିତ ନୁହେଁ, କାରଣ ଏହା ଏକ ଜଟିଳ ପ୍ରଶ୍ନ । କିନ୍ତୁ ସୁସମାଚାରରେ ଖ୍ରୀଷ୍ଟଙ୍କ ନାମରେ ଯେଉଁ ବକ୍ତବ୍ୟ ରହିଛି ସେହି ପୃଷ୍ଠଭୂମିରେ ମୁଁ ଏହା କହିବାକୁ ଚାହେଁ ଯେ ସେଥିରେ କେତେକ ବକ୍ତବ୍ୟ କୌଣସି ଦୃଷ୍ଟିରୁ ଉତ୍କୃଷ୍ଟ ମନେହୁଏ ନାହିଁ । ଉଦାହରଣ ସ୍ୱରୂପ

ଏହା କୁହାଯାଇଛି ଯେ ତାଙ୍କ ସହିତ ଜୀବନଧାରଣ କରିଥିବା ସମସ୍ତ ବ୍ୟକ୍ତିମାନଙ୍କର ମୃତ୍ୟୁ ପୂର୍ବରୁ ସେ ପୁନଶ୍ଚ ଗୌରବର ସହ ଦ୍ୱିତୀୟବାର ଆବିର୍ଭୂତ ହେବେ ବୋଲି ଚିନ୍ତା କରିଛନ୍ତି । ଅନେକ ଗ୍ରନ୍ଥରେ ଏହି ବକ୍ତବ୍ୟର ପ୍ରମାଣ ରହିଛି । ସେ ଏହିପରି କରିଛନ୍ତି, ''ଈଶ୍ୱର ପୁତ୍ରଙ୍କର ଆବିର୍ଭାବ ନ ହେବା ପର୍ଯ୍ୟନ୍ତ ତୁମେମାନେ ଇସ୍ରାଏଲର ଅନ୍ୟ ସହରକୁ ଯିବ ନାହିଁ ।'' ତା'ପରେ ସେ କହିଛନ୍ତି, ''ଈଶ୍ୱର ପୁତ୍ର ତାଙ୍କ ରାଜ୍ୟରେ ପ୍ରବେଶ ନ କରିବା ପର୍ଯ୍ୟନ୍ତ ତୁମେମାନେ ମୃତ୍ୟୁର ସ୍ପର୍ଶ ଅନୁଭବ କରିବ ନାହିଁ ।'' ଅନେକ ଜାଗାରେ ଥିବା ବକ୍ତବ୍ୟରୁ ଏହା ସ୍ପଷ୍ଟ ହୁଏ ଯେ ତାଙ୍କ ସହିତ ରହିଥିବା ଲୋକଙ୍କର ଜୀବନ କାଳ ଭିତରେ ସେ ଦ୍ୱିତୀୟବାର ଆବିର୍ଭୂତ ହେବେ ବୋଲି ବିଶ୍ୱାସ କରୁଥିଲେ । ତାଙ୍କର ପୂର୍ବ ଅନୁଗାମୀମାନେ ଏଥିରେ ବିଶ୍ୱାସ କରୁଥିଲେ ଓ ଏହା ହିଁ ତାଙ୍କର ନୈତିକ ଉପଦେଶର ଭିତ୍ତି ଥିଲା । ସେ ଯେତେବେଳେ କହିଥିଲେ, ''ଆଗାମୀ ଦିନ ପାଇଁ କୌଣସି ଭାବନା ରଖ ନାହିଁ''– ତାଙ୍କର ଏହି ପ୍ରକାରର ଉକ୍ତି ପଶ୍ଚାତରେ ତାଙ୍କର ଦ୍ୱିତୀୟ ଆବିର୍ଭାବ ଯେ ଖୁବ୍ ନିକଟରେ ହେବ ଏହା ହିଁ ସେ ଭାବିଥିଲେ । ସୁତରାଂ କୌଣସି ପାର୍ଥିବ ଘଟଣା ସେପରି କିଛି ତାତ୍ପର୍ଯ୍ୟପୂର୍ଣ୍ଣ ନ ଥିଲା । ବାସ୍ତବପକ୍ଷେ ମୁଁ ଏପରି କେତେକ ଖ୍ରୀଷ୍ଟିଆନଙ୍କୁ ଜାଣେ ଯେଉଁମାନେ ତାଙ୍କର ଦ୍ୱିତୀୟ ଆବିର୍ଭାବକୁ ଅତି ନିଷ୍ଠାର ସହ ବିଶ୍ୱାସ କରନ୍ତି । ମୁଁ ଏପରି ଜଣେ ବ୍ୟକ୍ତିଙ୍କୁ ଜାଣେ ଯେ କି ଏକ ସଙ୍ଗୋଷ୍ଠୀରେ ସମବେତ ଲୋକମାନଙ୍କୁ ଖ୍ରୀଷ୍ଟଙ୍କର ଦ୍ୱିତୀୟ ଆବିର୍ଭାବ ଖୁବ୍ ନିକଟ କହି ଅତି ଭୟଭୀତ କରାଇଥିଲେ । କିନ୍ତୁ ସେହି ଭଦ୍ରବ୍ୟକ୍ତି ତାଙ୍କ ବିଶ୍ୱାସକୁ ସମ୍ଭବତଃ ନିଷ୍ଠାର ସହ ଗ୍ରହଣ କରୁ ନ ଥିଲେ କାରଣ ସେ ନିଜ ଉଦ୍ୟାନରେ ବୃକ୍ଷରୋପଣ କରୁଥିଲେ । ତାଙ୍କ କାର୍ଯ୍ୟରୁ ହୁଏତ ଲୋକମାନେ ସାନ୍ତ୍ୱନା ପାଇଥିବେ ଯେ ତାଙ୍କ କଥାରେ କୌଣସି ସତ୍ୟତା ନାହିଁ । କିନ୍ତୁ ଅତୀତରେ ଖ୍ରୀଷ୍ଟିଆନମାନେ ଖ୍ରୀଷ୍ଟଙ୍କର କଥିତ ଦ୍ୱିତୀୟ ଆବିର୍ଭାବକୁ ଅତି ଆଗ୍ରହର ସହ ବିଶ୍ୱାସ କରୁଥିବା ଯୋଗୁଁ ବୃକ୍ଷରୋପଣ ପରି କାର୍ଯ୍ୟରୁ ନିଜକୁ ନିବୃତ୍ତ ରଖୁଥିଲେ । ଏହି କ୍ଷେତ୍ରରେ ସେ ଯେ ଯଥେଷ୍ଟ ପ୍ରାଜ୍ଞ ନ ଥିଲେ ଏହା ସୁସ୍ପଷ୍ଟ । ସୁତରାଂ ତାଙ୍କୁ ସର୍ବୋତ୍ତମ ଜ୍ଞାନୀ କହିବା ଯଥାର୍ଥ ମନେହୁଏ ନାହିଁ ।

## ନୈତିକ ସମସ୍ୟା

ଏବେ ନୈତିକ ପ୍ରଶ୍ନଗୁଡ଼ିକର ଅଲୋଚନା କରାଯାଉ । ମୋ ମତରେ ଖ୍ରୀଷ୍ଟଙ୍କର ନର୍କ ଭାବନା କ୍ଷେତ୍ରରେ ଗୁରୁତର ନୈତିକ ତ୍ରୁଟି ରହିଛି । କୌଣସି ଦରଦୀ ବ୍ୟକ୍ତି ଅନନ୍ତକାଳ ପାଇଁ କୌଣସି ବ୍ୟକ୍ତିଙ୍କୁ ଅସରନ୍ତି ଦଣ୍ଡଦେବା ପାଇଁ

ଚାହିଁବେ ମୁଁ ତାହା ଭାବୁ ନାହିଁ । ସୁସମାଚାରରେ ଯେଉଁ ବର୍ଣ୍ଣନା ରହିଛି ସେଥିରୁ ଏହା ଜଣାପଡ଼େ ଯେ ଖ୍ରୀଷ୍ଟ ଅସରନ୍ତି ଦଣ୍ଡରେ ବିଶ୍ୱାସ କରୁଥିଲେ । ଅର୍ଥାତ ଯେଉଁ ମଣିଷମାନେ ତାଙ୍କର ଉପଦେଶ ଶୁଣିବେ ନାହିଁ ସେମାନଙ୍କ ପ୍ରତି ଏପରି ଦଣ୍ଡ ବିଧାନ କରି ସେ ଯେ ପ୍ରତିହିଂସାମୂଳକ କ୍ରୋଧ ବ୍ୟକ୍ତ କରିଛନ୍ତି ତାହାର ସୂଚନା ମିଳେ । ଧର୍ମ ପ୍ରଚାରକମାନଙ୍କ କ୍ଷେତ୍ରରେ ଏହି ପ୍ରକାରର ପ୍ରତିହିଂସା ମନୋଭାବ ଦେଖିବା ଅବଶ୍ୟ ସାଧାରଣ ଅଟେ । କିନ୍ତୁ ଖ୍ରୀଷ୍ଟଙ୍କ କ୍ଷେତ୍ରରେ ଏହି ଭାବନା ତାଙ୍କର ସର୍ବୋତ୍ତମ ମହନୀୟତା ସହିତ ଅସଙ୍ଗତ ବୋଧ ହୁଏ । ସକ୍ରେଟିସ୍‌ଙ୍କ ପାଖରେ ଏହି ଦୃଷ୍ଟିକୋଣ ଦେଖିବାକୁ ମିଳେ ନାହିଁ । ଯେଉଁମାନେ ସକ୍ରେଟିସ୍‌ଙ୍କର କଥା ଶୁଣୁ ନ ଥିଲେ ସେ ସେମାନଙ୍କ ପ୍ରତି ଶିଷ୍ଟ ଓ ନମ୍ର ମନୋଭାବ ପୋଷଣ କରୁଥିଲେ । ମୋ ମତରେ ଜଣେ ସନ୍ଥଙ୍କ ପାଖରେ ନିଜର ପ୍ରତିପକ୍ଷ ବ୍ୟକ୍ତିମାନଙ୍କ ପ୍ରତି ରୋଷ ପ୍ରକାଶ କରିବା ପରିବର୍ତ୍ତେ ସକ୍ରେଟିସ୍‌ଙ୍କ ପରି ବ୍ୟବହାର ପ୍ରଦର୍ଶନ କରିବା ଉଚିତ ଅଟେ । ସକ୍ରେଟିସ୍ ମୃତ୍ୟୁବରଣ କରିବାକୁ ଯିବା ସମୟରେ ଯାହା କହିଥିଲେ ତାହା ଆପଣମାନେ ପ୍ରାୟ ମନେ ରଖିଥିବେ । ସେହିପରି ତାଙ୍କ ସହ ଯେଉଁମାନେ ଆଦୌ ଏକମତ ହେଉ ନ ଥିଲେ ସେମାନଙ୍କୁ ସେ କ'ଣ କହୁଥିଲେ ତାହା ମଧ ଆପଣମାନେ ଜାଣନ୍ତି ।

ସୁସମାଚାରରେ ଖ୍ରୀଷ୍ଟ କହିଛନ୍ତି, ''ତୁମେ ସବୁ ହିଂସ୍ର, ନିଷ୍ଠୁର, ତୁମେମାନେ ନର୍କରୁ କେବେହେଲେ ଉଦ୍ଧାର ପାଇବ ନାହିଁ ।'' ଯେଉଁମାନେ ତାଙ୍କର କଥା ଶୁଣି ନ ଥିଲେ ସେ ସେମାନଙ୍କ ଉଦ୍ଦେଶ୍ୟରେ ଏହା କହିଥିଲେ । ଏହା ଯେ ଏକ ଯଥାର୍ଥ ଦୃଷ୍ଟିକୋଣ ତାହା ମୁଁ ଭାବୁନାହିଁ । ନର୍କ ସଂପର୍କରେ ଏହିପରି ଅନେକ କଥା ରହିଛି । ସେହିପରି ଦେବଦୂତଙ୍କ ସମ୍ବନ୍ଧରେ ଉଲ୍ଲେଖ ଅଛି– ଯାହା ଅତି ଜଣାଶୁଣା– ''ଦେବଦୂତଙ୍କ ବିରୁଦ୍ଧରେ ଯେ କିଛି କହିବେ ସେ ଏହି ପୃଥିବୀରେ କିମ୍ବା ଆଗାମୀ ପୃଥିବୀରେ ତାଙ୍କଦ୍ୱାରା କେବେହେଲେ କ୍ଷମାର ପାତ୍ର ହେବେ ନାହିଁ ।'' ଏହି ବିବରଣ ପୃଥିବୀରେ ଅକଥନୀୟ ଦୁଃଖ ଯନ୍ତ୍ରଣା ସୃଷ୍ଟି ଦିଗରେ ସହାୟକ ହୋଇଛି । କାରଣ ବହୁ ଲୋକ ପବିତ୍ର ଆତ୍ମା ବିରୁଦ୍ଧରେ ପାପ କରିଛନ୍ତି ବୋଲି ଭାବନା ପୋଷଣ କରିଥାନ୍ତି । ସେମାନେ ଏହା ମଧ ଭାବନ୍ତି ଯେ ସେମାନେ ଏହି ପୃଥିବୀରେ ବା ଆଗାମୀ ସ୍ୱର୍ଗରାଜ୍ୟରେ କ୍ଷମାର ଅଧିକାରୀ ହୋଇପାରିବେ ନାହିଁ । ଜଣେ ସମ୍ବେଦନଶୀଳ ବ୍ୟକ୍ତି ନିଜକୁ ପାପୀ ଭାବି ଭୟାଳୁ ହେବା ବା ପୃଥିବୀ ବିଷୟରେ ଏ ପ୍ରକାର ଭୟାନକ ଭାବନା ପୋଷଣ କରିବା ଯଥାର୍ଥ ବୋଲି ମୁଁ ଭାବୁ ନାହିଁ ।

ଏହାପରେ ଖ୍ରୀଷ୍ଟ କହିଛନ୍ତି ''ଈଶ୍ୱର ପୁତ୍ର ତାଙ୍କର ଦେବଦୂତମାନଙ୍କୁ

ପଠାଇବେ, ପୀଡ଼ାଦାୟକ ସମସ୍ତ ବସ୍ତୁ ସକଳକୁ ସେମାନେ ତାଙ୍କ ରାଜ୍ୟରୁ ସଂଗ୍ରହ କରିବେ, ସମସ୍ତ ଅତ୍ୟାଚାରୀମାନଙ୍କୁ ଏକତ୍ର କରିବେ ଓ ଏହାପରେ ସେସମସ୍ତଙ୍କୁ ପ୍ରଜ୍ୱଳିତ ଅଗ୍ନି ମଧ୍ୟକୁ ନିକ୍ଷେପ କରିବେ, ସେମାନେ ବିଳାପ କରି ପରିଣାମ ଭୋଗ କରିବେ।'' ପାପୀମାନଙ୍କୁ ନର୍କରେ ଅଗ୍ନିରେ ପୂରାଇ ସେମାନଙ୍କୁ ଦଣ୍ଡବିଧାନ କରାଇବେ। ଅନେକ ପଂକ୍ତିରେ ଏହି ବର୍ଣ୍ଣନା ଦେଖିବାକୁ ମିଳେ। ପାପୀମାନଙ୍କୁ ଏହି ଦଣ୍ଡ ଦେବାରେ ଦେବଦୂତ ଆନନ୍ଦ ଉପଭୋଗ କରିବା ପାଠକମାନେ ଅନୁଭବ କରିଥିବେ। ସେ ତାଙ୍କର ଦ୍ୱିତୀୟ ଆଗମନ ସମୟରେ ମେଣ୍ଢା ଓ ଛେଳିମାନଙ୍କ ସଂପର୍କରେ ଯାହା କରିବାକୁ କହିଛନ୍ତି ତାହା ଆପଣମାନେ ମନେ ରଖିଥିବେ। ସେ ମେଣ୍ଢାମାନଙ୍କୁ ଛେଳିମାନଙ୍କ ଠାରୁ ପୃଥକ କରାଇ ଛେଳିମାନଙ୍କ ଉଦ୍ଦେଶ୍ୟରେ କହିଛନ୍ତି, ''ତୁମେମାନେ ମୋ'ଠାରୁ ଦୂର ହୋଇଯାଅ, ତୁମେ ସବୁ ଅଭିଶପ୍ତ ତୁମେ ସେହି ଅସରନ୍ତି ଅଗ୍ନିରେ ପ୍ରବେଶ କରିବାକୁ ଯୋଗ୍ୟ।'' ସେ ପୁନଶ୍ଚ କହିଛନ୍ତି, ''ଯଦି ତୁମର ହାତ ତୁମକୁ ଅସମ୍ମାନ କରୁଛି, ତେବେ ଏହାକୁ କାଟିଦିଅ। ପଙ୍ଗୁ ହୋଇ ଜୀବନରେ ବଞ୍ଚିବା ସୁସ୍ଥ ସବଳ ହୋଇ ନର୍କରେ ପ୍ରବେଶ କରି ଅଗ୍ନିରେ ଦାହ ହେବା, ଯାହା କେବେ ବି ନିର୍ବାପିତ ହେବ ନାହିଁ, ଅପେକ୍ଷା ଅଧିକ ଶ୍ରେୟସ୍କର ଅଟେ। ସେହି ଅଗ୍ନିରେ ଗୋଟିଏ ପତଙ୍ଗ ମଧ ମୃତ୍ୟୁବରଣ ନ କରି କେବଳ ଯନ୍ତ୍ରଣା ପାଉଥାଏ।'' ସେ ଏହି କଥାକୁ ବାରମ୍ବାର କହିଛନ୍ତି। ପାପର ଦଣ୍ଡ ସ୍ୱରୂପ ନର୍କର ଅଗ୍ନିରେ ସବୁ ସମୟ ପାଇଁ ଦହନର ଯନ୍ତ୍ରଣା ଭୋଗ କରିବା ମୋ ମତରେ ଏକ ନିଷ୍ଠୁର ବିଧାନ ଅଟେ। ଏହି ବିଧାନ ଯୋଗୁଁ ପୃଥିବୀରେ ନିଷ୍ଠୁରତାକୁ ଗ୍ରହଣ କରାଯାଇ ପୁରୁଷାନୁକ୍ରମେ ଏହାକୁ ସାବ୍ୟସ୍ତ କରାଯାଇଛି। ସୁସମାଚାରରେ ଖ୍ରୀଷ୍ଟଙ୍କର ଏହି ଯେଉଁ ବକ୍ତବ୍ୟ ରହିଛି ଓ ଯାହାର ଆଧାର ଉପରେ ସମାଜରେ ବିଭିନ୍ନ ବ୍ୟବସ୍ଥା ହୋଇଛି ସେ କ୍ଷେତ୍ରରେ ସେ ଯେ ଆଂଶିକ ଭାବରେ ଦାୟୀ ଏହା କହିବା ଅସମୀଚୀନ ହେବ ନାହିଁ।

ଏହା ଅପେକ୍ଷା କମ୍ ଗୁରୁତ୍ୱପୂର୍ଣ୍ଣ ଘଟଣା ମଧ ରହିଛି। ମଦାରିନ ଘୁଷୁରି ଘଟଣାରେ ସେ ଆଦୌ ଦୟାଶୀଳ ହୋଇନାହାନ୍ତି। ବରଂ ସେ ସଇତାନକୁ ଘୁଷୁରିମାନଙ୍କ ପାଖରେ ରହିବାକୁ କହିଛନ୍ତି ଓ ପାହାଡ଼ ଉପରୁ ଆସି ସମୁଦ୍ର ପାଖକୁ ଚାଲିଯିବାକୁ ଚାହିଁଛନ୍ତି। ଆପଣମାନେ ଜାଣନ୍ତି ସେ ସର୍ବଶକ୍ତିମାନ, ଫଳରେ ଶୈତାନକୁ ଚାଲିଯିବାକୁ ସେ ନିର୍ଦ୍ଦେଶ ଦେଇ ପାରିଥାନ୍ତେ କିନ୍ତୁ ତାହା ନ କରି ସେ ଘୁଷୁରିମାନଙ୍କ ପାଖରେ ରହିବାକୁ ଶୈତାନକୁ ନିର୍ଦ୍ଦେଶ ଦେଲେ। ସେହିପରି ଡିମିରି ଗଛ ସକ୍ରାନ୍ତୀୟ କୌତୁହଳପ୍ରଦ ଗଳ୍ପଟି ମୋତେ ବେଳକେ

ବିସ୍ମିତ କରିଥାଏ । ଡିମିରିଗଛର କ'ଣ ହେଲା ଆପଣମାନେ ପ୍ରାୟ ମନେ ରଖିଥିବେ । ଘଟଣାଟି ହେଲା, ''ସେ କ୍ଷୁଧିତ ଥିଲେ ଓ ଅନତି ଦୂରରେ ଗୋଟିଏ ଡିମରି ଗଛର ପତ୍ର ଦେଖିବାକୁ ପାଇ କିଛି ଖାଦ୍ୟ ପାଇବା ଆଶାରେ ଗଛ ପାଖକୁ ଆସିଲେ । କିନ୍ତୁ ଯେତେବେଳେ ସେ ସେଠାରେ ଉପସ୍ଥିତ ହେଲେ ସେତେବେଳେ ଗଛରେ କେବଳ ପତ୍ରସବୁ ଦେଖିଲେ, ଗଛରେ ଫଳ ଧରିବାର ସମୟ ତାହା ନ ଥିଲା । ଯୀଶୁ ଗଛକୁ କହିଲେ, ''ଏହା ପରଠାରୁ କେହି କେବେ ବି ଏହି ଗଛର ଫଳ ଖାଇବେ ନାହିଁ''.... ଏବଂ ପିଟର..... ତାଙ୍କୁ କହିଲେ, ''ପ୍ରଭୁ, ଯେଉଁ ଡିମିରି ଗଛକୁ ଆପଣ ଅଭିଶାପ ଦେଲେ ତାହା ସଂପୂର୍ଣ୍ଣ ଝାଉଁଳି ପଡ଼ିଲାଣି'।'' ଏହା ଏକ ବିଚିତ୍ର ଗଳ୍ପ । ସେହି ସମୟ ଗଛ ଫଳ ଧରିବାର ସମୟ ନ ଥିଲା, ଫଳରେ ଗଛରେ ଫଳ ନ ଥିଲା ବୋଲି ତାକୁ ଦାୟୀ କରିବା ଯଥାର୍ଥ ନୁହେଁ । ସୁତରାଂ ପ୍ରଜ୍ଞା ଓ ମହନୀୟତା କୌଣସି ଦୃଷ୍ଟିରୁ ଯୀଶୁ ମୋ ମତରେ ସର୍ବୋତ୍କୃଷ୍ଟ ନୁହନ୍ତି । କାରଣ ଇତିହାସରେ ଏପରି କେତେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ଖ୍ରୀଷ୍ଟଙ୍କ ତୁଳନାରେ ଅଧିକ ମହନୀୟ ମନେହେବେ । ଅନ୍ତତଃ ବୁଦ୍ଧ ଓ ସକ୍ରେଟିସ୍‌ଙ୍କୁ ମୁଁ ଯୀଶୁଙ୍କ ଅପେକ୍ଷା ଅଧିକ ମହାନ ବୋଲି ମନେକରେ ।

## ଆବେଗପୂର୍ଣ୍ଣ ବିଷୟ

ଲୋକମାନେ ଧର୍ମକୁ ଗ୍ରହଣ କରିବା କ୍ଷେତ୍ରରେ କୌଣସି ଯୁକ୍ତିଗତ କାରଣ ରହିଥିବା ମୁଁ ବିଚାର କରୁନାହିଁ । ବରଂ ସେମାନେ ଏହାକୁ ଏକ ଆବେଗିକ ସ୍ତରରେ ଗ୍ରହଣ କରିଥାନ୍ତି । ଅନେକ ସମୟରେ ଏହା କୁହାଯାଏ ଯେ ଧର୍ମକୁ ସମାଲୋଚନା କରିବା ଯଥାର୍ଥ ନୁହେଁ କାରଣ ଧର୍ମ ବ୍ୟକ୍ତିମାନଙ୍କୁ ମହନୀୟ କରିଥାଏ । ମୋତେ ଯଦିବି ଏପରି କୁହାଯାଏ ତେବେ ମୁଁ ଏହାର ଯଥାର୍ଥତା ଅନୁଭବ କରେ ନାହିଁ । ସାମୁଏଲ ବଟଲରଙ୍କ ପୁସ୍ତକ ''ଏରୋହନ ରିଭିଜିଟେଡ଼'' (Erewhon Revisited) ପୁସ୍ତକରେ ଥିବା ପ୍ରହେଳିକା ଆପଣମାନେ ପ୍ରାୟ ଜାଣନ୍ତି । ସେହି ପୁସ୍ତକରେ ରହିଥିବା ଚରିତ୍ର, ହିଗ୍‌ସ, ଏକଦା ଏକ ଦୂର ଦେଶରେ ପହଞ୍ଚିଲେ ଓ ସେଠାରେ କିଛି ସମୟ ରହିବା ପରେ ସେ ସେହି ଦେଶରୁ ଏକ ବେଲୁନ ଯୋଗେ ଚାଲିଗଲେ । କୋଡ଼ିଏ ବର୍ଷ ପରେ ସେ ପୁନଶ୍ଚ ଯେତେବେଳେ ସେହି ଦେଶକୁ ଯା'ନ୍ତି ସେ ସେଠାରେ ଏକ ନୂଆ ଧର୍ମର ପ୍ରବର୍ତ୍ତନ ହୋଇଥିବା ଦେଖିଲେ । ସେହି ଧର୍ମରେ ତାଙ୍କୁ ''ସୂର୍ଯ୍ୟ ସନ୍ତାନ'' (Sun child) ଭାବରେ ଉପାସନା କରାଯାଉଛି ଓ ସେ ଯେ ସ୍ୱର୍ଗକୁ ଆରୋହଣ କରିଛନ୍ତି ଏହା ବିଶ୍ୱାସ କରାଯାଉଛି । ତାଙ୍କର ଊର୍ଦ୍ଧ୍ୱଗମନ ଦିବସକୁ ଏକ ପର୍ବ ଭାବରେ ପାଳନ କରିବାକୁ

ଆୟୋଜନ ଚାଲିଛି । ହାର୍କି ଓ ପାର୍କି ପଣ୍ଡିତଦ୍ୱୟ ଏ ପ୍ରକାର କଥାହେବା ସେ ଶୁଣିଲେ ଯେ ସେମାନେ ହିଗ୍ସଙ୍କୁ ଦର୍ଶନ କରି ନାହାନ୍ତି ଓ ସେମାନେ ଯେ ତାଙ୍କ ଦର୍ଶନ କେବେ ଆଉ ପାଇବେ ତାହା ମଧ ଭାବୁ ନାହାନ୍ତି । ତଥାପି ସୂର୍ଯ୍ୟ-ସନ୍ତାନ ଧର୍ମର ସେମାନେ ହେଉଛନ୍ତି ଶ୍ରେଷ୍ଠ ପୂଜକ । ସେ ଏହା ଦେଖି ଅତ୍ୟନ୍ତ କ୍ରୁଦ୍ଧ ହୋଇ ହାର୍କି ଓ ପାର୍କିଙ୍କ ପାଖକୁ ଆସି କହିଛନ୍ତି, "ଏହି ସବୁ ଠକାମିକୁ ମୁଁ ଖୋଲିଦେବାକୁ ଚାହେଁ ଏରୋହନର ଜନଗଣଙ୍କୁ ମୁଁ କହିବାକୁ ଚାହୁଁଛି ଯେ ମୁଁ ହେଉଛି ସେହି ହିଗ୍ସ । ମୁଁ ହିଁ ଏଠାରୁ ଏକ ବେଲୁନ ସାହାଯ୍ୟରେ ଉଡ଼ିଚାଲିଯାଇଥିଲି ।" ଏହାପରେ ତାଙ୍କୁ କୁହାଗଲା, "ଆପଣ ସେପରି କରିବା ଠିକ୍ ନୁହେଁ, କାରଣ ଏହି କାଳ୍ପନିକ କାହାଣୀକୁ ନେଇ ଏ ଦେଶର ସମସ୍ତ ନୈତିକ ଆଦର୍ଶ ଗଢ଼ି ଉଠିଛି । ଯଦି ଆପଣ ସ୍ୱର୍ଗାରୋହଣ କରି ନଥିବା ବିଷୟ ଲୋକମାନେ ଜାଣିବେ ସେମାନେ ନୀତିଭ୍ରଷ୍ଟ ହୋଇଯିବେ ।" ତାଙ୍କୁ ଏହିପରି କହି ଚାଲିଯିବାକୁ ବାଧ୍ୟ କରାଗଲା । ସେ ଶେଷରେ ନୀରବରେ ଚାଲିଯିବାକୁ ବାଧ ହେଲେ ।

ସେହିପରି ଆମେମାନେ ଯଦି ଖ୍ରୀଷ୍ଟଧର୍ମକୁ ଗ୍ରହଣ କରିବା ନାହିଁ ତେବେ ଆମେ ସମସ୍ତେ ଦୁରାଚାରୀ ହୋଇଯିବା ବୋଲି କୁହାଯାଏ । ମୋ ମତରେ ଯେଉଁମାନେ ଏହି ଧର୍ମକୁ ଧରି ରହିଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ଅନୈତିକ । ଏହା ଅତ୍ୟନ୍ତ ପ୍ରହେଳିକାପୂର୍ଣ୍ଣ ମନେହେଲେ ବି ସତ୍ୟ ଯେ ଯେତେବେଳେ ଧର୍ମର ପ୍ରଭାବ ସମାଜରେ ଅଧିକ ହୋଇଛି ସମାଜରେ ଅନ୍ଧବିଶ୍ୱାସ ଦୃଢ଼ ହେବା ସହିତ କ୍ରୂରତା ଓ ସାମାଜିକ କ୍ଷୟଶୀଳତା ବୃଦ୍ଧି ପାଇଛି । ମଧ୍ୟଯୁଗରେ ଯେତେବେଳେ ଲୋକମାନେ ଖ୍ରୀଷ୍ଟଧର୍ମକୁ ପୂର୍ଣ୍ଣାଙ୍ଗ ଭାବରେ ଗ୍ରହଣ କରୁଥିଲେ ସେତେବେଳେ ଧର୍ମାନ୍ତରୀକରଣ ନାମରେ ନାନା ଅତ୍ୟାଚାର ହେଉଥିଲା; ଲକ୍ଷ ଲକ୍ଷ ହତଭାଗ୍ୟ ମହିଳାମାନଙ୍କୁ ଡାଆଣୀ ବୋଲି ମନେକରି ପୋଡ଼ି ମାରି ଦିଆଯାଉଥିଲା ଏବଂ ଧର୍ମ ନାମରେ ବିଭିନ୍ନ ଲୋକମାନଙ୍କ ଉପରେ ନାନା ପ୍ରକାର ନିଷ୍ଠୁର ବ୍ୟବହାର କରାଯାଉଥିଲା ।

ଆପଣମାନେ ଯେତେବେଳେ ପୃଥିବୀର ବିଭିନ୍ନ ଦେଶର ଐତିହାସିକ ଘଟଣାବଳୀକୁ ଅନୁସନ୍ଧାନ କରିବେ ଆପଣ ଦେଖିବାକୁ ପାଇବେ ଯେ ପ୍ରତ୍ୟେକ ପ୍ରଗତିଶୀଳ କାର୍ଯ୍ୟ, ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ, ଅପରାଧ ନିୟମରେ ଉନ୍ନତି ବିଧାନ, ଯୁଦ୍ଧ ହ୍ରାସ ପାଇଁ ପଦକ୍ଷେପ, କଳା ଲୋକଙ୍କ ପ୍ରତି ଉତ୍ତମ ବ୍ୟବହାର ପାଇଁ କାର୍ଯ୍ୟସୂଚୀ, ଦାସତ୍ୱ ପ୍ରଥାର ଲାଘବ ଓ ନୈତିକ ଉନ୍ନତି ବିଧାନ ପରି କାର୍ଯ୍ୟକ୍ରମମାନଙ୍କୁ ଚର୍ଚ୍ଚମାନେ ସଂଗଠିତ ଓ ଧାରାବାହିକ ଭାବରେ ବିରୋଧ କରି

ଆସିଛନ୍ତି । ମୁଁ ଦୃଢ଼ତାର ସହ ଏହା କହିବାକୁ ଚାହେଁ ଯେ ଚର୍ଚ୍ଚମାନଙ୍କ ଦ୍ୱାରା ବ୍ୟବସ୍ଥିତ ହୋଇଥିବା ଖ୍ରୀଷ୍ଟ ଧର୍ମ ପୃଥିବୀର ବିଭିନ୍ନ ସମାଜରେ ନୈତିକ ପ୍ରଗତି ପାଇଁ ସର୍ବଦା ଅନ୍ତରାୟ ହୋଇ ଆସିଛି ଓ ଏବେ ମଧ୍ୟ ହେଉଛି ।

## ଚର୍ଚ୍ଚ ପ୍ରଗତି ପାଇଁ ଅନ୍ତରାୟ

ଏପରି କହିବାଦ୍ୱାରା ହୁଏତ ମୁଁ ବହୁ ଦୂରକୁ ଚାଲିଯାଉଛି ବୋଲି ଆପଣମାନେ କହିପାରନ୍ତି । କିନ୍ତୁ ମୋର ମତ କୌଣସିମତେ ଭିତ୍ତିହୀନ ନୁହେଁ । ଗୋଟିଏ ଘଟଣା ବିଚାର କରନ୍ତୁ । ଏହା ଅବଶ୍ୟ ଏକ ସୁଖପ୍ରଦ ଦୃଷ୍ଟାନ୍ତ ନୁହେଁ, ବରଂ ଏହି ଉଦାହରଣ ଦେବାରେ ଚର୍ଚ୍ଚର ଭୂମିକା ମୋତେ ବାଧ କରୁଛି । ମନେକରନ୍ତୁ ଆମ ସଂସାରରେ ଅନୁଭୂତି ନ ଥିବା ଜଣେ ଯୁବତୀ ସିଫିଲିସ (ଉପଦଂଶ ରୋଗ) ରୋଗାକ୍ରାନ୍ତ ଜଣେ ଯୁବକଙ୍କୁ ବିବାହ କଲେ । ସେପରି କ୍ଷେତ୍ରରେ କାଥୋଲିକ ଚର୍ଚ୍ଚର ମତ ହେଉଛି, ''ବିବାହ ହେଉଛି ଏକ ଧର୍ମାନୁମୋଦିତ ଅତୁଟ ସମ୍ବନ୍ଧ, ତୁମକୁ ଜୀବନସାରା ଏକତ୍ର ରହିବାକୁ ହିଁ ହେବ ।'' ସେହି ବିବାହିତା ନାରୀ ଜଣଙ୍କ ସିଫିଲିସ ଦ୍ୱାରା ଆକ୍ରାନ୍ତ କୌଣସି ସନ୍ତାନ ଜନ୍ମ ଦେବା କ୍ଷେତ୍ରରେ କୌଣସି ପ୍ରତିବନ୍ଧକ କୌଣସି ସମୟରେ ସୃଷ୍ଟି କରିପାରିବେ ନାହିଁ, କିମ୍ବା ସନ୍ତାନ ଜନ୍ମ ନ ହେବା ପାଇଁ କିଛି ନିୟୋଜନ କରିପାରିବେ ନାହିଁ । ଏହା ଯେ ଏକ ବର୍ବର ନିଷ୍ଠୁରତା ଏହା ମୋର ମତ । ଜଣଙ୍କର ମାନବିକ ସମ୍ବେଦନଶୀଳ ଦୃଷ୍ଟିଟି ଧର୍ମୀୟ କୁସଂସ୍କାର ଦ୍ୱାରା ଆଚ୍ଛାଦିତ ହୋଇ ନ ଥିଲେ ବା ଜଣଙ୍କର ସମସ୍ତ ନୈତିକ ଆବେଗ ମରିଯାଇ ନ ଥିଲେ ଜଣେ ଧର୍ମୀୟ ଭାବନାକୁ ଗୁରୁତ୍ୱ ଦେଇ ଏହି ପ୍ରକାର କାର୍ଯ୍ୟ ଚାଲୁ ରହିବା ଯଥାର୍ଥ ବୋଲି କହିପାରିବ ନାହିଁ ।

ଏହା କେବଳ ଏକ ଉଦାହରଣ ମାତ୍ର । ଏପରି ଅନେକ ବ୍ୟବସ୍ଥା ଏବେ ମଧ୍ୟ ରହିଛି ଯେଉଁ କ୍ଷେତ୍ରରେ ଚର୍ଚ୍ଚ ନିଜ ମାନଦଣ୍ଡରେ ବିଚାର କରୁଥିବା କେତେକ କାର୍ଯ୍ୟକୁ ନୀତିପୂର୍ଣ୍ଣ ବୋଲି କହି ଲୋକମାନଙ୍କ ଉପରେ ଲଦିଦେଇ ସେମାନଙ୍କୁ ଅନାବଶ୍ୟକ ଓ ପରିହାର୍ଯ୍ୟ ଦୁଃଖ ଯନ୍ତ୍ରଣା ଭିତରକୁ ଠେଲି ଦେଇଛି । ଯେଉଁ ସବୁ କାର୍ଯ୍ୟଦ୍ୱାରା ମଣିଷର ଦୁଃଖ କଷ୍ଟକୁ ଲାଘବ କରାଯାଇଛି ସେସବୁକୁ ସର୍ବଦା ବିରୋଧ କରିବାରେ ଚର୍ଚ୍ଚ ପ୍ରମୁଖ ଭୂମିକା ନେଇଛି । ଏହାର କାରଣ ହେଉଛି ଏହା ଏପରି କେତେକ ବିଧି ଓ ନିୟମକୁ ନୀତିପୂର୍ଣ୍ଣ ବୋଲି ଗ୍ରହଣ କରିଛି ଯାହା ବାସ୍ତବରେ ମଣିଷର ସୁଖ ଶାନ୍ତି ସହ ଆଦୌ ସମ୍ବନ୍ଧିତ ନୁହେଁ । ସେମାନେ କେତେକ ସଂକୀର୍ଣ୍ଣ ନୀତି ନିୟମକୁ ଗ୍ରହଣ କରି ମଣିଷର ଶାନ୍ତି ପାଇଁ ପଦକ୍ଷେପକୁ

ବିରୋଧ କରିଥାନ୍ତି । ମଣିଷର ସୁଖ ଶାନ୍ତି ସହ ନୈତିକତାର ସମ୍ବନ୍ଧ କ'ଣ ରହିଛି ? ସେମାନଙ୍କ ମତରେ ନୈତିକତା ଲୋକଙ୍କର ସୁଖ ଶାନ୍ତି ପାଇଁ ଉଦ୍ଦିଷ୍ଟ ନୁହେଁ, ବରଂ ଏହାର ଉଦ୍ଦେଶ୍ୟ କେବଳ ସ୍ୱର୍ଗପ୍ରାପ୍ତି ପାଇଁ ଅଭିପ୍ରେତ । ଏହି ସାଂସାରିକ ଜୀବନ ସହିତ ସେମାନଙ୍କର ଆଦର୍ଶ ଯେ ଅସଙ୍ଗତ ଏହା ନିଶ୍ଚିତ ଭାବେ କୁହାଯାଇ ପାରେ ।

## ଧର୍ମର ଭିତ୍ତି ଭୟ

ମୋ ମତରେ ଧର୍ମର ମୂଳ ଓ ପ୍ରଧାନ ଭିତ୍ତି ହେଉଛି ଭୟ । ଏହା ଅଦୃଷ୍ଟର ଭୟ ହୋଇପାରେ, ପରାଜୟ ବା ମୃତ୍ୟୁର ଭୟ ହୋଇପାରେ । ବିପଦ ଓ ଅସୁବିଧା ସମୟରେ ସାହାଯ୍ୟ କରିବା ପାଇଁ ଜଣେ ବଡ଼ ଭାଇର ସହାୟତା ଆବଶ୍ୟକ ପରି ଅନୁଭବରୁ ଏସବୁର ସୃଷ୍ଟି । ଭୟ ହେଉଛି ନିଷ୍ଠୁରତାର ଜନନୀ । ସୁତରାଂ ନିଷ୍ଠୁରତା ଓ ଧର୍ମ ପରସ୍ପର ସମ୍ମିଳିତ ହୋଇ ରହିଛନ୍ତି କହିବା ପଶ୍ଚାତରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏ ଉଭୟର ଆଧାର ହେଉଛି ଭୟ । ବିଜ୍ଞାନ ସାହାଯ୍ୟରେ ଏ ସଂସାରର ଘଟଣା ପ୍ରବାହକୁ ବୁଝିବା ପାଇଁ ଆମେ କିଛି ପ୍ରୟାସ କରିପାରିବା । ବିଜ୍ଞାନ ସାହାଯ୍ୟରେ ଏହାକୁ ମଧ୍ୟ ଆମେ କେତେକାଂଶରେ ନିୟନ୍ତ୍ରଣ ଭିତରକୁ ଆଣି ପାରିବା । ଖ୍ରୀଷ୍ଟଧର୍ମ, ଚର୍ଚ୍ଚ ବ୍ୟବସ୍ଥା ଓ ପ୍ରାଚୀନ ବିଶ୍ୱାସ ସକଳରୁ ଉଦ୍ଭବ ପ୍ରତିକୂଳତା ବିରୁଦ୍ଧରେ ଠିଆହୋଇ ବିଜ୍ଞାନ ଧୀରେ ଧୀରେ ଅଗ୍ରଗତି କରିଛି । ଯୁଗ ଯୁଗ ଧରି ପୁରୁଷାନୁକ୍ରମେ ମଣିଷ ଯେଉଁ ଭୀରୁତାକୁ ନେଇ ବଞ୍ଚି ଆସିଛି ସେଥିରୁ ମୁକ୍ତ ହେବାକୁ ବିଜ୍ଞାନ ସାହାଯ୍ୟ କରିପାରିବ । କୌଣସି ଆହ୍ୱାନର ମୁକାବିଲା ପାଇଁ ବିଜ୍ଞାନ ଯେପରି ଆମକୁ ଶିକ୍ଷାଦେଇ ପାରିବ, ଆମର ଅନ୍ତରାତ୍ମା ମଧ୍ୟ ସେହିପରି ଆମକୁ ଆତ୍ମବିଶ୍ୱାସ ଦେଇପାରିବ । କୌଣସି ସାହାଯ୍ୟ ପାଇଁ କାଳ୍ପନିକ ଶକ୍ତିକୁ ଉଦ୍ଭାବନ କରିବାର ଆବଶ୍ୟକତା ନାହିଁ । ଆମ ସଂସାରକୁ ଆମ ଜୀବନ ଧାରଣ ପାଇଁ ଅର୍ଥପୂର୍ଣ୍ଣ ଭାବେ ଉପଯୋଗୀ କରିବାକୁ ହେଲେ ଯୁଗ ଯୁଗ ଧରି ଚର୍ଚ୍ଚ ସମାଜକୁ ଯେପରି କରି ରଖିଛି ସେଥିରେ ପରିବର୍ତ୍ତନ ଆଣି ଆମକୁ ଆମ ସାମର୍ଥ୍ୟ ଉପରେ ଆସ୍ଥା ସ୍ଥାପନ କରିବାକୁ ହେବ ।

## ଆମେ କ'ଣ କରିବା ଆବଶ୍ୟକ

ଆମେ ଆମ ନିଜ ଶକ୍ତି ବଳରେ ଛିଡ଼ା ହୋଇ ଜଗତ ପ୍ରତି ଏକ ନ୍ୟାୟପୂର୍ଣ୍ଣ ଓ ମାନବିକ ଦୃଷ୍ଟି ପୋଷଣ କରିପାରିବା । ଜଗତର ସମସ୍ତ ଭଲମନ୍ଦ, ସୁନ୍ଦର ଅସୁନ୍ଦର ଘଟଣା ଭିତରେ ଏହାର ସକଳ ବାସ୍ତବତାକୁ ନିର୍ଭୟରେ ଗ୍ରହଣ କରିବା

ଆବଶ୍ୟକ । ଏହାର ଭୟଙ୍କର ଘଟଣା ପ୍ରବାହ ପାଖରେ ନତ ମସ୍ତକ ହୋଇ ସମର୍ପଣ କରିବା ପରିବର୍ତ୍ତେ ବୁଦ୍ଧି ବଳରେ ଏହାକୁ ନିୟନ୍ତ୍ରଣ କରିବା ପାଇଁ ପ୍ରୟାସୀ ହେବା ଦରକାର । ପ୍ରାଚୀନ ପ୍ରାଚ୍ୟ ସ୍ୱେଚ୍ଛାଚାରିତା ଭିତରୁ ଈଶ୍ୱର ପ୍ରତୀତିର ଉଦ୍ଭବ ହୋଇଛି । ଜଣେ ସ୍ୱାଧୀନଚେତା ମଣିଷର ଦୃଷ୍ଟିକୋଣ ସହିତ ଈଶ୍ୱର ଭାବନା ମେଳଖାଏ ନାହିଁ । ଚର୍ଚ୍ଚରେ ଯେତେବେଳେ ଲୋକମାନେ ନିଜକୁ ଭ୍ରଷ୍ଟ ଓ ଭୟଙ୍କର ପାପୀ ବୋଲି ଚିତ୍ରଣ କରିବା ଆପଣ ଶୁଣନ୍ତି ସେତେବେଳେ ବ୍ୟକ୍ତିର ଆତ୍ମ ମର୍ଯ୍ୟାଦା ଓ ମଣିଷର ସ୍ଥିତି ନ୍ୟୁନ ହୋଇଯାଏ । ଆମେ ଆତ୍ମ ବିଶ୍ୱାସର ସହ ସଂସାରର ବାସ୍ତବତାକୁ ସମ୍ମୁଖୀନ ହେବା ଆବଶ୍ୟକ । ଅର୍ଥାତ ଜଗତରେ ଆମ ଉତ୍କର୍ଷତାର ପ୍ରତିପାଦନ ପାଇଁ ପ୍ରୟାସ ରହିବା ଦରକାର । ଆମର ଇଚ୍ଛା ସତ୍ତ୍ୱେ ବି ଏହା ଯଦି ଆମର ଆଶାନୁଯାୟୀ ସୁନ୍ଦର ହୋଇପାରୁ ନାହିଁ, ତଥାପି ମଧ୍ୟ ବର୍ତ୍ତମାନ ସୁଦ୍ଧା ଏହା ଯେଉଁ ସ୍ତରକୁ ଆସିଛି ଆମର ପ୍ରଚେଷ୍ଟା ଦ୍ୱାରା ଏହା ଅନ୍ତତଃ ତା'ଠାରୁ ଉନ୍ନତ ହୋଇ ପାରିବ । ଏକ ସୁନ୍ଦର ପୃଥିବୀ ଜ୍ଞାନ, କରୁଣା ଓ ସାହସ ଆବଶ୍ୟକ କରେ, ଅତୀତକୁ ଝୁରିବା ବା ଅଜ୍ଞ ବ୍ୟକ୍ତିମାନେ ବହୁ କାଳ ତଳେ ଯାହା କହିଥିଲେ ତାହାକୁ ଭଜି ହୋଇ ଶୃଙ୍ଖଳର ବେଡ଼ି ଭିତରେ ବାନ୍ଧି ହୋଇ ରହିବା ଏହା ଦରକାର କରେ ନାହିଁ । ଏକ ସୁନ୍ଦର ପୃଥିବୀ ପାଇଁ ଭୟଶୂନ୍ୟ ଦୃଷ୍ଟି ଓ ମୁକ୍ତ ଚିନ୍ତନର ଆବଶ୍ୟକତା ରହିଛି । ଅତିକ୍ରାନ୍ତ ହୋଇ ଯାଇଥିବା ଅତୀତରେ ଆବଦ୍ଧ ନ ରହି ଭବିଷ୍ୟତ ପାଇଁ ଆଶା ପୋଷଣ କରିଚାଲିବା ଆବଶ୍ୟକ । କାରଣ ଆମର ବୁଦ୍ଧିଦ୍ୱାରା ଆମେ ଆମର ଭବିଷ୍ୟତକୁ ରୂପଦେଇ ଏକ ସୁନ୍ଦର ପୃଥିବୀ ସୃଷ୍ଟି କରିପାରିବା ।



# ଜଣେ ହେତୁବାଦୀର ବିଶ୍ୱାସ

**ବର୍ଟ୍ରାଣ୍ଡ ରସେଲ**

ମୋର ମତଗୁଡ଼ିକର ବ୍ୟବହାରିକ ତଥା ସୈଦ୍ଧାନ୍ତିକ ଉଭୟ ସଂପର୍କରେ ମୁଁ ଯେତେବେଳେ ଅନୁସନ୍ଧାନ କରେ ମୁଁ ସେମାନଙ୍କର ମୂଳ ଅଧାରକୁ ଦୁଇଟି ଗୁଣ ଭିତରେ ଆବିଷ୍କାର କରେ । ଅର୍ଥାତ ସେମାନଙ୍କର ମୂଳ ଭିତ୍ତି ଦୁଇଟି ଗୁଣର ପ୍ରଶଂସା ମଧ୍ୟରୁ ଉଦ୍ଭବ ବୋଲି ମୁଁ ମନେକରେ । ସେହି ଗୁଣ ବା ଲକ୍ଷଣ ଦୁଇଟି ହେଉଛି ସମ୍ବେଦନଶୀଳ ଅନୁଭବ ଓ ସତ୍ୟପ୍ରତି ଅନୁରାଗ । ସମ୍ବେଦନଶୀଳ ଅନୁଭବ ବିଷୟରେ ପ୍ରଥମେ ଆଲୋଚନା କରାଯାଉ । ଆମ ସଂସାରରେ ସମ୍ବେଦନଶୀଳତାର ଅଭାବ ତଥା ଘୃଣା, ଈର୍ଷା ଓ ଭୟର ପ୍ରାବଲ୍ୟ ଯୋଗୁଁ ନାନା ସାମାଜିକ ତଥା ରାଜନୈତିକ ବିକୃତିର ଉଦ୍ଭବ ହୋଇଛି । ଏହି କାରଣ ଯୋଗୁଁ ହିଁ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ବିଦ୍ୱେଷର ମନୋଭାବ ଆସିଛି । ଏପରିକି ଗୋଟିଏ ରାଷ୍ଟ୍ରର ଜନଗଣଙ୍କ ମଧ୍ୟରେ ବିଭିନ୍ନ ଗୋଷ୍ଠୀ ବା ଶ୍ରେଣୀ ଭିତରେ ମଧ୍ୟ ଘୃଣା ଓ ଅସହିଷ୍ଣୁତାର ମନୋଭାବ ରହିଛି । ବିଭିନ୍ନ ବୃତ୍ତି କ୍ଷେତ୍ରରେ ଈର୍ଷା ଜନିତ କାରଣରୁ ଅନ୍ୟର ଉଚ୍ଚ ସାମର୍ଥ୍ୟ ବା ଯୋଗ୍ୟତାକୁ ସ୍ୱୀକାର କରାଯାଏ ନାହିଁ । ଜିଉମାନଙ୍କ ପ୍ରତି ଘୃଣା, ନିଗ୍ରୋମାନଙ୍କ ପ୍ରତି ଅତ୍ୟାଚାର, ଅଶ୍ୱେତାଙ୍ଗଙ୍କ ପ୍ରତି ଅସମ୍ମାନ ଅତ୍ୟାଚାରୀ ଓ ଯେଉଁମାନେ ଅତ୍ୟାଚାରିତ ଉଭୟଙ୍କ ପ୍ରତି ଦୁଃଖ ଦୁର୍ଦ୍ଦଶା ଆଣିଛି ଓ ବର୍ତ୍ତମାନ ମଧ୍ୟ ଆଣୁଛି । ଯେକୌଣସି ବିଦ୍ୱେଷମୂଳକ କାର୍ଯ୍ୟ ବା ଭାବନାର ପରିଣାମରୁ ପ୍ରତିକ୍ରିୟା ଆସିଥାଏ । ଏହି ପ୍ରତିକ୍ରିୟା ବୃଦ୍ଧି ପାଇ ଭୟଙ୍କର ପ୍ରତିହିଂସା ଓ ଅନ୍ୟାୟ ସୃଷ୍ଟି କରେ । ସୁତରାଂ ଏହି ପରିସ୍ଥିତିକୁ ବାଦ୍ ଦେବାକୁ ହେଲେ ବିଦ୍ୱେଷ ପରିବର୍ତ୍ତେ ବନ୍ଧୁତା, ମନ୍ଦ ମନୋଭାବ ବଦଳରେ ସଂପ୍ରୀତି ଓ ପ୍ରତିଯୋଗିତା ବଦଳରେ ସହଯୋଗୀ ମନୋଭାବ ସୃଷ୍ଟି କରିବା ଆବଶ୍ୟକ । ଅର୍ଥାତ ଏହି ସୁଗୁଣ ଆମ ଭିତରେ ବିକାଶ ଓ ପ୍ରସାର ପାଇଁ ପ୍ରଯତ୍ନ ଦରକାର ।

## ସତ୍ୟନିଷ୍ଠତା ଓ ସମ୍ବେଦନଶୀଳ ଅନୁଭବ

ମୋତେ ଯଦି କେହି ପ୍ରଶ୍ନ କରନ୍ତି– ''ତୁମେ କାହିଁକି ସତ୍ୟନିଷ୍ଠତା ଓ ସମ୍ବେଦନଶୀଳତା ଉପରେ ବିଶ୍ୱାସ ରଖିଛ ?'', ତେବେ ମୁଁ ଏଥିପାଇଁ କୌଣସି ଆଧିଦୈବିକ କାରଣ ବା ସତ୍ତାର ଆଧାରକୁ ନ ନେଇ ବରଂ ସୁଖଶାନ୍ତିରେ ରହିବାର ମନୋଭାବକୁ ଗ୍ରହଣ କରିବି । ଏକ ଘୃଣା ବା ବିଦ୍ୱେଷର ସଂସାର ହେଉଛି ଏକ ଦୁଃଖର ସଂସାର । ଦୁଇ ପକ୍ଷ ମଧ୍ୟରେ ବିଦ୍ୱେଷ ରହିଥିଲେ ପ୍ରତ୍ୟେକ ପକ୍ଷ ଅନ୍ୟ ପକ୍ଷର ଦୁର୍ଦ୍ଦଶା ପାଇଁ ଆଶାକରେ, କିନ୍ତୁ ବାସ୍ତବପକ୍ଷେ ଉଭୟପକ୍ଷ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥାନ୍ତି । ଏପରିକି ସବୁଠାରୁ ସଫଳ ଅତ୍ୟାଚାରୀମାନେ ମଧ୍ୟ ଭୟରେ ରହିଥାନ୍ତି । ଉଦାହରଣ ସ୍ୱରୂପ ଦାସମାଲିକମାନେ ଦାସୋଚିତ ଅନୁଷ୍ଠାନ ପ୍ରତି ଭୟରେ ଆବିଷ୍ଟ ହୋଇ ରହିବା ଦେଖାଯାଏ । ବାସ୍ତବପକ୍ଷେ ଜାଗିତିକ ଜ୍ଞାନ ମାନଦଣ୍ଡରୁ ବିଦ୍ୱେଷାତ୍ମକ ମନୋଭାବ ଏବଂ ସଂପ୍ରୀତିର ଅଭାବ ମୂଢ଼ତା ସହିତ ସମାନ ଅଟେ । ସେସବୁର ପରିଣାମ ହେଉଛି ଯୁଦ୍ଧ, ମୃତ୍ୟୁ, ଅତ୍ୟାଚାର ଓ ଉତ୍ପୀଡ଼ନ । ଏହା ଯେ କେବଳ ଅତ୍ୟାଚାରିତ ବ୍ୟକ୍ତିର କ୍ଷତିସାଧନ କରିଥାଏ ତାହା ନୁହେଁ ବରଂ ସମୟର ଆବର୍ତ୍ତନ ଭିତରେ ଏହା ଅତ୍ୟାଚାରୀ ଓ ସେମାନଙ୍କର ଉତ୍ତରପୁରୁଷଙ୍କର ମଧ୍ୟ ଅନିଷ୍ଟ କରିଥାଏ । ବାସ୍ତବପକ୍ଷେ ଯଦି ଆମେ ଆମର ପ୍ରତିବେଶୀଙ୍କୁ ଶ୍ରଦ୍ଧା କରି ଶିଖିବା ତେବେ ଆମ ସଂସାର ସ୍ୱର୍ଗରେ ପରିଣତ ହୋଇପାରିବ ।

ସମ୍ବେଦନଶୀଳତା ପରେ ସତ୍ୟନିଷ୍ଠତାକୁ ମୁଁ ଦ୍ୱିତୀୟ ମହତ୍ତମ ଗୁଣ ଭାବରେ ଗ୍ରହଣ କରିବି । ବାସ୍ତବ ଘଟଣାର ଆଧାର ଉପରେ ସତ୍ୟନିଷ୍ଠତାର ଭିତ୍ତି ରହିବା ମୁଁ ଯଥାର୍ଥ ମନେକରେ । କୌଣସି ବିଶ୍ୱାସ ସୁଖପ୍ରଦ ବା ସାନ୍ତ୍ୱନାଦାୟକ ବୋଲି ତାହା ଯେ ଗ୍ରହଣଯୋଗ୍ୟ ତାହା ନୁହେଁ ବରଂ ତାହା ଯଦି ବାସ୍ତବତାର ଭିତ୍ତି ଉପରେ ଆଧାରିତ ତେବେ ତାହା ସତ୍ୟ । ସତ୍ୟନିଷ୍ଠତାର ଅଭାବରେ ସମ୍ବେଦନଶୀଳ ମନୋଭାବ ଅନେକ ସମୟରେ ଆତ୍ମ ପ୍ରତାରଣାଦ୍ୱାରା ବିଫଳ ହେବାର ସମ୍ଭାବନା ରହିଥାଏ । ଜଣେ ଧନୀ ବ୍ୟକ୍ତି ପାଖରେ ଗରିବ ଲୋକ ରହିବା ସୁଖପ୍ରଦ ବା ଦାରିଦ୍ର୍ୟ ଅସମର୍ଥତାରୁ ସୃଷ୍ଟ ବୋଲି ଭାବିବା ସ୍ୱାଭାବିକ ହୋଇଥାଏ । କେତେକ ସ୍ୱାସ୍ଥ୍ୟବାନ ବ୍ୟକ୍ତି ଅସଂଯମତାକୁ ସମସ୍ତ ଅସୁସ୍ଥତାର କାରଣ ବୋଲି ନେଇଥାନ୍ତି । କୋକିଶିଆଳ ଶିକାରୀମାନେ କୋକିଶିଆଳ ଯେ ଶିକାର ହେବାକୁ ଚାହେଁ ଯୁକ୍ତି କରିବା ମୁଁ ଶୁଣିଛି । କୁଶଳୀ ଓ ବୁଦ୍ଧିଆ ଲୋକମାନେ ଯେଉଁ ବ୍ୟବସ୍ଥାଟିରେ ଅଧିକ ଉପକୃତ ହୋଇଥାନ୍ତି ସେମାନେ ସେହି ବ୍ୟବସ୍ଥାଟି ଉପେକ୍ଷିତ ବା ଶୋଷିତମାନଙ୍କ ପାଇଁ ଯେ ଅଧିକ ଗ୍ରହଣଯୋଗ୍ୟ ତାହା ମଧ୍ୟ କହିଥାନ୍ତି । ଏପରିକି ଯେଉଁଠି ଏହିପରି ପକ୍ଷପାତପୂର୍ଣ୍ଣ

ଭାବନା ନ ଥାଏ ସେଠାରେ ମଧ୍ୟ ସତ୍ୟନିଷ୍ଠତାଦ୍ୱାରା ଆମେ ଆମର ସାଧାରଣ ଲକ୍ଷ୍ୟ ସ୍ଥିର କରିପାରିବା । ଅର୍ଥାତ ଆମର ସାଧାରଣ ଲକ୍ଷ୍ୟ ନିରୂପଣ କ୍ଷେତ୍ରରେ ସତ୍ୟନିଷ୍ଠ ବୈଜ୍ଞାନିକ ଜ୍ଞାନକୁ ଆଧାର କରିପାରିବା । ଆଧୁନିକ ଚିକିତ୍ସା ବିଜ୍ଞାନ ଓ ସ୍ୱାସ୍ଥ୍ୟରକ୍ଷାର ବିକାଶ କ୍ଷେତ୍ରରେ ଆମେ ଧରି ରଖିଥିବା ଯୁଗ ଯୁଗର କେତେ କୁସଂସ୍କାରକୁ ପରିହାର କରିବାକୁ ପଡ଼ିଛି ତାହା ଚିନ୍ତା କରନ୍ତୁ । ଅନ୍ୟ ଘଟଣାକୁ ମଧ୍ୟ ଏହାକୁ ଅବବୋଧ କରାଯାଇପାରେ । ପୃଥିବୀରୁ ବହୁ ଯୁଦ୍ଧକୁ ଏଡ଼ାଇ ଦିଆଯାଇ ପାରିଥାନ୍ତା ଯଦି ବାସ୍ତବପକ୍ଷେ ଅବଶେଷରେ ପରାଜିତ ହେଉଥିବା ଗୋଷ୍ଠୀଟି ନିଜ ଶକ୍ତି ଓ ସାମର୍ଥ୍ୟର ଯଥାର୍ଥ ମୂଲ୍ୟାୟନ କରିବାକୁ ସମର୍ଥ ହୋଇଥାନ୍ତା । ଅର୍ଥାତ ଆତ୍ମ-ପ୍ରତାରଣା ଓ ନିଜ ବାସନାକୁ ଚରିତାର୍ଥ କରିବାର ମନୋଭାବ ପୋଷଣ ନ କରି ଯଦି କୌଣସି ପକ୍ଷ ନିଜର ବାସ୍ତବ ଓ ନ୍ୟାୟପୂର୍ଣ୍ଣ ବିବେଚନକୁ ଗୁରୁତ୍ୱ ଦେବ ତେବେ ଏହା କୌଣସି ଯୁଦ୍ଧରେ ସଂପୃକ୍ତ ହେବାକୁ ଚାହିଁବ ନାହିଁ ।

## ପ୍ରମାଣ ରହିତ ବିଶ୍ୱାସ

ସତ୍ୟନିଷ୍ଠତା ବା ସତ୍ୟ ପ୍ରତି ଅନୁରାଗକୁ ବିଶିଷ୍ଟ ଦାର୍ଶନିକ ଜନ ଲକ୍ ବ୍ୟାଖ୍ୟା କରିବାକୁ ଯାଇ କହିଛନ୍ତି, ''ଏହା କୌଣସି ତର୍କ ବଚନ ଦ୍ୱାରା ଦିଆଯାଉଥିବା ପ୍ରତିଶ୍ରୁତିକୁ ବୁଝାଏ ନାହିଁ । ବରଂ ତର୍କ ବଚନ ଯେଉଁ ପ୍ରମାଣ ଉପରେ ଆଧାରିତ ତାହାର ନ୍ୟାୟସିଦ୍ଧ ଆଧାର ଉପରେ ସତ୍ୟ ନିର୍ଭର କରିଥାଏ ।'' ଯେକୌଣସି ବିଷୟ ଉପରେ ଆବଶ୍ୟକ ପଡୁଥିବା ପ୍ରମାଣ ଜନିତ ଭିତ୍ତିର ଗୁରୁତ୍ୱ ହିଁ ମହତ୍ତ୍ୱପୂର୍ଣ୍ଣ । ସତ୍ୟନିଷ୍ଠତାର ଏହି ଅବଧାରଣା ଅବଶ୍ୟ ପ୍ରଶଂସନୀୟ । କିନ୍ତୁ କୌଣସି କିଛିର ପ୍ରମାଣ ଏହାର ଆଧାର ଉପରେ ନିର୍ଭରଶୀଳ ହୋଇଥାଏ । ଅର୍ଥାତ କେତେକ ହେତୁବାକ୍ୟକୁ ବିନା ପରୀକ୍ଷଣରେ ଗ୍ରହଣ କରି ତାହାର ଭିତ୍ତି ଉପରେ ଅନ୍ୟକୁ ପ୍ରମାଣ କରାଯାଏ । ସୁତରାଂ ଏଠାରେ ପ୍ରଶ୍ନ ଉଠିପାରେ, କେଉଁସବୁ ଘଟଣାକୁ ବିନା ପରୀକ୍ଷଣରେ ଗ୍ରହଣ କରିବା ଯୁକ୍ତି ସଂଗତ ? ତାହାର ଉତ୍ତର ମୁଁ ଏହି ପ୍ରକାର ଦେବି : ପ୍ରତ୍ୟକ୍ଷାନୁଭୂତି ଜନିତ ଘଟଣା, ଗଣିତ ଓ ତର୍କଶାସ୍ତ୍ରର ନିୟମ ଏବଂ ବିଜ୍ଞାନରେ ପ୍ରୟୋଗ ହେଉଥିବା ଆରୋହାନୁମାନ ଜନିତ ପଦ୍ଧତିକୁ ମୁଁ ଗ୍ରହଣ କରେ । ଏହି ନିୟମ ସକଳକୁ ଆମେ କ୍ୱଚିତ ସନ୍ଦେହର ପରିସରକୁ ଆଣିପାରିବା । ଏହି ନିୟମ ସକଳ କ୍ଷେତ୍ରରେ ମାନବଜାତିର ବୌଦ୍ଧିକ ଜଗତରେ ସର୍ବାଧିକ ସହମତି ଥିବା ଲକ୍ଷ୍ୟ କରାଯାଏ । କିନ୍ତୁ ଯେଉଁସବୁ ଭାବନା କ୍ଷେତ୍ରରେ ମଣିଷଜାତିର ମତ ପାର୍ଥକ୍ୟ ଦେଖାଯାଏ ବା ଏପରିକି ଆମର ନିଜସ୍ୱ ଆତ୍ମପ୍ରତ୍ୟୟ ମଧ୍ୟ ବେଳକେ ଦୋଦୁଲ୍ୟମାନ ମନେ ହୋଇଥାଏ ସେ କ୍ଷେତ୍ରରେ ଆମେ ଯଥୋଚିତ ପ୍ରମାଣ ବା ଆଧାର ଅନୁସନ୍ଧାନ କରିବା ଦରକାର । ଯଦି ଆମେ ସନ୍ତୋଷଜନକ ପ୍ରମାଣ

ପାଇବାରେ ଅସମର୍ଥ, ତେବେ ସେ କ୍ଷେତ୍ରରେ ଆମର ଅଜ୍ଞତାକୁ ସ୍ୱୀକାର କରିବା ଯଥାର୍ଥ ଅଟେ ।

ସତ୍ୟନିଷ୍ଠତାର ଯେ ବ୍ୟତିକ୍ରମ ରହିଛି ଏହା କେତେକ ବିଶ୍ୱାସ କରିଥାନ୍ତି । ସେମାନଙ୍କ ମତରେ କେତେକ ବିଶ୍ୱାସ ଆଶ୍ୱସନାପୂର୍ଣ୍ଣ ଓ ନୈତିକ ମାନଦଣ୍ଡରୁ ଦରକାରୀ, କିନ୍ତୁ ସେହି ବିଶ୍ୱାସ ସକଳକୁ କୌଣସି ବସ୍ତୁନିଷ୍ଠ ଯୁକ୍ତି ଆଧାରରେ ସତ୍ୟ ବୋଲି ପ୍ରମାଣ କରିବା ସମ୍ଭବ ନୁହେଁ । ଏହି ପ୍ରକାରର ବିଶ୍ୱାସଗୁଡ଼ିକର କୌଣସି ଗଭୀର ବିଶ୍ଳେଷଣ ଆବଶ୍ୟକ ନାହିଁ ବୋଲି ସେମାନେ ମତପୋଷଣ କରିଥାନ୍ତି । କିନ୍ତୁ ଏହି ପ୍ରକାର ମତକୁ ମୁଁ ଗ୍ରହଣ କରିପାରୁ ନାହିଁ । ଯେକୌଣସି ପ୍ରଶ୍ନର ଯଥାର୍ଥ ଅବବୋଧ ପାଇଁ ତାହାର ବସ୍ତୁନିଷ୍ଠ ବିଶ୍ଳେଷଣର ଆବଶ୍ୟକତା ରହିଛି । କିନ୍ତୁ ଏହି ଆବଶ୍ୟକତାକୁ ପରିହାର କରିବାଦ୍ୱାରା ଅର୍ଥାତ ବିଶ୍ଳେଷଣାତ୍ମକ ପଦ୍ଧତିକୁ ବାଦ ଦେବାଦ୍ୱାରା ମଣିଷଜାତିର ଯେ ମଙ୍ଗଳ ହେବ ମୁଁ ଏହା ବିଶ୍ୱାସ କରିପାରୁ ନାହିଁ । କୌଣସି ଶୃଙ୍ଖଳିତ ନୈତିକ ବ୍ୟବସ୍ଥା କୁଟିଳତାର ଆଧାର ଉପରେ ତିଷ୍ଠି ରହିବା ଯଥାର୍ଥ ନୁହେଁ । କୌଣସି ଆଧାର ନ ଥାଇ କେବଳ କେତେକ ସୁଖକର ବିଶ୍ୱାସ ଉପରେ ସୁଖ ସମୃଦ୍ଧିର ଭିତ୍ତି ପ୍ରତିଷ୍ଠା କରିବା ସ୍ୱାଗତଯୋଗ୍ୟ ନୁହେଁ । କାରଣ ସେପରି କ୍ଷେତ୍ରରେ ଏହା ମୁକ୍ତ ବିଚାର ଉପରେ ପ୍ରତିଷ୍ଠିତ ହେବ ନାହିଁ ।

## ଧର୍ମୀୟ ବିଶ୍ୱାସ ଓ ବିଶ୍ୱ

ଏହି ବିଶ୍ଳେଷଣ ମୁଖ୍ୟତଃ ଧର୍ମୀୟ ବିଶ୍ୱାସ କ୍ଷେତ୍ରରେ ପ୍ରଯୁଜ୍ୟ । ଆମ ମଧ୍ୟରୁ ଅଧିକାଂଶ ଏହି ପ୍ରକାର ବିଶ୍ୱାସ ଭିତରେ ଗଢ଼ିଉଠିଛି ଯେ ଏହି ବିଶ୍ୱ ଜଣେ ସର୍ବଜ୍ଞ ଓ ସର୍ବଶକ୍ତିମାନ ସୃଷ୍ଟିକର୍ତ୍ତାଙ୍କ ଯୋଗୁଁ ତିଷ୍ଠି ରହିଛି । ଏପରିକି ଯାହା ଆମପାଇଁ ମନ୍ଦ, ସେସବୁ ମଧ୍ୟ ଦୟାଳୁ ସୃଷ୍ଟିକର୍ତ୍ତାଙ୍କ କାର୍ଯ୍ୟ ଅର୍ଥାତ ତାହା ମଧ୍ୟ ମଙ୍ଗଳକର ବୋଲି ବିଶ୍ୱାସ ଆମେ ପୋଷଣକରୁ । ଏହିସବୁ ବିଶ୍ୱାସ କ୍ଷେତ୍ରରେ ଆମର ଯୁକ୍ତିଶୀଳ ଆଧାରକୁ ପ୍ରୟୋଗ କରିବାରେ ମୁଁ କୌଣସି ଅସଙ୍ଗତି ଦେଖୁନାହିଁ । ଅର୍ଥାତ ଯେଉଁସବୁ ଭାବାବେଗ ଆମକୁ ସ୍ପର୍ଶ କରିଥାଏ ସେସବୁକୁ ମୂଲ୍ୟାୟନ କରିବା କ୍ଷେତ୍ରରେ ଯୁକ୍ତିଶୀଳ ଆଧାରକୁ ପରିହାର କରିବା ମୁଁ ଉଚିତ ମନେ କରୁନାହିଁ । ଏହିପରି କୌଣସି ସର୍ବଜ୍ଞ ସତ୍ତା ଥିବାର କିଛି ଆଧାର ରହିଛି କି ? ନିଃସନ୍ଦେହରେ ଏହା କୁହାଯାଇ ପାରେ ଯେ ସେହିପରି ଏକ ସତ୍ତାରେ ବିଶ୍ୱାସ ଆମ ପାଇଁ ଆଶ୍ୱସନାମୟ ତଥା ଆମର ଚରିତ୍ର ଓ ଆଚରଣ କ୍ଷେତ୍ରରେ ଏହା ବେଳକେ ନୈତିକ ପ୍ରଭାବ ପକାଇଥାଏ । କିନ୍ତୁ ଏଥିରୁ ଏହି ବିଶ୍ୱାସ ସତ୍ୟ ବୋଲି ଗ୍ରହଣ କରାଯାଇ ପାରିବ ନାହିଁ । ଅର୍ଥାତ ସତ୍ୟ ପ୍ରତିଷ୍ଠା କ୍ଷେତ୍ରରେ ଏକ ବିଶ୍ୱାସ ଆଧାର ହୋଇପାରିବ ନାହିଁ । ପୁନଶ୍ଚ ଏହି ବିଶ୍ୱାସର ଯାହା କିଛି ଭିତ୍ତି ଥିଲା ତାହା ନୂତନ ତଥ୍ୟ ଆଧାରରେ

ମୋ ମତରେ ନଷ୍ଟ ହୋଇଗଲା । ଯେଉଁ ପର୍ଯ୍ୟନ୍ତ ଏହା ବିଶ୍ୱାସ କରାଯାଉଥିଲା ଯେ ସୂର୍ଯ୍ୟ, ଗ୍ରହ ଓ ନକ୍ଷତ୍ର ସକଳ ପୃଥିବୀ ଚତୁର୍ପାର୍ଶ୍ୱରେ ଘୂର୍ଣ୍ଣମାନ, ସେପର୍ଯ୍ୟନ୍ତ ପୃଥିବୀକୁ ଆଧାରକରି ବିଶ୍ୱର ଏକ ଉଦ୍ଦେଶ୍ୟ ରହିବା ଭାବନାକୁ ସ୍ୱୀକାର କରିବା ସ୍ୱାଭାବିକ ଥିଲା । ପୃଥିବୀରେ ମଣିଷ ନିଜର ଜୀବନକୁ ନେଇ ଯେଉଁ ଉଦ୍ଦେଶ୍ୟ ସଂସ୍ଥାପନ କରୁଥିଲା ସେହି ଉଦ୍ଦେଶ୍ୟ ମଣିଷ ଭିତରେ ଅନ୍ତର୍ନିହିତ ଥିବା ଘଟଣାକୁ ମଧ ସ୍ୱୀକାର କରୁଥିଲା । କିନ୍ତୁ ଜ୍ୟୋତିର୍ବିଜ୍ଞାନ ଓ ଭୂତତ୍ତ୍ୱବିଜ୍ଞାନ ପୃଥିବୀ ସଂପର୍କୀୟ ଭାବନାକୁ ପରିବର୍ତ୍ତନ କରିଦେଲେ । ଆମର ଏହି ପୃଥିବୀ ଏକ କ୍ଷୁଦ୍ର ସୌରମଣ୍ଡଳରେ ଏକ କ୍ଷୁଦ୍ର ଗ୍ରହ ମାତ୍ର । ନିୟୁତ ନିୟୁତ ଛାୟାପଥ ମଧ୍ୟରେ ଥିବା ଏକ ଛାୟାପଥ ଯାହା ଭିତରେ ରହିଛି ନିୟୁତ ନିୟୁତ ସୌରମଣ୍ଡଳ । ଗୋଟିଏ ମାତ୍ର ସୌରମଣ୍ଡଳ ଭିତରେ ଥିବା ଏକ ନକ୍ଷତ୍ରକୁ ଆଧାରକରି ଆମ ପୃଥିବୀ ଏକ କ୍ଷୁଦ୍ର ଗ୍ରହ ମାତ୍ର । ପୁନଶ୍ଚ ପୃଥିବୀ ରୂପକ ଗ୍ରହର ଜୀବନକାଳ ମଧ୍ୟରେ ମଣିଷର ଉତ୍ପତ୍ତି ଏକ ଆକସ୍ମିକ ଓ ମଧ୍ୟବର୍ତ୍ତୀ ଘଟଣା । ମଣିଷର ବିବର୍ତ୍ତନ ପୂର୍ବରୁ ଲକ୍ଷ ଲକ୍ଷ ବର୍ଷ ଭିତରେ ମାନବୀୟ ସତ୍ତାର ଅସ୍ତିତ୍ୱ ନ ଥିଲା । ଇତର ପ୍ରାଣୀମାନେ ହିଁ ମଣିଷର ବିବର୍ତ୍ତନ ପୂର୍ବରୁ କେତେ ଯୁଗଧରି ରହି ଆସିଥିଲେ । ମଣିଷ ବୈଜ୍ଞାନିକ ଜ୍ଞାନ କୌଶଳର ଅଧିକାରୀ ହୋଇ ଯଦି ଆତ୍ମହତ୍ୟା ନ କରେ ତେବେ ବି ପରିବେଶଜନିତ କାରଣରୁ ଦିନେ ଲୋପ ପାଇଯିବ । ଅର୍ଥାତ ମଣିଷ ନିର୍ଭରକରି ରହିଥିବା ଜଳ, ବାୟୁ ଓ ଉତ୍ତାପ ପ୍ରାକୃତିକ ପ୍ରକ୍ରିୟା ଯଦି ନଷ୍ଟ ହୋଇଯାଏ ତେବେ ମଣିଷଜାତି ପୃଥିବୀପୃଷ୍ଠରୁ ମଧ ବିଲୋପ ହୋଇଯିବ । ଗୋଟିଏ ସୀମିତ ସମୟ ଓ ପରିଣାମ ପାଇଁ ଏତେ ବିରାଟ ବ୍ୟବସ୍ଥାକୁ ଯେ ଜଣେ ସର୍ବଶକ୍ତିମାନ କର୍ତ୍ତା ପ୍ରସ୍ତୁତ କରିଛନ୍ତି ତାହା ବିଶ୍ୱାସ କରିବା ସହଜ ମନେହୁଏ ନାହିଁ ।

ମଣିଷଜାତିର କ୍ଷୁଦ୍ରତା ଓ ସ୍ୱଳ୍ପକାଳୀନତାକୁ ବାଦ ଦେବାପରେ ମଧ ମଣିଷର ସୃଷ୍ଟି ଏହି ବିଶାଳ ସୃଷ୍ଟିର ଜାଗତିକ ପ୍ରକ୍ରିୟାରେ ଏକ ଉନ୍ନତ କ୍ରମୋତ୍କର୍ଷ ବ୍ୟବସ୍ଥାକୁ ଯେ ବୁଝାଏ ମୁଁ ଏହା ଅନୁଭବ କରୁନାହିଁ । ମଣିଷ ସୃଷ୍ଟିର ଚମତ୍କାରିତାକୁ ଦେଖି ଏକ ସ୍ରଷ୍ଟାଙ୍କର ଅସୀମ ଜ୍ଞାନ ଓ ଅସୀମ ସାମର୍ଥ୍ୟ ବିଷୟରେ ଯେଉଁ ଯୁକ୍ତି କରାଯାଏ ତାହା ମଧ ଗ୍ରହଣଯୋଗ୍ୟ ନୁହେଁ । ବରଂ ଏହି ଯୁକ୍ତି ଭିତରେ ଏକ ତୁଚ୍ଛା ଆତ୍ମସନ୍ତୋଷ ରହିଥିବା ମନେହୁଏ । ଯେଉଁମାନେ ଏହି ପ୍ରକାର ଯୁକ୍ତି ପ୍ରଦାନ କରନ୍ତି ସେମାନେ ଆମର ଦୃଷ୍ଟିକୁ କେତେକ ମୁଷ୍ଟିମେୟ ସାଧୁ ସନ୍ଥଙ୍କ ପ୍ରତି ଆକୃଷ୍ଟ କରିଥାନ୍ତି । ଅଥଚ ନୀରୋ, ଆଟିଲାସ ଓ ହିଟଲର ତଥା ଅଗଣିତ ନୀଚ ଓ ଡରକୁଳା ବ୍ୟକ୍ତିମାନଙ୍କୁ ଭୁଲିଯିବାରେ ସେମାନେ ସାହାଯ୍ୟ କରିଥାନ୍ତି । କିନ୍ତୁ ଏହି ବ୍ୟକ୍ତିଗଣ ସେହି ଅଗଣିତ ଡରକୁଳା ମଣିଷମାନଙ୍କ ସାହାଯ୍ୟରେ ସେମାନଙ୍କର କ୍ଷମତା ଜାହିର କରିବାର ଅବକାଶ ପାଇଛନ୍ତି । ଏପରିକି ଆମ ଭିତରେ ଥିବା ସବୁଠାରୁ ମହନୀୟ ସାମର୍ଥ୍ୟ

ଆମକୁ ଏକ ଭୟାନକ ସ୍ଥିତି ମଧ୍ୟକୁ ନେଇଯାଇଛି । ଭାତୃତ୍ୱ, ପ୍ରେମର ବାର୍ତ୍ତା ବହନ କରୁଥିବା ଧର୍ମକୁ ନାନା ଅତ୍ୟାଚାର ଓ ଉତ୍ପୀଡ଼ନ ପାଇଁ ବ୍ୟବହାର କରାଯାଇଛି । ଏବଂ ଆମର ଗଭୀର ବୈଜ୍ଞାନିକ ଦୃଷ୍ଟିଜନିତ ସାମର୍ଥ୍ୟ ସମଗ୍ର ଜୀବ ଜଗତକୁ ଧ୍ୱଂସ କରିଦେବା ଦିଗରେ ସହାୟକ ହୋଇଛି । ନିଜର ବିନୋଦ ପାଇଁ ଆମକୁ ସୃଷ୍ଟି କରିଥିବା ଜଣେ ନିର୍ମମ ରାକ୍ଷାସକୁ ମୁଁ କଳ୍ପନା କରିପାରେ କିନ୍ତୁ ଜଣେ ସର୍ବଜ୍ଞ, ଦୟାଳୁ ଓ ସର୍ବଶକ୍ତିମାନ ବ୍ୟକ୍ତିଙ୍କ ପ୍ରତି ଏହି ଭୟଙ୍କର କ୍ରୁରତା, ଦୁଃଖ ଓ ବିଡ଼ମ୍ବନାପୂର୍ଣ୍ଣ ଅଧଃପତନକୁ ଆରୋପ କରିପାରିବି ନାହିଁ । ମଣିଷ ଭିତରେ ଥିବା ସବୁଠାରୁ ଉଚ୍ଚ ସମାର୍ଥ୍ୟଦ୍ୱାରା ସେ ନିଜ ଭାଗ୍ୟର ନିୟନ୍ତା ହୋଇ ତାର ଇତିହାସକୁ ଧ୍ୱଂସମୁଖକୁ ନେଇଯିବ ଏହା ପଶ୍ଚାତରେ କୌଣସି ଈଶ୍ୱରୀୟ ଉଦ୍ଦେଶ୍ୟ ରହିଥିବା ଭାବନା ମୋ ପାଇଁ ଗ୍ରହଣଯୋଗ୍ୟ ନୁହେଁ ।

## ବିଶ୍ୱ ପ୍ରତୀୟମାନ କଳ୍ପନା

**ବିଶ୍ୱ ପଶ୍ଚାତରେ** କ'ଣ ଉଦ୍ଦେଶ୍ୟ ରହିଛି ?– ପ୍ରସଙ୍ଗ ଉପରେ ଏକ ପୃଥକ **ଓ କେତେକାଂ**ଶରେ ଅସ୍ପଷ୍ଟ ପ୍ରତୀତି ରହିଛି । ଏହା ଅନୁଯାୟୀ କୌଣସି ସର୍ବଶକ୍ତିମାନ ଈଶ୍ୱର ଏହି ଉଦ୍ଦେଶ୍ୟ ସ୍ଥାପନ କରି ନାହାନ୍ତି ବରଂ କାଳକ୍ରମେ ଜଗତର ବସ୍ତୁ ସକଳ କ୍ଷେତ୍ରରେ ଏକ ଉଦ୍ଦେଶ୍ୟହୀନ ଏକରୂପତା ସ୍ଥାପିତ ହୋଇଯାଇଛି । ଏହି ଅଭିକଳ୍ପ ଈଶ୍ୱରୀୟ ଉଦ୍ଦେଶ୍ୟ ଅପେକ୍ଷା ଅଧିକ ଗ୍ରହଣଯୋଗ୍ୟ ଅଟେ । କାରଣ ଏକ ସର୍ବଶକ୍ତିମାନ ଓ କରୁଣାମୟ ଈଶ୍ୱର ଏପରି ଯନ୍ତ୍ରଣା ଜର୍ଜରିତ ଓ ନିଷ୍ଠୁର ମଣିଷମାନଙ୍କୁ ଉଦ୍ଦେଶ୍ୟମୂଳକ ଭାବେ ସୃଷ୍ଟି କରିଥିବେ ତାହା ବିଶ୍ୱାସଯୋଗ୍ୟ ନୁହେଁ । ଜଗତ ପଶ୍ଚାତରେ ଯେ କୌଣସି ଉଦ୍ଦେଶ୍ୟ ନାହିଁ ମୁଁ ଏହା ଜାଣିବାକୁ ଛଳନା କରୁନାହିଁ । କାରଣ ଜଗତ ସଂପର୍କରେ ମୋର ଜ୍ଞାନ ସୀମିତ ଅଟେ । କିନ୍ତୁ ମୁଁ ଆତ୍ମ ବିଶ୍ୱାସର ସହ ଦୃଢ଼ ଭାବରେ କହିପାରେ ଯେ ଅନ୍ୟମାନଙ୍କର ଜ୍ଞାନ ଏ କ୍ଷେତ୍ରରେ ମଧ୍ୟ ସୀମିତ । ଜାଗତିକ ପ୍ରକ୍ରିୟା ପଶ୍ଚାତରେ ଯେ କିଛି ଉଦ୍ଦେଶ୍ୟ ରହିଛି ତାହା ତଥ୍ୟମୂଳକ ଭାବରେ କେହି ପ୍ରତିଷ୍ଠା କରିପାରିବ ନାହିଁ । ଏ କ୍ଷେତ୍ରରେ ଆମର ତଥ୍ୟ ଏତେ ସୀମିତ ଯେ ଏକ ବିପରୀତ ଲକ୍ଷ୍ୟ ଦିଗରେ ଏହା ଅଭିପ୍ରେତ ହୋଇପାରେ । ଜଗତରେ ଶକ୍ତି ବଣ୍ଟନ କ୍ଷେତ୍ରରେ ଅଧିକରୁ ଅଧିକ ସମତା ପରିଲକ୍ଷିତ ହୁଏ କିନ୍ତୁ ଯେଉଁ ଲକ୍ଷ୍ୟ ଉଦ୍ଦେଶ୍ୟରେ ଏହା ହୋଇଥାଏ ସେ କ୍ଷେତ୍ରରେ ସଂପୂର୍ଣ୍ଣ ବୈଷମ୍ୟ ଦୃଷ୍ଟିଗୋଚର ହୁଏ । ସୁତରାଂ ଜଗତରେ ଯଦି କିଛି ଉଦ୍ଦେଶ୍ୟ ସ୍ଥାପନ କରିବାକୁ ହୁଏ ତେବେ ଏଠାରେ କେବଳ ଏକ ମଳିନ ଏକରୂପତା ଥିବା ପ୍ରତୀୟମାନ ହୋଇଥାଏ । ହୁଏତ ଅନନ୍ତକାଳ ପାଇଁ ଜଗତ ରହିପାରେ, ହେଲେ ଅନୁସନ୍ଧାନ ଦିଗରେ ଜଗତ କୌଣସିମତେ ଆମ ପାଇଁ କୌତୂହଳପ୍ରଦ ହେବ ନାହିଁ ।

ଏହା ଯେ ହେବ ମୁଁ ତାହା କହୁନାହିଁ । ମୁଁ କେବଳ କହିବାକୁ ଚାହୁଁଛି ଯେ ଆମର ସାଂପ୍ରତିକ ଜ୍ଞାନର ପୃଷ୍ଠଭୂମିରେ ଏହା ହିଁ ସବୁଠାରୁ ଅଧିକ ପ୍ରତୀୟମାନ କଳ୍ପନା ଅଟେ ।

ହୁଏତ ଆତ୍ମାର ଅମରତ୍ୱରେ ଆମେ ଯଦି ବିଶ୍ୱାସ କରୁ ତେବେ ଜାଗତିକ ବିଶ୍ୱର ଉଦ୍ଦେଶ୍ୟ ସମ୍ବନ୍ଧରେ ରହିଥିବା ଆମର ନୈରାଶ୍ୟକୁ ଆମେ ଏଡ଼ାଇ ଦେଇପାରିବା । ଆତ୍ମା ଏହି ସଂସାରରେ ପ୍ରବାସୀ ହୋଇଥିବା ପର୍ଯ୍ୟନ୍ତ ଶରୀରର କର୍ତ୍ତୃତାଧୀନ ହେବା ସହ ଜାଗତିକ ନିୟମର ବନ୍ଧନ ମଧ୍ୟରେ ରହିଥାଏ । କିନ୍ତୁ ମୃତ୍ୟୁ ପରେ ଆତ୍ମା କ୍ଷଣଭଙ୍ଗୁର ସଂସାର ଛାଡ଼ି ଚିରନ୍ତନ ଜଗତ ମଧ୍ୟରେ ପ୍ରବେଶ କରେ । ବିଜ୍ଞାନ କିନ୍ତୁ ଏହି ଜଗତ ବିଷୟରେ କହିବାକୁ ସମର୍ଥ ହୋଇଥାଏ ଅଥଚ ଆତ୍ମାର ଜଗତ ବିଷୟରେ କହି ନଥାଏ । ଆମେ ଏହି ବିଶ୍ୱାସକୁ ଧରି ରଖିବାକୁ ହେଲେ ପ୍ରଥମେ ପ୍ରତ୍ୟେକ ବ୍ୟକ୍ତିକୁ ଶରୀର ଓ ଆତ୍ମାପରି ଦୁଇଟି ସତ୍ତାର ମିଶ୍ରଣ ବୋଲି ଗ୍ରହଣ କରିବାକୁ ହେବ । ଅର୍ଥାତ ମଣିଷ ବ୍ୟକ୍ତିଟି ଭିତରେ ଦୁଇଟି ପୃଥକ ସତ୍ତା ରହିଛ, ଏବଂ ସେହି ସତ୍ତା ପରସ୍ପରଠାରୁ ଭିନ୍ନ ଓ ପ୍ରତ୍ୟେକଟି ଅନ୍ୟର ବିନା ସହାୟତାରେ ସ୍ୱାଧୀନ ଭାବେ ରହିପାରିବ ବୋଲି ବିଶ୍ୱାସ କରାଯାଏ । କିନ୍ତୁ ଦୁର୍ଭାଗ୍ୟର ବିଷୟ ଏହି ମତ ବିରୁଦ୍ଧରେ ବହୁ ଯୁକ୍ତି ରହିଛି ଓ ଏହି ମତ ସପକ୍ଷରେ ସେପରି କିଛି ତଥ୍ୟଗତ ଭିତ୍ତି ନାହିଁ । ମଣିଷ ଶରୀରର ବୃଦ୍ଧି ହେଲାପରି ମନର ମଧ୍ୟ ବିକାଶ ହୋଇଥାଏ । ଶରୀର ପରି ମନ ପିତାମାତାଙ୍କର କିଛି ଲକ୍ଷଣ ନେଇଥାଏ । ଏହା ଶରୀରର ବ୍ୟାଧିଦ୍ୱାରା ଓ ଔଷଧଦ୍ୱାରା ପ୍ରଭାବିତ ହୋଇଥାଏ । ଏହା ଆମର ମସ୍ତିଷ୍କ ସହିତ ନିବିଷ୍ଟ ଭାବେ ସମ୍ବନ୍ଧିତ ମନେହୁଏ । ମୃତ୍ୟୁପରେ ଆତ୍ମା ଏକ ସ୍ୱାଧୀନ ସ୍ଥିତିକୁ ଆସେ, ଏହା ମସ୍ତିଷ୍କଠାରୁ ପୃଥକ ହୋଇଯାଏ– ଯାହା ଜୀବନକାଳ ଭିତରେ ସମ୍ଭବ ନୁହେଁ– ଭାବନା ପଶ୍ଚାତରେ କୌଣସି ବୈଜ୍ଞାନିକ କାରଣ ନିହିତ ନାହିଁ । ଆତ୍ମାର ଅସ୍ତିତ୍ୱକୁ ଅସ୍ୱୀକାର କରିବାର ଯୁକ୍ତି ଯେ ଅକାଟ୍ୟ ମୁଁ ତାହା କହୁନାହିଁ, କିନ୍ତୁ ଆତ୍ମାକୁ ସ୍ୱୀକାର କଲାପରି ସେପରି କିଛି ବଳିଷ୍ଠ ଭିତ୍ତି ନାହିଁ । ମାନସିକ ଗବେଷଣା କ୍ଷେତ୍ରରେ ଯତ୍‌କିଞ୍ଚିତ ଭାବନା ଏହା ସପକ୍ଷରେ ଆସିଛି ତାହା ଆମର ବସ୍ତୁନିଷ୍ଠ ଯୁକ୍ତି ପାଖରେ ଅତ୍ୟନ୍ତ ଗୌଣ ମନେହୁଏ ।

## ସମ୍ବେଦନଶୀଳତା ମାଧ୍ୟମରେ ସୁଖବୋଧ

ଅନେକ ଲୋକ ଭାବନ୍ତି ଈଶ୍ୱର ବିଶ୍ୱାସ ନ ରହିଲେ ନୈତିକ ମୂଲ୍ୟବୋଧ ବିପର୍ଯ୍ୟସ୍ତ ହେବ । ମୁଁ କିନ୍ତୁ ନୈତିକ ଆଚରଣ କ୍ଷେତ୍ରରେ ଈଶ୍ୱର ଭାବନାଜନିତ ସିଦ୍ଧାନ୍ତର କୌଣସି ଭିତ୍ତି ଦେଖୁ ନାହିଁ । ଅଧିକନ୍ତୁ ନୈତିକ ଭାବନାକୁ ସୁଦୃଢ଼ କରିବା ପାଇଁ ମୁଁ ଧର୍ମୀୟ ଭାବନା ଇତ୍ୟାଦିର ସିଦ୍ଧାନ୍ତ ସକଳକୁ ପ୍ରତିବନ୍ଧକ ଭାବି ସେସବୁକୁ

ପ୍ରତ୍ୟାଖ୍ୟାନ କରିବାକୁ ବାଧ ହେଉଛି । ଯେଉଁମାନେ ନୈତିକତା ପାଇଁ ଧର୍ମୀୟ ଭାବନା ପୋଷଣ ସପକ୍ଷରେ ମତ ଦେଇଥାନ୍ତି ସେମାନେ ଖ୍ରୀଷ୍ଟୀୟ ଭାବନାର ବିରୁଦ୍ଧ କ୍ଷେତ୍ରରେ କିପରି କ୍ରୂରତା ଦେଖାଦେଇଛି ତାହା କହିଥାନ୍ତି । କିନ୍ତୁ ଖ୍ରୀଷ୍ଟୀୟ ପରିବେଶରେ ଯେ କିଛି କମ୍ କ୍ରୂରତା ସୃଷ୍ଟି ହୋଇଛି ତାହା କହିହେବ ନାହିଁ । ଯେକୌଣସି ସ୍ତରରେ ଯଦି ସମ୍ବେଦନଶୀଳ ମନୋଭାବ ଓ ସତ୍ୟ ପ୍ରତି ଅନୁରାଗ ରହିବ ବା ଏହାକୁ ଜୀବନଧାରାରେ ପରିଣତ କରାଯିବ ତେବେ ନିଷ୍ଠୁରତା ଆସିବ ନାହିଁ । କିନ୍ତୁ ଅନେକ ସମୟରେ ଘୃଣା ଓ ବୈଜ୍ଞାନିକ ଭିତ୍ତି ନ ଥିବା କେତେକ ବିଶ୍ୱାସକୁ ନେଇ ମନ୍ଦ ଭାବନାର ସୃଷ୍ଟି କରାଯାଇଛି । ମଣିଷ ନିଜର ପ୍ରବୃତ୍ତି ଓ ଆବେଗକୁ ସୁହାଇଲା ପରି ବିଶ୍ୱାସ ସକଳ ଗ୍ରହଣ କରିଥାଏ । ନିଷ୍ଠୁର ଲୋକମାନେ ଏକ ନିଷ୍କରୁଣ ଈଶ୍ୱରରେ ବିଶ୍ୱାସ କରିବା ସହିତ ସେମାନଙ୍କ ବିଶ୍ୱାସ ଜରିଆରେ କ୍ରୂରତାକୁ ସମର୍ଥନ କରିଥାନ୍ତି କିମ୍ବା ସେମାନଙ୍କର ମନ୍ଦ ଆଚରଣ ପାଇଁ ନିଜକୁ କ୍ଷମା ଦେଇଥାନ୍ତି । କେବଳ ଦୟାଳୁ ଲୋକମାନେ ଏକ ଦୟାଳୁ ଈଶ୍ୱରଙ୍କ ଉପରେ ବିଶ୍ୱାସ କରନ୍ତି ଓ ସେମାନେ ଯେକୌଣସି ପରିସ୍ଥିତିରେ ମଧ୍ୟ ସମ୍ବେଦନଶୀଳ ହୋଇପାରନ୍ତି । ଯେଉଁମାନଙ୍କର ମତ ପ୍ରାୟ ରକ୍ଷଣଶୀଳ ସେମାନଙ୍କର ନୀତିବୋଧକୁ ସମସାମୟିକ ଘଟଣାବଳୀ ମୁଖ୍ୟତଃ ପ୍ରଭାବିତ କରିଥାଏ । ଅର୍ଥାତ ସାଧାରଣ ଲୋକମାନେ ପୋଷଣ କରୁଥିବା ନୈତିକ ଭାବନା ସକଳ କ୍ଷେତ୍ରରେ ପୃଥିବୀର ବିଭିନ୍ନ ଘଟଣା ପ୍ରବାହର ପ୍ରଭାବ ଥାଏ । ନାଜି ବ୍ୟବସ୍ଥାରେ କିପରି ଅନେକ ନିଷ୍ଠୁର ଭାବନା ଓ ମିଥ୍ୟାକୁ ପ୍ରସାର କରାଯାଉଥିଲା ଆମେ ଅନୁଭବ କରୁଛେ । ଏହା ପ୍ରତିପକ୍ଷକୁ ଅକଥନୀୟ ଦୁର୍ଦ୍ଦଶା ମଧ୍ୟକୁ ନେଇ ଏକ ରାଷ୍ଟ୍ରର ପତନ ଘଟାଇଥିଲା । ସୁତରାଂ ସୁଖ ଶାନ୍ତି ପାଇଁ ଏହି ସବୁ ବ୍ୟବସ୍ଥାର ଆବଶ୍ୟକତା ନାହିଁ । ଧର୍ମୀୟ ଅଭିବ୍ୟକ୍ତିକୁ ବାଦ ଦେବା ପରେ ମଧ୍ୟ ମଣିଷଜାତିର ସୁଖ ଶାନ୍ତି ପାଇଁ ଏକ ସମ୍ବେଦନଶୀଳ ଜୀବନଦୃଷ୍ଟିର ଆବଶ୍ୟକତା ରହିଛି । ଯେକୌଣସି ବ୍ୟବସ୍ଥାରେ ମନ୍ଦ ଓ କ୍ରୂର ଭାବନା ମଣିଷ ସମାଜର ସୁଖ ଶାନ୍ତି ପାଇଁ ଅନ୍ତରାୟ । ଆସ୍ତେ ଆସ୍ତେ ଅଧିକ ବ୍ୟକ୍ତି ପାରମ୍ପରିକ ବିଧାନ ସକଳ ପ୍ରତି ବିମୁଖ ହେଉଛନ୍ତି । ସମାଜର ପ୍ରଚଳିତ ଭାବନାକୁ ଗ୍ରହଣ ନ କଲେ ବନ୍ଧୁତ୍ୱପୂର୍ଣ୍ଣ ଆଚରଣର ବିକାଶ ହେବ ନାହିଁ ବୋଲି ଭାବିବା ନିରର୍ଥକ ମନେ ହୁଏ । ଲୋକମାନଙ୍କର ମନୋଭାବ ଓ ଆଚରଣ କ୍ଷେତ୍ରରେ ମୈତ୍ରୀପୂର୍ଣ୍ଣ ଭାବନାର ପ୍ରସାର ପାଇଁ ଆଧିଦୈବିକ କାରଣର କୌଣସି ଉପଯୋଗିତା ନାହିଁ । ବରଂ ପ୍ରୀତିପୂର୍ଣ୍ଣ ତଥା ସମ୍ବେଦନଶୀଳ ମନୋଭାବ ଜରିଆରେ ହିଁ ସମାଜର ସୁଖ ଶାନ୍ତି ହାସଲ ହୋଇପାରିବ ।

ロ口

# ବର୍ତ୍ତମାନର ବିଜୟଯାତ୍ରା

( ୧ )

ମଣିଷ ଜାତିର ସୁଦୀର୍ଘ ଇତିହାସ କେତେ କେତେ ଉତ୍‌ଥାନ ପତନ ଦେଇ ଗତିକରି ଆସିଛି । ଅତୀତରେ ବିଭିନ୍ନ ଭୂଖଣ୍ଡରେ କେତେ ପ୍ରାଚୀନ ସଭ୍ୟତାର ପତନ ହୋଇଛି ଓ ପୁନଶ୍ଚ ନୂଆ ଜୀବନ ପ୍ରବାହରେ ନୂତନ ସଭ୍ୟତା ମୁଣ୍ଡ ଟେକିଛି । ହେଲେ ସାମଗ୍ରିକ ଭାବରେ ସଭ୍ୟତାର ବିକାଶଧାରାରେ ମଣିଷ ଜାତି ଯେଉଁ ଜ୍ଞାନ; କୌଶଳ ବା ବିଚାରଶୀଳ ଦୃଷ୍ଟିର ଅଧିକାରୀ ହୋଇଛି ତାହାର ଗୁଣାତ୍ମକ ଅଭିବୃଦ୍ଧି ସର୍ବଦା ହୋଇ ଆସିଛି । ଅର୍ଥାତ୍ ମଣିଷ ଜାତିର ବିକାଶଧାରାରେ ଜ୍ଞାନର ସର୍ବଦା ଯେ କ୍ରମବର୍ଦ୍ଧିଷ୍ଣୁ ଅଗ୍ରଗତି ଘଟିଛି ଏହା କୁହାଯାଇପାରେ । ମଣିଷ ଅଧିକରୁ ଅଧିକ ପ୍ରକୃତି ଉପରେ ନିଜର ନିୟନ୍ତ୍ରଣ ଆଣିବାରେ ସମର୍ଥ ହୋଇଛି, ପ୍ରକୃତି ଓ ପରିବେଶକୁ ବୁଝିବାର ସାମର୍ଥ୍ୟ ସୃଷ୍ଟି କରିପାରିଛି ଓ ଉନ୍ନତ ସାମାଜିକ ଜୀବନଧାରା ବିଷୟରେ ସଚେତନ ହୋଇଛି । ମଣିଷଜାତିର ସୁଦୀର୍ଘ ଇତିହାସକୁ ଏକ କ୍ରମୋନ୍ନତ ବିକାଶର ଧାରା ଭାବରେ ବିଚାର କଲେ ଜ୍ଞାନର ସୋପାନଗୁଡ଼ିକରେ ସର୍ବଦା ପ୍ରଗତି ହୋଇଆସିଛି । ସାମାଜିକ ସଂଗଠନ, ନାନା ସାଂସ୍କୃତିକ ଅନୁଷ୍ଠାନ, ରାଜନୈତିକ ବିଚାର ବିମର୍ଶ, ଧର୍ମ, ନୈତିକତା, ଶିକ୍ଷା, ବିଜ୍ଞାନ ଇତ୍ୟାଦି ନାନା କ୍ଷେତ୍ରରେ ମଣିଷର ବିଚାରଶୀଳ ଭାବନା ଅଧିକରୁ ଅଧିକ ଗୁଣାତ୍ମକ ଭାବରେ ପରିମାର୍ଜିତ ଓ ପରିବର୍ଦ୍ଧିତ ହେବାରେ ଲାଗିଛି । ଏହି ଧାରା ନିରବଚ୍ଛିନ୍ନ ଭାବରେ ସର୍ବଦା ଅଗ୍ରଗତି କରି ଚାଲିଛି । ଅବଶ୍ୟ ସାମଗ୍ରିକ ଭାବରେ ତାହା ଯେ ସମସ୍ତ ରାଷ୍ଟ୍ର ବା ସମାଜରେ ପ୍ରତିଫଳିତ ହୋଇଛି କିମ୍ବା ସେହି ଜ୍ଞାନର ବିକାଶକୁ ସଫଳ ଭାବରେ ପ୍ରୟୋଗ କରି ପ୍ରତ୍ୟେକ ସମାଜ ବା ରାଷ୍ଟ୍ର ତାର ଜନଗଣଙ୍କର ଜୀବନଧାରାକୁ ଉନ୍ନତ କରିଛି ତାହା କୁହାଯାଇ ପାରିବ ନାହିଁ । ଏକ ସମୟରେ କେତେକ ରାଷ୍ଟ୍ର ପ୍ରଗତିଶୀଳ ଭାବେ ଜନଜୀବନର ଗୁଣାତ୍ମକ ମାନକୁ ଉନ୍ନତ କରୁଥିବାବେଳେ ଅନ୍ୟ କେତେକ ରାଷ୍ଟ୍ର ରାଜନୈତିକ, ସାମାଜିକ, ସାଂସ୍କୃତିକ ପୃଷ୍ଠଭୂମିରେ କ୍ଷୟଶୀଳ ହୋଇ ରହିବା ଇତିହାସରେ ଦେଖାଯାଏ । ଅର୍ଥାତ୍ କୌଣସି ରାଷ୍ଟ୍ର ବା ସାମାଜିକ ବ୍ୟବସ୍ଥା ଉନ୍ନତ ବିଚାରଶୀଳ ମୂଲ୍ୟଚୟକୁ ଗ୍ରହଣ କରି ସାଂସ୍କୃତିକ ବିକାଶ ଦିଗରେ ଅଗ୍ରଗତି

କରୁଥିବାବେଳେ ସମସାମୟିକ ପରିସ୍ଥିତିରେ ପୃଥିବୀର ଅନ୍ୟ ଏକ ଭୂଖଣ୍ଡରେ ସାମାଜିକ ଜଡ଼ତା, ଅବକ୍ଷୟ ଓ ଅପସଂସ୍କୃତିର ପ୍ରାଧାନ୍ୟ ରହିବା ଦୃଷ୍ଟିଗୋଚର ହୋଇଥାଏ । ବିଚାରଶୀଳତାରୁ ଉଦ୍ଭୁତ ଜ୍ଞାନ, ମୂଲ୍ୟବୋଧ ଓ ସମ୍ବେଦନଶୀଳ ଜୀବନଧାରାର ପ୍ରାଧାନ୍ୟ ଥିବା ଏକ ରାଷ୍ଟ୍ରର ସାମୂହିକ ବିକାଶ ବା କ୍ରମୋନ୍ନତି ଯେପରି ଅପ୍ରତିହତ ଭାବରେ ଅଗ୍ରଗତି କରିଥାଏ, ଏସବୁ ପ୍ରତି ବିତସ୍ପୃହ ଥିବା ବା ଉନ୍ମୁକ୍ତ ନଥିବା ଏକ ସମାଜ ତା'ର ବିକାଶଧାରାକୁ ସେପରି କରିପାରେ ନାହିଁ । ବସ୍ତୁତଃ ରାଷ୍ଟ୍ର ସମୂହ କ୍ଷେତ୍ରରେ ବିକାଶର ଧାରାକୁ ତୁଳନାତ୍ମକ ଭାବରେ ସମୀକ୍ଷା କଲାବେଳେ ସେମାନଙ୍କର ପ୍ରଗତି ବା ଅବନତି, ସଚେତନତା ବା ଜଡ଼ତା ଉର୍ଦ୍ଧ୍ୱଗତି ବା ପଶ୍ଚାତଗତିର ଚିତ୍ରଟି ଆମ ଦୃଷ୍ଟିକୁ ଆସିଥାଏ । ଇତିହାସ ବସ୍ତୁନିଷ୍ଠ ତଥା ନୈର୍ବ୍ୟକ୍ତିକ ଭାବରେ ସଭ୍ୟତାର ବିକାଶ ଜନିତ କ୍ରମୋନ୍ନତି ସମ୍ବନ୍ଧରେ ସୂଚନା ଦେଇଥାଏ ।

ସାମୂହିକ ଜୀବନଧାରାର କ୍ରମୋନ୍ନତି ଜନିତ ମୂଲ୍ୟାୟନ କେତେକ ମାନଦଣ୍ଡ ଅନୁଯାୟୀ କରାଯାଏ । ସେହି ମାନଦଣ୍ଡ ବୌଦ୍ଧିକ ବିଚାରଶୀଳତାରୁ ଆସିଥାଏ । ସ୍ଥଳ ବିଶେଷରେ ବିଭିନ୍ନ ମାନଦଣ୍ଡ ଗ୍ରହଣ କରାଯାଇଥାଏ । କୌଣସି ମାନଦଣ୍ଡର ଯଥାର୍ଥତା ଓ ତାର୍କିକ ସଙ୍ଗତି ବୌଦ୍ଧିକ ବିଚାର ସ୍ତରରେ ନିରୂପଣ କରାଯାଏ । ପ୍ରକୃତି ବା ପରିବେଶ ସମ୍ପର୍କିତ ଜ୍ଞାନ ଓ ଜୀବନର ଅବବୋଧ ମଧ୍ୟଦେଇ ସଭ୍ୟତାର ବିକାଶ ହେବା ଏକ ଐତିହାସିକ ସତ୍ୟ ଅଟେ । ସାହିତ୍ୟ, ଦର୍ଶନ, ବିଜ୍ଞାନ, ନୀତିବୋଧ, ରାଜନୈତିକ ଆଦର୍ଶ ଇତ୍ୟାଦି ସୃଜନଶୀଳ ଚିନ୍ତନ ମଧ୍ୟଦେଇ ଜ୍ଞାନର ବିକାଶ ହେବା ଦେଖାଯାଏ । ଏହି ସବୁ ବୌଦ୍ଧିକ ସୃଜନଶୀଳତା ମଣିଷର ମାନସିକ ବିକାଶର ସାକ୍ଷର ମଧ୍ୟ ବହନ କରିଥାଏ । ସୁତରାଂ ସଭ୍ୟତାର କ୍ରମ ବିକାଶର ଧାରାଟି ବିଚାରଶୀଳ ଚିନ୍ତନର ଅଗ୍ରଗତି ଉପରେ ଅନେକାଂଶରେ ନିର୍ଭରଶୀଳ ହେବା ଦେଖାଯାଏ । ଗୋଟିଏ ଯୁଗରେ ଯେଉଁ ସବୁ ତତ୍ତ୍ୱ, ଚିନ୍ତନ ବା ସିଦ୍ଧାନ୍ତ ମଣିଷର ମାନସିକତାକୁ କୌଣସି ସମାଜରେ ପ୍ରଭାବିତ ବା କବଳିତ କରି ରଖିଥାଏ ତାର ପରିଣାମ ସମାଜର ବିଭିନ୍ନ ସୃଜନଶୀଳ ଅନୁସନ୍ଧିତ୍ସାରେ ପ୍ରତିଫଳିତ ହେବା ସ୍ୱାଭାବିକ ହୋଇଥାଏ । ହୁଏତ ପ୍ରଚଳିତ ଧାରଣା ବା ମାନସିକତା ବିରୁଦ୍ଧରେ ଜଣେ ଜଣେ ପ୍ରତିଭାଶାଳୀ ଚିନ୍ତାନାୟକ ନୂତନ ଆଲୋଡ଼ନ ସୃଷ୍ଟି କରିଥାନ୍ତି । ସେମାନେ ହୁଏତ ନିଜର ପ୍ରତିଭାଦ୍ୱାରା ମଣିଷର ବୌଦ୍ଧିକ ପରିଧିଟିରେ କିଛି ଆଲୋଡ଼ନ ସୃଷ୍ଟି କରିଥାନ୍ତି ଓ କାଳକ୍ରମେ ସେହି ଆଲୋଡ଼ନ ମଧ୍ୟଦେଇ ପୁନଶ୍ଚ ନୂଆ ବାଟ ଓ ଚିନ୍ତାର ସ୍ଫୁରଣ ହୋଇଥାଏ । ସାମାଜିକ ଶ୍ରେୟ ହାସଲ କ୍ଷେତ୍ରରେ ନୂତନ ଭାବନା ବା ପନ୍ଥା ପାଇଁ ପ୍ରୟାସୀ ହେବା ମଣିଷର ଅନ୍ତର୍ନିହିତ ସୃଜନଶୀଳତାର ପରିଚୟ ଦେଇଥାଏ । ବୌଦ୍ଧିକ ସୃଜନଶୀଳତା ହିଁ ସଭ୍ୟତାର ବିକାଶ କ୍ଷେତ୍ରରେ ମହତ୍ତ୍ୱପୂର୍ଣ୍ଣ ଅଟେ । ବିଚାରଶୀଳ ସାମର୍ଥ୍ୟ ବୌଦ୍ଧିକ ବିକାଶର ଚାବିକାଠି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଜୈବିକ ବିବର୍ତ୍ତନ ଧାରାରେ ମଣିଷର ସର୍ବଶ୍ରେଷ୍ଠ ମହତ୍ତ୍ୱ ଏହି ବିଗ୍ରରଶୀଳ ସାମର୍ଥ୍ୟରେ ନିହିତ । ଏହି ସାମର୍ଥ୍ୟ ବିବର୍ତ୍ତନ ପ୍ରକ୍ରିୟାରେ ଏକ ମହତ୍ତ୍ୱପୂର୍ଣ୍ଣ ପ୍ରାପ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ମଣିଷର ସହଜାତ ସାମର୍ଥ୍ୟ ଯଦିବା ଏହାର ଯଥୋଚିତ ବିକାଶ ଓ ପରିପ୍ରକାଶ ନାନାବିଧ ବାହ୍ୟିକ ଘଟଣା ପ୍ରବାହ ଉପରେ ନିର୍ଭର କରିଥାଏ । ପୁନଶ୍ଚ ଏହା ସବୁ ଯୁଗରେ ସମାନ ନୁହେଁ କିମ୍ବା ସମସ୍ତ ବ୍ୟକ୍ତିଙ୍କ ପାଖରେ ମଧ୍ୟ ସମାନ ଭବେ ପରିପ୍ରକାଶ ହେବା ଦେଖାଯାଏ ନାହିଁ । ମଣିଷର ମାନସିକ ସାମର୍ଥ୍ୟର କ୍ରମୋନ୍ନତି ବିଭିନ୍ନ ସ୍ତର ଦେଇ ଆସିବା ଦେଖାଯାଏ । ଏହି ଗୁଣ ବା ସାମର୍ଥ୍ୟ ବ୍ୟକ୍ତି ତାର ପୂର୍ବ ପୁରୁଷଙ୍କ ପାଖରୁ ଜୈବିକ ବିବର୍ତ୍ତନ ଧାରାରେ ଆଣିଥାଏ । ବିବର୍ତ୍ତନ ଧାରାରେ ମଣିଷର ମାନସିକ ସ୍ଥିତି ବର୍ତ୍ତମାନ ଯେଉଁ ଅବସ୍ଥାରେ ରହିଛି ସେଥିରେ ଭବିଷ୍ୟତରେ ଅଧିକ ଗୁଣାତ୍ମକ ଅଭିବୃଦ୍ଧି ହେବାର ସମ୍ଭାବନାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ପୁନଶ୍ଚ ସମ୍ପ୍ରତି ମଣିଷର ମାନସିକ ସ୍ତର ଯେଉଁ ସ୍ତରକୁ ଆସିଛି ତାହା ଯେ ସବୁ ସମୟରେ ଏହି ପ୍ରକାର ଥିଲ ତାହା ମଧ୍ୟ କୁହାଯାଇ ନପାରେ । ଏପରିକି ଏହି ବିଶାଳ ବିଶ୍ୱରେ ଅନ୍ୟ କେଉଁ ଗ୍ରହରେ ମଣଷଠାରୁ ଅଧିକ ବିକଶିତ ପ୍ରାଣୀ ରହିବା ମଧ୍ୟ ଏକ ସମ୍ଭାବନା ଅଟେ । ମୋଟ ଉପରେ କହିଲେ ଜୈବିକ ବିବର୍ତ୍ତନ ଧାରାରେ ମଣିଷର ମାନସିକ ସାମର୍ଥ୍ୟ ମଧ୍ୟ ବିବର୍ତ୍ତିତ ହୋଇଛି; ଏଥିରେ ଅଧିକ ବିକାଶ ହେବାର ସମ୍ଭାବନାକୁ ଅସ୍ୱୀକାର କରିହେବ ନାହିଁ ।

ବିଗ୍ରରଶୀଳତାର କ୍ରମବିକାଶ ଯୋଗୁଁ ମଣିଷ ଆଦିମ ସ୍ତରରୁ କ୍ରମ ଉତ୍ତୋରଣ ଦେଇ ସଭ୍ୟ ଜୀବନଧାରାର ଅଧିକାରୀ ହୋଇଛି । ଅନ୍ୟ ଇତର ଜୀବମାନଙ୍କର ମାନସିକ ସ୍ତରଠାରୁ ମଣିଷର ମାନସିକ ସ୍ତର ଅତି ଉନ୍ନତ ହୋଇଥିବା ଯୋଗୁଁ ଅନ୍ୟ ଇତର ପ୍ରାଣୀମାନଙ୍କର ଜୀବନ କ୍ଷେତ୍ରରେ କୌଣସି ଗୁଣାତ୍ମକ ଅଭିବୃଦ୍ଧି ନ ହୋଇଥିବା ବେଳେ ମଣିଷ ସର୍ବଦା ଉନ୍ନତିର ସୋପାନରେ ଅଗ୍ରଗତି କରି ଗ୍ଳଲିଛି । ଏକଦା ବଣ ଜଙ୍ଗଲରେ ପଶୁ ଭଳି ଜୀବନ ବଞ୍ଚୁଥିବା ମଣିଷ ସୋପାନ ପରେ ସୋପାନ ଅତିକ୍ରମ କରି ସମ୍ପ୍ରତି ଅତ୍ୟାଧୁନିକ ଯୁଗରେ ପଦାର୍ପଣ କରିପାରିଛି । ପ୍ରତ୍ୟେକ ସ୍ତରରେ ଯେଉଁ ମହତ୍ତ୍ୱପୂର୍ଣ୍ଣ ଅଗ୍ରଗତି ହୋଇଛି ତାହା ପଶ୍ଚାତରେ ନିୟମିତ ଉଦ୍ୟମର ବହୁ କଷ୍ଟକର ପ୍ରୟାସ ରହିଛି । ସମାଜର ଅଲକ୍ଷ୍ୟରେ ଅତୀତରେ ଜଣେ ଜଣେ ବ୍ୟକ୍ତି ଅତ୍ୟନ୍ତ କୌତୂହଳୀ ହୋଇ କୌଣସି କୌଣସି କ୍ଷେତ୍ରରେ କିଛି ନୂଆ ପ୍ରୟୋଗ କରିବାରେ ସମର୍ଥ ହୋଇଛନ୍ତି । କିନ୍ତୁ ସମ୍ପ୍ରତି ଜ୍ଞାନର ବିକାଶ ସାଧନ କରିବାକୁ ସଂଘବଦ୍ଧ ଓ ସମ୍ମିଳିତ ଭବରେ ବିଭିନ୍ନ ରାଷ୍ଟ୍ରରେ ନିଷ୍ଠାପର ଗବେଷଣା କରାଯାଉଛି । ଏହାର ପରିଣାମ ସ୍ୱରୂପ ଜ୍ଞାନ ବିଜ୍ଞାନର ବିକାଶ ତ୍ୱରାନ୍ୱିତ ହୋଇପାରୁଛି ।

କୌତୂହଳ ପ୍ରବଣ ହେବା ମଣିଷ ସୃଜନଶୀଳତାର ଏକ ପ୍ରମାଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି କୌତୂହଳ ପ୍ରବଣ ସାମର୍ଥ୍ୟ ଯୋଗୁଁ ମଣିଷ ତାର ଜ୍ଞାନର ପରିସରକୁ କ୍ରମବର୍ଦ୍ଧିଷ୍ଣୁ ଭାବେ ବିକାଶ କରିବା ସମ୍ଭବ ହୋଇଛି । ପ୍ରକୃତି ଓ ପରିବେଶର ଅସଂଖ୍ୟ ରହସ୍ୟକୁ ବୁଝିବା ପାଇଁ ପ୍ରଚେଷ୍ଟା କେଉଁ ଆଦିମ କାଳରୁ ମଣିଷର ସ୍ୱଭାବ ମଧ୍ୟଦେଇ ପ୍ରକାଶ ପାଇଛି । ଏପରିକି ନିଆଁର ବ୍ୟବହାର ବା କୃଷି କରି ଜୀବନ ଧାରଣ କରିବା ପଶ୍ଚାତରେ ମଣିଷର କୌତୂହଳ ଜନିତ ଆବେଗ ରହିଛି । ସଭ୍ୟତାର ପହିଲି ପର୍ଯ୍ୟାୟରୁ ଏହି କୌତୂହଳ ଜନିତ ପ୍ରୟାସ ମଧ୍ୟଦେଇ ମଣିଷ ଆଜି ବିକାଶର ଉତ୍ତୁଙ୍ଗ ସୋପାନରେ ପହଞ୍ଚି ପାରିଛି । ବସ୍ତୁତଃ କୌତୂହଳ ପ୍ରବଣତା ବା ଜିଜ୍ଞାସୁବୋଧ ସଭ୍ୟତାର ବିକାଶ କ୍ଷେତ୍ରରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅତୀତରେ ବିଭିନ୍ନ ଭୂଖଣ୍ଡରେ ଗଢ଼ିଉଠିଥିବା ସଭ୍ୟତାଗୁଡ଼ିକ ଭିତରେ ମଣିଷର ବିଚାରବୋଧ, ସାମାଜିକ ଭାବନା, ଜଗତ ବିଷୟକ ବ୍ୟାଖ୍ୟା, ଜୀବନର ରହସ୍ୟକୁ ବୁଝିବାପାଇଁ ତାତ୍ତ୍ୱିକ ପ୍ରୟାସ ଇତ୍ୟାଦି ପ୍ରଥମେ ରୂପରେଖ ନେଇଥିଲା । ଐତିହାସିକ ମାନଦଣ୍ଡରୁ ବିଚାର କଲେ ପ୍ରାୟ ତିନି ହଜାର ବର୍ଷ ତଳେ କୌତୂହଳ ଜନିତ ଆବେଗ ମଧ୍ୟଦେଇ ଦାର୍ଶନିକ ଜିଜ୍ଞାସାର ସୂତ୍ରପାତ ହୋଇଥିଲା । ବିଶେଷକରି ପ୍ରାଚୀନ ଗ୍ରୀସ୍ ଓ ଭାରତବର୍ଷର ସଭ୍ୟତା ଭିତରେ ଦାର୍ଶନିକ ଅନୁସନ୍ଧିତ୍ସା ସୃଷ୍ଟି ହୋଇଥିଲା । ଏହି ବିଶାଳ ବିଶ୍ୱର କାରଣ କ'ଣ ହୋଇପାରେ, ପୃଥିବୀର କିଛି ଆଦିକାରଣ ରହିଛି କି, ମଣିଷ ଜୀବନର ସ୍ୱରୂପ ଓ ଲକ୍ଷ୍ୟ କ'ଣ, ନୀତିବୋଧ, ନ୍ୟାୟ ଓ ସୌନ୍ଦର୍ଯ୍ୟ କହିଲେ ଯଥାର୍ଥରେ କ'ଣ ବୁଝାଯାଏ ଏହିପରି ଜଟିଳ ପ୍ରଶ୍ନମାନଙ୍କ ସମ୍ବନ୍ଧରେ ବିଚାର ବିମର୍ଶ ପ୍ରାଚୀନ ଗ୍ରୀସ୍ ଓ ଭାରତବର୍ଷରେ କରାଯିବାଦ୍ୱାରା ଦର୍ଶନର ଭିତ୍ତି ପଡ଼ିଥିଲା । ଜ୍ଞାନ, ପୁରୁଷାର୍ଥ, ସାମାଜିକ ନ୍ୟାୟ ଇତ୍ୟାଦି ଜଟିଳ ପ୍ରସଙ୍ଗ ଉପରେ ବୌଦ୍ଧିକ ଭାବନାର ସୂତ୍ରପାତ ହେଲା ତାହା ମଣିଷର ବୌଦ୍ଧିକ ସ୍ତରକୁ ବିସ୍ତାର କରିଥିଲା । ଏହିସବୁ ପ୍ରଶ୍ନମାନଙ୍କର ଯେଉଁ ସବୁ ବ୍ୟାଖ୍ୟା ବା ସିଦ୍ଧାନ୍ତ ସେହି ପ୍ରାଚୀନ ଦର୍ଶନମାନଙ୍କରେ ଦେଖିବାକୁ ମିଳେ ତାହା ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ, ବରଂ ଏହିସବୁ ପ୍ରଶ୍ନମାନଙ୍କୁ ଉଠାଇ ସେସବୁ ଉପରେ ବିଚାର ଆଲୋଚନା କରିବାର ମାନସିକତା ଆସିବା ସଭ୍ୟତାର ଇତିହାସରେ ଗୁରୁତ୍ୱପୂର୍ଣ୍ଣ ମନେହୁଏ । କାରଣ ବିଚାରଶୀଳ ଭାବରେ ଏସବୁ ପ୍ରଶ୍ନମାନଙ୍କ ଉପରେ ଆଲୋଚନା, ପର୍ଯ୍ୟାଲୋଚନା, ମାନସିକ ବିଚାରଧାରାରେ ମହତ୍ତ୍ୱପୂର୍ଣ୍ଣ ଅଟେ । ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀରୁ ଖ୍ରୀ:ପୂ: ତୃତୀୟ ଶତାବ୍ଦୀ ମଧ୍ୟରେ ପ୍ରାଚୀନ ଗ୍ରୀକ୍ ଚିନ୍ତା ଜଗତରେ ଥେଲସ୍, ଆନାକ୍ସିମାଣ୍ଡର,

ପିଥାଗୋରାସ, ହେରୋକ୍ଲିଟସ୍, ଆନାକମୋରାସ, ପାମେନାଇଡ୍ସ, ସକ୍ରେଟିସ, ପ୍ଲେଟୋ, ଆରିଷ୍ଟଟଲ ଇତ୍ୟାଦି ଚିନ୍ତାଶୀଳ ବ୍ୟକ୍ତିଗଣଙ୍କର ବୌଦ୍ଧିକ ଜିଜ୍ଞାସା ଓ ଅବଦାନରୁ କାବ୍ୟଶାସ୍ତ୍ର, ତର୍କଶାସ୍ତ୍ର, ସମାଜଶାସ୍ତ୍ର, ରାଜନୀତିକ ବିଗ୍ଭର, ଶିକ୍ଷା ଓ ସର୍ବୋପରି ଦର୍ଶନର ସୈଦ୍ଧାନ୍ତିକ ଭିତ୍ତି ପଡ଼ିଲା । ପ୍ରାଚୀନ ଗ୍ରୀକ୍ ଦର୍ଶନ ପରି ପ୍ରାଚୀନ ଭାରତରେ ବେଦ, ଉପନିଷଦ, ବ୍ରହ୍ମସୂତ୍ର, ସାଂଖ୍ୟ, ନ୍ୟାୟ, ବୈଶେଷିକ, ମୀମାଂସା ଇତ୍ୟାଦି ଦାର୍ଶନିକ ସିଷ୍ଟମ ମଧ୍ୟଦେଇ ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ପ୍ରଶ୍ନମାନଙ୍କ ଉପରେ ଆଲୋଚନାମାନ ମଧ୍ୟ ହୋଇଥିଲା । ଜ୍ଞାନ ସମସ୍ୟା, ତତ୍ତ୍ୱ ମୀମାଂସା, ନୀତିବୋଧ, ତର୍କ ଇତ୍ୟାଦି ଜଟିଳ ପ୍ରଶ୍ନଗୁଡ଼ିକ ଉପରେ ଅନୁଧ୍ୟାନ ଓ ଅନୁଶୀଳନ ବୌଦ୍ଧିକ ବିକାଶଧାରାରେ ମାଇଲଖୁଣ୍ଟ ଭାବରେ ମଣିଷଜାତିର ପଥପ୍ରଦର୍ଶକ ହେଲା । ହୁଏତ ଗ୍ରୀସ୍ ଓ ଭାରତବର୍ଷ ପରି ଅନ୍ୟାନ୍ୟ କେତେକ ପ୍ରାଚୀନ ସଭ୍ୟତାରେ କେତେକ ଜଟିଳ ପ୍ରଶ୍ନମାନଙ୍କୁ ନେଇ ବିଗ୍ଭର ଆଲୋଚନା ହୋଇଥିବାର ଦୃଷ୍ଟାନ୍ତ ଥାଇପାରେ । ପ୍ରାଚୀନ ସଭ୍ୟତାରେ ଯେଉଁ ସବୁ ବୌଦ୍ଧିକ ବା ତାତ୍ତ୍ୱିକ ବିଗ୍ଭରଗୁଡ଼ିକର ଅଙ୍କୁରୋଦ୍‌ଗମ ହୋଇଥିଲା କାଳକ୍ରମେ ସେଗୁଡ଼ିକ ଚିନ୍ତା ଜଗତରେ ନାନା ଶାଖା ପ୍ରଶାଖା ଯୁକ୍ତହୋଇ ବିରାଟ ଦ୍ରୁମରେ ପରିଣତ ହେଲେ । ଆଧୁନିକ ଯୁଗରେ ଯେତେ ଯେତେ ବିଷୟ ଉପରେ ସୂକ୍ଷ୍ମରୁ ସୂକ୍ଷ୍ମତର ଗବେଷଣାମାନ କରିବାକୁ ମଣିଷ ସମର୍ଥ ହୋଇଛି ତାର ଅଧିକାଂଶ ବିଷୟରେ କିଛି କଳ୍ପନା ବା ପ୍ରକଳ୍ପ ସେହି ପ୍ରାଚୀନ ଯୁଗରେ ଯେତେ ଅପରିପକ୍ୱ ସ୍ତରରେ ହେଲେ ମଧ୍ୟ, ମଣିଷର ମନକୁ ଯେ ଛୁଇଁଥିଲା ତାହା ଗୁରୁତ୍ୱପୂର୍ଣ୍ଣ ଅଟେ । ସେହିସବୁ ଭାବନାଗୁଡ଼ିକ ମଣିଷର ବୌଦ୍ଧିକ ବିଗ୍ଭର ସ୍ତରରେ ଯେଉଁ ଆଲୋଡ଼ନ ଆଣିଥିଲା ସେଗୁଡ଼ିକର ପ୍ରେରଣା ମଣିଷଜାତିର ମାନସିକ ଦିଗ୍‌ବଳୟକୁ ବିସ୍ତାର କରିବାରେ ଯେ ସାହାଯ୍ୟ କରିଛି ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

( ୩ )

ବୌଦ୍ଧିକ ବିକାଶଧାରାରେ ବିଭିନ୍ନ ଭୂଖଣ୍ଡରେ ଆନୁଷ୍ଠାନିକ ଧର୍ମମାନଙ୍କର ଅଭ୍ୟୁଦୟ ମଣିଷଜାତିର ସାଂସ୍କୃତିକ ଇତିହାସରେ ଗୁରୁତ୍ୱପୂର୍ଣ୍ଣ ଘଟଣା କହିବାକୁ ହେବ । ପୃଥିବୀର ବିଭିନ୍ନ ଭୂଖଣ୍ଡରେ କେତେକ କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଚିନ୍ତା, ଚେତନା ତତ୍‌କାଳୀନ ସମାଜରେ ରାଜନୈତିକ ତଥା ସାମାଜିକ ସ୍ତରରେ ଦୃଢ଼ତା ଆଣିବାରେ ସହାୟକ ହୋଇଥିଲା । ଈଶ୍ୱରୀୟ ବିଶ୍ୱାସ, ନୈତିକ ଶୃଙ୍ଖଳା, ସଭ୍ୟ ଜୀବନଧାରା, ପୁରୁଷାର୍ଥ, ଜୀବନର ଲକ୍ଷ୍ୟ ନେଇ ଭାବନା ଇତ୍ୟାଦି କ୍ଷେତ୍ରରେ ସେହି କ୍ରାନ୍ତିକାରୀ ବ୍ୟକ୍ତିମାନଙ୍କର ମୌଳିକ ଅବଦାନ ଫଳରେ ଧର୍ମଚେତନାର ଉଦ୍ରେକ

ହେଲା । କୌଣସି ଭୂଖଣ୍ଡର ସାଂସ୍କୃତିକ ବିକାଶ ଦିଗରେ ଧର୍ମଚେତନା ପ୍ରାଚୀନ ସମାଜରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଇଥିଲା । ପ୍ରତ୍ୟେକ ଧର୍ମ ପ୍ରାଥମିକ ଅବସ୍ଥାରେ ଏକ ସଂସାର ଓ ବୌଦ୍ଧିକ ଜାଗରଣ ଭାବରେ ଆସିଥିଲେ ମଧ୍ୟ କାଳକ୍ରମେ ଏହା ବୃହତ୍ତର ଅଞ୍ଚଳର ଜନଗଣଙ୍କ ମଧ୍ୟରେ ପ୍ରସାର ଲାଭକରି ଏକ ସାଂସ୍କୃତିକ ବନ୍ଧନ ଭାବରେ ଦୃଢ଼ୀଭୂତ ହେଲା । ପ୍ରତ୍ୟେକ ଧର୍ମ କାଳକ୍ରମେ ନାନାବିଧ ବୌଦ୍ଧିକ, ସାମାଜିକ ତଥା ସାଂସ୍କୃତିକ ପ୍ରବାହକୁ ନେଇ ଏକ ବୃହତ୍ତର ଅନୁଷ୍ଠାନରେ ପରିଣତ ହୋଇଯିବା ସହ ଆନୁଷ୍ଠାନିକ ଧର୍ମର ଉଦ୍ଭବ ହେଲା ।

ଜଗତ ସମ୍ପର୍କିତ ଜ୍ଞାନ ଯେତେବେଳେ ଅତି ସୀମିତ ଥିଲା ତଥା ମଣିଷର ସାମାଜିକ ସ୍ଥିତି ନାନା ଘନଘଟା ଭିତରେ ବହୁ ଆହ୍ୱାନର ସମ୍ମୁଖୀନ ହେଉଥିଲା ସେତେବେଳେ ଧର୍ମ ଏକ ସୀମିତ ପରିସରରେ ସାଂସ୍କୃତିକ ସହତି ଆଣିବା ସହ ବୌଦ୍ଧିକ ଜିଜ୍ଞାସା କ୍ଷେତ୍ରରେ ସହଜ ସମାଧାନମାନ ଯୋଗାଇ ଦେଉଥିଲା । ଧର୍ମଭିତ୍ତିକ ଜଗତଦୃଷ୍ଟି ସଂସାର, ଜୀବନ, ନୀତିବୋଧ ଇତ୍ୟାଦି ବିଭିନ୍ନ ତାତ୍ତ୍ୱିକ ଜିଜ୍ଞାସା ପାଇଁ ସୂତ୍ରଧର ଥିଲା । ପ୍ରତ୍ୟେକ ଧର୍ମର ତାତ୍ତ୍ୱିକ ଭିତ୍ତି ମଧ୍ୟଦେଇ ଜୀବନର ଅନ୍ତିମ ଲକ୍ଷ୍ୟ, ଉଦ୍ଦେଶ୍ୟ ଏବଂ ରହସ୍ୟ ପ୍ରଶ୍ନମାନଙ୍କ ଉପରେ କାଳ୍ପନିକ ବ୍ୟାଖ୍ୟାମାନ ମଣିଷର ମାନସିକତାକୁ ସ୍ପର୍ଶ କରିଥିଲା । ସେହିପରି ସ୍ୱର୍ଗ, ନର୍କ, ଅତୀନ୍ଦ୍ରିୟ ଜଗତ, ପାପ, ପୁଣ୍ୟ ଇତ୍ୟାଦି ପ୍ରସଙ୍ଗ ଉପରେ ବିଶ୍ୱାସ ମଧ୍ୟ ଧର୍ମ ଦେଇଥିଲା । ଐହିକ ସ୍ତରରେ ରାଜତନ୍ତ୍ର, ସାମନ୍ତବାଦ ତଥା ସାମାଜିକ ବୈଷମ୍ୟ ଜନିତ ପାର୍ଥକ୍ୟକୁ ସ୍ୱୀକୃତି ମିଳିଯାଉଥିଲା । ସାମାଜିକ ସମ୍ବନ୍ଧ କ୍ଷେତ୍ରର ବିଧି ତଥା ଜୀବନର ବିଧାନ-ଗୁଡ଼ିକ ପବିତ୍ର ନିୟମ ଭାବେ ଧର୍ମଶାସ୍ତ୍ରରେ ଲିପିବଦ୍ଧ କରାଯାଉଥିଲା । ଏପରିକି ଧର୍ମଶାସ୍ତ୍ରର ସମସ୍ତ ନୀତି, ନିୟମ ତାତ୍ତ୍ୱିକ ବିଶ୍ୱାସ ସକଳ ପାଇଁ କେତେ କେତେ ଯୁକ୍ତିର ଆଶ୍ରୟ ନେଇ ସେଗୁଡ଼ିକ ଯେ ଅଲଂଘ୍ୟ ସେହି ମାନସିକତା ଧର୍ମୀୟ ପରମ୍ପରାରେ ପ୍ରତିଷ୍ଠା କରାଗଲା । ସାମାଜିକ ସ୍ଥିରତା ତଥା ସାଂସ୍କୃତିକ ଐକ୍ୟ କ୍ଷେତ୍ରରେ ଧର୍ମ ବୃହତ୍ତର ପରିବେଶରେ ଏକ ଏକ ବଳିଷ୍ଠ ଭିତ୍ତି ଯୋଗାଇଥିଲା । ଜ୍ଞାନ ଅର୍ଜନ କ୍ଷେତ୍ରରେ ଧର୍ମଗ୍ରନ୍ଥ ପ୍ରତ୍ୟେକ ଧର୍ମଗୋଷ୍ଠୀ ପାଇଁ ପବିତ୍ର ହୋଇ ରହିଥିଲା । ଧର୍ମଗ୍ରନ୍ଥରେ ପ୍ରତିଫଳିତ ହୋଇଥିବା ବିଶ୍ୱରଗୁଡ଼ିକ ପବିତ୍ର ଓ ତା'ର ଲଂଘନ ଏକ ଈଶ୍ୱରବିରୋଧୀ ଭାବନା ବୋଲି ମାନସିକତା ରହିଥିଲା । ସଭ୍ୟତାର କ୍ରମ ଉତ୍ତରଣ କ୍ଷେତ୍ରରେ ବିଶ୍ୱରଶୀଳତାର ମାନଦଣ୍ଡ ତଥା ପ୍ରାଧାନ୍ୟ ଏକ ସାର୍ବଜନୀନ ସତ୍ୟ ଭାବେ ସ୍ୱୀକୃତ ହେବା ପୂର୍ବରୁ ଧର୍ମୀୟ ଚିନ୍ତନର ମହତ୍ତ୍ୱ ପ୍ରାୟତଃ ଊଣା ଅଧିକେ ପ୍ରତ୍ୟେକ ସଭ୍ୟତାରେ ପରିବ୍ୟାପ୍ତ ଥିଲା ।

ଧର୍ମର ତାତ୍ତ୍ୱିକ ତଥା ଉପାସନା ଜନିତ ଆଶ୍ୱର ଓ ବିଶ୍ୱାସ ସକଳକୁ ବାଦ ଦେବା ପରେ ଏହାର ସମ୍ବେଦନଶୀଳ ଆବେଗ ଓ କେତେକ ନୀତିବୋଧ

ମଣିଷର ସୂକ୍ଷ୍ମାନୁଭୂତି କ୍ଷେତ୍ରରେ ପ୍ରେରଣାର ଉତ୍ସ ହୋଇ ରହିଥିଲା । ଜୀବ ପ୍ରତି ଦୟା, କରୁଣା ଓ ତ୍ୟାଗ ମନୋଭାବ ଧର୍ମୀୟ ଜୀବନଧାରାରେ ଅବଶ୍ୟ ବ୍ୟକ୍ତ ହୋଇଥିଲା । ନୈତିକତା କ୍ଷେତ୍ରରେ ଧର୍ମଗ୍ରନ୍ଥର ଯାହା କିଛି ନିର୍ଦ୍ଦେଶ ଥିଲା ତାହା ପାରଲୌକିକ ଲକ୍ଷ୍ୟ ପ୍ରାପ୍ତି କ୍ଷେତ୍ରରେ କେବଳ ସାଧନ ଭାବରେ ରହିଥିଲା । ଜୀବନ ଓ ଜଞ୍ଜାଳର ଦୁଃଖମୟ ପରିଣତିରୁ ପରିତ୍ରାଣ ପାଇଁ ନୈତିକ ଆଚରଣକୁ ଗ୍ରହଣ କରାଯାଉଥିଲା । ସ୍ୱର୍ଗପ୍ରାପ୍ତି ପାଇଁ ହେଉ ଅଥବା ଜନ୍ମ-ମୃତ୍ୟୁର ଚକ୍ରରୁ ନିସ୍ତାର ପାଇଁ ହେଉ ଆଧିଦୈବିକ ରହସ୍ୟମୟ ସ୍ଥିତି ପାଇଁ ବ୍ୟକ୍ତି ନିଜର ସାମାଜିକ ଆଚରଣ କ୍ଷେତ୍ରରେ ଧର୍ମାନୁମୋଦିତ ନୈତିକ ନିର୍ଦ୍ଦେଶ ପାଳନ କରିବାକୁ ଇଙ୍ଗିତ ଦିଆ-ଯାଉଥିଲା । ସମାଜ କିମ୍ବା ଏକ ବୃହତ୍ତର ମାନବ ଜାତି ପାଇଁ ଅଙ୍ଗୀକାର ହୋଇ ରହିବା ପରିବର୍ତ୍ତେ ମୃତ୍ୟୁପର ଏକ ଆଧ୍ୟାତ୍ମିକ ସ୍ଥିତି ପାଇଁ ନୈତିକ ଜୀବନର ଉପଯୋଗିତା ଉପରେ ଧର୍ମ ଗୁରୁତ୍ୱ ଦେଉଥିଲା ।

ଧର୍ମୀୟ ଜୀବନ ଦୃଷ୍ଟିର ସୈଦ୍ଧାନ୍ତିକ ଭିତ୍ତିଗୁଡ଼ିକୁ ପର୍ଯ୍ୟାଲୋଚନା କଲେ ଏ କ୍ଷେତ୍ରରେ କେତେକ ସାଧାରଣ ଲକ୍ଷଣ ଦୃଷ୍ଟିଗୋଚର ହୋଇଥାଏ । ଧର୍ମୀୟ ପରମ୍ପରାରେ ସୃଷ୍ଟିର ଉତ୍ପତ୍ତି ପଶ୍ଚାତରେ ଏକ ପବିତ୍ର ଈଶ୍ୱରୀୟ ବିଧାନର ବିଶ୍ୱାସ ପ୍ରାୟତଃ ଦେଖିବାକୁ ମିଳିଥାଏ । ଏପରିକି ଅଧିକାଂଶ ଧର୍ମୀୟ ପରମ୍ପରାରେ ମଣିଷ ଜାତିର ଗୋଟିଏ କ୍ଷୁଦ୍ରଗୋଷ୍ଠୀ ଯେ ଈଶ୍ୱରୀୟ ବିଧାନ ପାଇଁ ମନୋନୀତ ଏହିପରି ଏକ ଦୃଷ୍ଟି ମଧ୍ୟ ରହିବାର ଦେଖାଯାଏ । ପ୍ରତ୍ୟେକ ଧର୍ମ ପରମ୍ପରାରେ କେତେକ ଐତିହାସିକ ଓ ପୌରାଣିକ ଚରିତ୍ରମାନଙ୍କୁ ଅବତାର, ଈଶ୍ୱର ପୁତ୍ର, ଈଶ୍ୱରଙ୍କ ବାର୍ତ୍ତାବହ ବା ତ୍ରାଣକର୍ତ୍ତା ବୋଲି ଗ୍ରହଣ କରାଗଲା ଓ ଏପରିକି ଭବିଷ୍ୟତରେ ଅନ୍ୟ ତ୍ରାଣକର୍ତ୍ତାଙ୍କର ଆବିର୍ଭାବ ହୋଇପାରେ ବୋଲି ଭବିଷ୍ୟବାଣୀ କରାଗଲା । ପ୍ରତ୍ୟେକ ଧର୍ମ ମହତ୍ତର ଜୀବନଚର୍ଯ୍ୟା ନେଇ କେତେ କେତେ ଭାବାବେଗ ନିଜ ଧର୍ମଗୋଷ୍ଠୀ ଭିତରେ ପ୍ରକାଶକଲେ ଓ ତାହା ହିଁ ପ୍ରତ୍ୟେକ ଧର୍ମ ପରମ୍ପରାରେ ଆଦର୍ଶ ଜୀବନର ମାନଦଣ୍ଡ ହୋଇ ରହିଲା । ପରିଦୃଷ୍ଟ ଜଗତକୁ ଅଳୀକ ବା କ୍ଷଣସ୍ଥାୟୀ ବୋଲି କେତେକ ଧର୍ମୀୟ ପରମ୍ପରାରେ ମଧ୍ୟ ବିଶ୍ୱାସ କରାଗଲା ଓ ଦୁଃଖ ଜଞ୍ଜାଳ ରହିତ ଭିନ୍ନ ଏକ ଜଗତର ଭାବନା କେତେ କେତେ କାବ୍ୟିକ ଶୈଳୀରେ ବ୍ୟକ୍ତ କରାଗଲା ।

ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନ ବହୁ ପରେ ହେଲା ଓ ଏହି ଅଧ୍ୟୟନରୁ ଧର୍ମମାନଙ୍କର ପରସ୍ପର ପାର୍ଥକ୍ୟ ଜଣାପଡ଼ିଲା । ଏହା ଅବଶ୍ୟ ୟୁରୋପୀୟ ପୁନର୍ଜାଗରଣ ଓ ନବସଂସ୍କାର ପରେ ସାମ୍ରାଜ୍ୟବାଦ ବିସ୍ତାର ଯୁଗରେ ସଭ୍ୟତା-ସଭ୍ୟତା ଓ ସଂସ୍କୃତି-ସଂସ୍କୃତି ଭିତରେ ଆଦାନ ପ୍ରଦାନ ଜନିତ ପରିସ୍ଥିତି ଯୋଗୁଁ ସମ୍ଭବ ହୋଇଥିଲା । ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନରୁ ସେମାନଙ୍କ ମଧ୍ୟରେ

ରହିଥିବା ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ବିଷୟ ସ୍ପଷ୍ଟ ହେଲା ଓ ମୋଟାମୋଟି ଧର୍ମମାନଙ୍କର ସୃଷ୍ଟି ବିଷୟକ ଓ ତାତ୍ତ୍ୱିକ ସିଦ୍ଧାନ୍ତ ପ୍ରତି ସନ୍ଦେହ ସୃଷ୍ଟି ହେଲା । ଏହା ପୂର୍ବରୁ ବିଭିନ୍ନ ଭୂଖଣ୍ଡର ସଭ୍ୟତା ଭିତରେ ମଣିଷଜାତିର ସାମଗ୍ରିକ ବିଶ୍ୱାସ, ଚେତନା, ଜୀବନ-ଧାରା, ବୌଦ୍ଧିକ ଅନୁସନ୍ଧିତ୍ସା ମୂଳତଃ ଓ ମୁଖ୍ୟତଃ ଧର୍ମକେନ୍ଦ୍ରିକ ହୋଇ ରହିଥିଲା । ସେହି ଯୁଗରେ ପ୍ରତ୍ୟେକ ଧର୍ମର ପରମ୍ପରାରେ ରହିଥିବା ଜନଗଣ ମୋଟାମୋଟି ଭାବରେ ପୃଥିବୀର ଅନ୍ୟ ଭୂଖଣ୍ଡ ବା ସଭ୍ୟତା ସମ୍ପର୍କରେ ଅନେକାଂଶରେ ଅଜ୍ଞ ରହି ନିଜର ଧର୍ମଚେତନା ଭିତରେ ସୀମାବଦ୍ଧ ରହିଥିଲେ । ସେତେବେଳର ମାନସିକତାକୁ ଅତୀନ୍ଦ୍ରିୟ ଭାବାବେଗ ତଥା ଧର୍ମବିଶ୍ୱାସ ବହୁ ଭାବରେ ପ୍ରଭାବିତ ଓ କବଳିତ କରି ରଖିଥିଲା । ସୁତରାଂ ଅନେକ ସମସାମୟିକ ସାମାଜିକ ଘଟଣାବଳୀ ଓ ଏପରିକି ପ୍ରାକୃତିକ ଘଟଣ ଅଘଟଣକୁ ଦିବ୍ୟ ବିଧାନର ତାତ୍ପର୍ଯ୍ୟ ଭାବରେ ଗ୍ରହଣ କରାଯାଉ-ଥିଲା । ଏପରିକି ଯେଉଁସବୁ ପ୍ରତ୍ୟକ୍ଷ ଘଟଣା ପ୍ରବାହକୁ ଏକ ପ୍ରାକୃତିକ ଧାରାରେ ବିଶ୍ଳେଷଣ କରାଯିବା ସମ୍ଭବ ସେ କ୍ଷେତ୍ରରେ ମଧ୍ୟ ଐଶ୍ୱରୀୟ ଉଦ୍ଦେଶ୍ୟ ଆରୋପ କରାଯାଉଥିଲା । ସେତେବେଳର ବୌଦ୍ଧିକ ସ୍ଥିତିରେ ସବୁକିଛି ଘଟଣା ପୂର୍ବନିର୍ଦ୍ଦିଷ୍ଟ, ଦୈବୀବିଧାନ ଭାବରେ ବ୍ୟାଖ୍ୟାତ ହେଉଥିଲା । ସେଇ ମାନସିକତା ନେଇ ନାନା ପୁରାଣ, ଲୋକକଥା, ସାହିତ୍ୟ ଆଦି ସୃଷ୍ଟି ହୋଇଥିଲା । ସବୁକିଛି ବ୍ୟାଖ୍ୟାର ମୂଳଭିତ୍ତି ବିଶ୍ୱାସ ଆଧାରିତ ଥିଲା । ବିଶ୍ୱାସଗୁଡ଼ିକ କାଳକ୍ରମେ ଏକ ବୃହତ୍ତର ସାମାଜିକ ସ୍ୱୀକୃତିଲାଭ କରିବାରୁ ତାହା ହିଁ ଜ୍ଞାନ ବୋଲି ପ୍ରତୀତ ହେଉଥିଲା । ମଧ୍ୟଯୁଗୀୟ ଜୀବନାଦର୍ଶରେ ବିଚାରଶୀଳତାର ଯେତିକି ବିକାଶ ହୋଇଥିଲା ସେ କ୍ଷେତ୍ରରେ ଈଶ୍ୱର, ପରଜଗତ, ଅତୀନ୍ଦ୍ରିୟ ବିଶ୍ୱାସ, ଅଲୌକିକ ଘଟଣାବଳୀ ତଥା ପାରଲୌକିକତା ହିଁ ମୁଖ୍ୟ ଉପଜୀବ୍ୟ ହୋଇ ରହିଥିଲା । ଆଧୁନିକ ମାନଦଣ୍ଡରେ ଯାହାକୁ ତର୍କଶୀଳ ଚିନ୍ତନ କୁହାଯାଉଛି ତାର କିଞ୍ଚିତ ପରିପ୍ରକାଶ କେହି କେହି ବ୍ୟକ୍ତି ହୁଏତ କେଉଁ କେଉଁ ସଭ୍ୟତାରେ ବ୍ୟକ୍ତ କରିପାରିଥାନ୍ତି । କିମ୍ବା ଧର୍ମୀୟ ପ୍ରଭାବରୁ ମୁକ୍ତ ରହି ସ୍ୱାଧୀନ ଚିନ୍ତା ଜନିତ ଅଭିବ୍ୟକ୍ତିର ଝଲକ କେଉଁଠି କେଉଁଠି ବ୍ୟକ୍ତ ହୋଇଥିଲା ବୋଲି ଗବେଷଣାଦ୍ୱାରା କେହି ପ୍ରତିଷ୍ଠା କରିପାରନ୍ତି କିନ୍ତୁ ତାର ପ୍ରଭାବ ଯେ ଅତି ନଗଣ୍ୟ ଏହା ଅସ୍ୱୀକାର କରିହେବ ନାହିଁ । ସମାଜର ସାଧାରଣ ବୌଦ୍ଧିକଧାରା ମୁଖ୍ୟତଃ ଧର୍ମଭିତ୍ତିକ ଥିଲା ଓ ଧର୍ମୀୟ ବିଶ୍ୱାସ ସକଳ ବା ଅଭିବ୍ୟକ୍ତିଗୁଡ଼ିକ ଯେ ସଂପୂର୍ଣ୍ଣ ଯୁକ୍ତିସଙ୍ଗତ ଓ ଏପରିକି ଅଭ୍ରାନ୍ତ ତାହା ସାଧାରଣ ବିଶ୍ୱାସ ଥିଲା । ଏପରି ବିଚାର-ବୋଧ ପଶ୍ଚାତରେ ଅନ୍ୟାନ୍ୟ କାରଣ ସହିତ ଭୟ ଓ ଅସହାୟବୋଧ ଜନିତ ମନସ୍ତାତ୍ତ୍ୱିକ କାରଣ ସମୂହ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଭୟ ତଥା ଅସହାୟବୋଧ ଜନିତ ପରିସ୍ଥିତିରେ ଯେପରି ଈଶ୍ୱର ବିଶ୍ୱାସ ସ୍ଥଳ ବିଶେଷରେ ବ୍ୟକ୍ତିର ମାନସିକ ସାମର୍ଥ୍ୟକୁ କେତେକାଂଶରେ ଦୃଢ଼ କରିଥାଏ ତାହା ଗୋଷ୍ଠୀ ଜୀବନରେ ମଧ୍ୟ ସତ୍ୟ ବୋଲି କୁହାଯାଇପାରେ । ଯୁଦ୍ଧ, ବିଭୀଷିକା, ପ୍ରାକୃତିକ ଦୁର୍ବିପାକ ତଥା

ସେପରି କିଛି ପ୍ରତିକୂଳ ସ୍ଥିତିରେ ଗଣମାନସରେ ପାରଲୌକିକ ବିଶ୍ୱାସ ଓ ଅତୀନ୍ଦ୍ରିୟ ଶକ୍ତି ପ୍ରତି ଶ୍ରଦ୍ଧା ପ୍ରକାଶ ପାଇବା ସାଧାରଣ ଘଟଣା ଅଟେ । ସୁତରାଂ ମାନସିକ ଭୟ, ଉଦ୍‌ବେଳନ ଜନିତ ପରିସ୍ଥିତି ଯୋଗୁଁ ମନସ୍ତାତ୍ତ୍ୱିକ ସ୍ତରରେ ଧର୍ମୀୟ ବିଶ୍ୱାସ ପ୍ରତି ଅନୁରକ୍ତ ଗୋଷ୍ଠୀ ଜୀବନରେ ସାଧାରଣ ଘଟଣା ଘଟେ । ମଧ୍ୟଯୁଗୀୟ ମାନସିକତା ହିଁ ହେଉଛି ଏହି ଭବନାର ଏକି ଚରମ ଅଭିବ୍ୟକ୍ତି ।

( ୪ )

ୟୁରୋପୀୟ ପୁନର୍ଜାଗରଣ ଓ ନବସଂସ୍କାର ଯୁଗ ସଭ୍ୟତାର ଅଗ୍ରଗତିରେ ଏକ ମାଇଲଖୁଣ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଇଟାଲି ଦେଶରେ ପ୍ରଥମେ କେତେକ ମୁଷ୍ଟିମେୟ ବୁଦ୍ଧିଜୀବୀଙ୍କଦ୍ୱାରା ବିଘ୍ନରଶୀଳତାର ପ୍ରାଧାନ୍ୟକୁ ଭିତ୍ତିକରି ବିଜ୍ଞାନରେ ଯେଉଁ ଆନ୍ଦୋଳନଟି ସୃଷ୍ଟି ହୋଇଥିଲା ତାହା କାଳକ୍ରମେ ସମଗ୍ର ୟୁରୋପୀୟ ଚିନ୍ତାମାନସରେ ଚୂଳମୂଳ ପରିବର୍ତ୍ତନ ଆଣିବା ସହ ମଣିଷର ସାଂସ୍କୃତିକ ଉତ୍ତରଣ କ୍ଷେତ୍ରରେ ଏକ କୀର୍ତ୍ତିସ୍ତମ୍ଭ ଭବେ ପ୍ରେରଣାଦାୟକ ହୋଇ ରହିଲା । ପୁନର୍ଜାଗରଣ ଯୁଗରେ ଯେଉଁ ବୌଦ୍ଧିକ ଆନ୍ଦୋଳନଟି ସୃଷ୍ଟି ହୋଇଥିଲା ତାହା ସପ୍ତଦଶ ଶତାବ୍ଦୀରେ ଚିନ୍ତାରାଜ୍ୟରେ ଚୂଳମୂଳ ପରିବର୍ତ୍ତନର ସୂତ୍ରପାତ କରାଇଲା । ବିଶେଷକରି ସପ୍ତଦଶ ଶତାବ୍ଦୀରେ ବୈଜ୍ଞାନିକ କ୍ରିୟାଶୀଳତା ଅଭୂତପୂର୍ବ ସାଫଲ୍ୟ ଲାଭକଲା । ବୈଜ୍ଞାନିକ ଚିନ୍ତା ଓ ଚେତନାର ପ୍ରସାର ହେବାଦ୍ୱାରା ଧର୍ମୀୟ ଅଧିକାର କ୍ଷେତ୍ରରେ ଭଟ୍ଟା ଆସିଲା । ଧର୍ମୀୟ-ଜଗତ ଭବନା କ୍ଷେତ୍ରରେ ରଖିଥିବା ବିଶ୍ୱାସଗୁଡ଼ିକ ବୈଜ୍ଞାନିକ ବିଶ୍ଳେଷଣ କ୍ଷେତ୍ରରେ ଆସ୍ତେ ଆସ୍ତେ ନିଷ୍ପ୍ରଭ ହେବାକୁ ଲାଗିଲା । ଅବଶ୍ୟ ଏହି ସନ୍ଧିକ୍ଷଣରେ ବୈପ୍ଳବିକ ସ୍ତରରେ ଯେଉଁ ସଂଘର୍ଷ ଓ ଦ୍ୱନ୍ଦ୍ୱର ଉଦ୍‌ଭବ ହେଲା ସେଥିରେ କେତେକ ସ୍ୱାଧୀନ ଚିନ୍ତାଶୀଳ ବୈଜ୍ଞାନିକ ଓ ମୁକ୍ତ ଚିନ୍ତକଙ୍କୁ ବହୁ ମୂଲ୍ୟ ଦେବାକୁ ପଡ଼ିଥିଲା । ହେଲେ ବୈଜ୍ଞାନିକ କ୍ରିୟାଶୀଳତାର ପ୍ରଭବ ତଥ୍ୟଭିତ୍ତିକ ତଥା ଅନୁଭବସିଦ୍ଧ ହୋଇଥିବାରୁ ଏହାର ପ୍ରସାରକୁ ଧର୍ମୀୟ ମାନସିକତା ପ୍ରତିହତ କରିପାରିଲା ନାହିଁ । କୋପରନିକସ, କେପଲର, ଗାଲିଲିଓ ଓ ନିଉଟନଙ୍କ ପରି ଅଗ୍ରଣୀ ବୈଜ୍ଞାନିକଗଣ ଜଗତ ଓ ଜ୍ୟୋତିର୍ବିଜ୍ଞାନ ସମ୍ପର୍କିତ ଧର୍ମୀୟ ବିଶ୍ୱାସ ସକଳକୁ ଓଲଟ ପାଲଟ କରିଦେଇ ଏକ ନୂତନ ଆନ୍ଦୋଳନ ସୃଷ୍ଟି କରିବାକୁ ସମର୍ଥ ହେଲେ । ସେମାନଙ୍କର ଉଦ୍ଭାବନ ଓ ଆବିଷ୍କାର ଏପରି ଏକ ବୌଦ୍ଧିକ ବାତାବରଣ ସୃଷ୍ଟି ହେବାରେ ସାହାଯ୍ୟ କଲା ଯାହାର ଫଳ ସ୍ୱରୂପ ବିଘ୍ନରଶୀଳ ଜୀବନଦୃଷ୍ଟି ଅଧିକରୁ ଅଧିକ ସ୍ୱୀକୃତ ହେବାରେ ଲାଗିଲା ।

ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହୋଇଥିବା ବୈଜ୍ଞାନିକ କ୍ରିୟାଶୀଳତା ମଣିଷଜାତିର ବୌଦ୍ଧିକ ଉତ୍ତୋରଣ କ୍ଷେତ୍ରରେ ଯେଉଁ ଆଦର୍ଶଚୟ ସୃଷ୍ଟିକଲା ତାହାର ଯୁଗାନ୍ତକାରୀ ପ୍ରଭବ ସଭ୍ୟତାର ବିକାଶ କ୍ଷେତ୍ରରେ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ସେହି ଧାରା ଏବେ ମଧ୍ୟ ପ୍ରଚଳିତ ରହିଛି । ପ୍ରକୃତିର ସୂକ୍ଷ୍ମାତିସୂକ୍ଷ୍ମ ଅନୁଶୀଳନ ଓ ଗବେଷଣାଦ୍ୱାରା ବିଶ୍ୱ ସମ୍ପର୍କରେ ମଣିଷର ଜ୍ଞାନ କ୍ରମବର୍ଦ୍ଧିଷ୍ଣୁ ଓ ଆଶାତୀତ ଭାବେ ବୃଦ୍ଧି ପାଇଚାଲିଛି । କାରଣ ପ୍ରକୃତି ତଥା ବିଭିନ୍ନ ବିଷୟରେ ବସ୍ତୁନିଷ୍ଠ ଜ୍ଞାନଲାଭ ପାଇଁ ସମ୍ପ୍ରତି ଯେଉଁ ଗବେଷଣା କରାଯାଇପାରୁଛି ତାହା ପଶ୍ଚାତରେ ଥିବା ବୈଜ୍ଞାନିକ ପ୍ରଣାଳୀ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ବିଜ୍ଞାନ ଯେଉଁ ପଦ୍ଧତି ବା ପ୍ରଣାଳୀ ଅବଲମ୍ବନ କରି ତାର ପରିସରକୁ ବ୍ୟାପକ କରିବାରେ ଲାଗିଛି ସେହି ପ୍ରଣାଳୀର ଦାର୍ଶନିକ ନିଷ୍କର୍ଷକୁ ସେହି ସପ୍ତଦର୍ଶ ଶତାବ୍ଦୀର ବିଶିଷ୍ଟ ଦାର୍ଶନିକ ଫ୍ରାନ୍‌ସିସ୍ ବେକନ୍ ତାଙ୍କର ଜ୍ଞାନ ମୀମାଂସା ପୃଷ୍ଠଭୂମିରେ ବିସ୍ତୃତ ଆଲୋଚନା କରୁଛନ୍ତି । ଏହି ବିଶାଳ ବିଶ୍ୱକୁ ଜାଣିବାକୁ ହେଲେ ଆମକୁ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣର ସାହାଯ୍ୟ ନେବାକୁ ହେବ । ପର୍ଯ୍ୟବେକ୍ଷଣ ଏବଂ ପରୀକ୍ଷଣ ହିଁ ସକଳ ବସ୍ତୁନିଷ୍ଠ ଜ୍ଞାନର ଆଧାର ଅଟେ । ପର୍ଯ୍ୟବେକ୍ଷଣ, ପରୀକ୍ଷଣ, ପ୍ରକଳ୍ପ ପ୍ରଣୟନ, ପ୍ରକଳ୍ପର ସାମାନ୍ୟୀକରଣ ଓ ତାହାର ତଥ୍ୟଭିତ୍ତିକ ସମର୍ଥନକୁ ନେଇ ବୈଜ୍ଞାନିକ ଆରୋହାନୁମାନ ଗଢ଼ି ଉଠିଥାଏ । ଏହି ଆରୋହାନୁମାନ ପଦ୍ଧତି ପ୍ରତ୍ୟେକ ବୈଜ୍ଞାନିକ ଜ୍ଞାନକ୍ଷେତ୍ରରେ ପ୍ରୟୋଗ ହୋଇଥାଏ । ପ୍ରାକୃତିକ ଜ୍ଞାନର ଆଧାର କ୍ଷେତ୍ରରେ ଏହି ବସ୍ତୁନିଷ୍ଠ ପଦ୍ଧତି ତଥା ତଥ୍ୟ-ଭିତ୍ତିକ ଓ କାର୍ଯ୍ୟକାରଣ ନିୟମ ଜନିତ ପ୍ରଣାଳୀ ପ୍ରୟୋଗ କରାଯାଏ । ଏହି ପଦ୍ଧତିକୁ ପ୍ରୟୋଗ କରି ଜ୍ଞାନର ଯଥାର୍ଥତାକୁ ପ୍ରତିପାଦନ କରିବା ବୈଜ୍ଞାନିକ ଚେତନାର ପରିସରଭୁକ୍ତ ଅଟେ । ବେକନଙ୍କ ପୂର୍ବରୁ ଆରିଷ୍ଟଟଲଙ୍କର ଅବରୋହ ପଦ୍ଧତି ସବୁ କ୍ଷେତ୍ରରେ ପ୍ରୟୋଗ ହେଉଥିଲା । କିନ୍ତୁ ଆଧୁନିକ ଯୁଗର ଜିଜ୍ଞାସା ବସ୍ତୁନିଷ୍ଠ ବୈଜ୍ଞାନିକ ଜ୍ଞାନ କ୍ଷେତ୍ରରେ ଆରୋହାନୁମାନ ପଦ୍ଧତିକୁ ଓ ସକଳ ଆକାରନିଷ୍ଠ ଜ୍ଞାନ କ୍ଷେତ୍ରରେ ଅବରୋହ ପଦ୍ଧତିକୁ ପ୍ରୟୋଗ କଲା । ବୈଜ୍ଞାନିକ ଜ୍ଞାନ ଯେଉଁ ତଥ୍ୟଭିତ୍ତିକ ତଥା ପ୍ରତ୍ୟକ୍ଷ ବା ପର୍ଯ୍ୟବେକ୍ଷଣ-ସମର୍ଥିତ ପଦ୍ଧତିକୁ ନେଲା ତଦ୍ୱାରା ଜ୍ଞାନର ପରିସର ବ୍ୟାପକ ହେବାକୁ ଲାଗିଲା । କୌଣସି ସିଦ୍ଧାନ୍ତ ବା ତତ୍ତ୍ୱର ସମର୍ଥନ ବାସ୍ତବ ଘଟଣା ସହିତ ସମ୍ବନ୍ଧ ପୃଷ୍ଠଭୂମିରେ ସ୍ଥିରୀକୃତ ହେଲା । ଅର୍ଥାତ୍ ବସ୍ତୁନିଷ୍ଠ ଜ୍ଞାନଲାଭ ପାଇଁ ଏହି ପଦ୍ଧତି ଏକ ସାର୍ବିକ ପଦ୍ଧତିର ସ୍ୱୀକୃତି ଲାଭକଲା ।

ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, କାର୍ଯ୍ୟକାରଣ ନିୟମ ଆଧାରିତ ତଥା ପ୍ରକୃତିର ଏକରୂପତା ସମର୍ଥନ ଭିତ୍ତିକ ହୋଇଥିଲେ ସୁଦ୍ଧା ଏହି ଜ୍ଞାନ ଯେ ଶାଶ୍ୱତ ବା ଚିରନ୍ତନ ଏହା କୁହାଯାଏ ନାହିଁ । ବୈଜ୍ଞାନିକ ଜ୍ଞାନ ସମ୍ଭାବନାମୟ, କାରଣ ସମ୍ପ୍ରତି ଯେଉଁ ତଥ୍ୟ ବା ପ୍ରକଳ୍ପକୁ ଆଧାରକରି ଏହାର ସିଦ୍ଧାନ୍ତକୁ ସ୍ଥିର କରାଯାଇଛି

ତାହା ହୁଏତ ଭବିଷ୍ୟତରେ ଭିନ୍ନ ଅବବୋଧ ବା ପ୍ରକଳ୍ପ ପୃଷ୍ଠଭୂମିରେ ପରିବର୍ତ୍ତିତ ହୋଇପାରେ । ବିଜ୍ଞାନର ମୌଳିକ ସିଦ୍ଧାନ୍ତଗୁଡ଼ିକ ଜ୍ଞାନର ପରିସର ବୃଦ୍ଧି ସହିତ ହୁଏତ ପରିବର୍ତ୍ତନ ହୋଇପାରନ୍ତି, ଏହି ସମ୍ଭାବନା ବିଜ୍ଞାନ କ୍ଷେତ୍ରରେ ରହିଥାଏ । ସୁତରାଂ ବିଜ୍ଞାନ ଆଧାରିତ ସିଦ୍ଧାନ୍ତ ନିର୍ଭରଯୋଗ୍ୟ ହେଲେ ମଧ୍ଯ ଏହା ପରିବର୍ତ୍ତନ ସାପେକ୍ଷ ଓ ଏହାକୁ କେବେ ଚିରନ୍ତନ ବା ଶାଶ୍ୱତ ବୋଲି ଦାବୀ କରାଯାଏ ନାହିଁ । ଧର୍ମକ୍ଷେତ୍ରରେ ଧର୍ମଶାସ୍ତ୍ରର ବଚନ ସକଳକୁ ଯେପରି ଈଶ୍ୱର ନିସୃତ ବୋଲି ଧର୍ମୀୟ ପରମ୍ପରାରେ ନିଆଯାଇ ତାହାକୁ ଚିରନ୍ତନ ବୋଲି ଗ୍ରହଣ କରାଯାଏ ବୈଜ୍ଞାନିକ ଚିନ୍ତନ କ୍ଷେତ୍ରରେ ସେପରି କରାଯାଏ ନାହିଁ । ପୁନଶ୍ଚ ହେତୁବାଦ କ୍ଷେତ୍ରରେ ବିଗ୍ରହ-ଶୀଳତାର ପ୍ରାଧାନ୍ୟକୁ ସ୍ୱୀକାର କରାଯାଉଥିବାରୁ ଏ କ୍ଷେତ୍ରରେ ଏକ ମୁକ୍ତ ମନ ବା ମୁକ୍ତ-ଦୃଷ୍ଟିଭଙ୍ଗୀକୁ ସର୍ବଦା ସ୍ୱୀକାର କରାଯାଏ । ଅଥଚ ଧର୍ମୀୟ ବିଶ୍ୱାସ କ୍ଷେତ୍ରରେ ଏକ ରୁଦ୍ଧ ମାନସିକତା ଦେଖିବାକୁ ମିଳେ । ବିଜ୍ଞାନ ନିଜର ସିଦ୍ଧାନ୍ତ ସକଳକୁ ସମ୍ଭାବନାମୟ ବୋଲି ଗ୍ରହଣ କରିବା ସହିତ ଜ୍ଞାନଲଭ କ୍ଷେତ୍ରରେ ଏକ ମୁକ୍ତ ଦୃଷ୍ଟିଭଙ୍ଗୀ ଗ୍ରହଣ କରିବା ବିଗ୍ରହଶୀଳତାର ଉପୋଦ୍‌ଘାତ କ୍ଷେତ୍ରରେ ଏକ ଉଲ୍ଲେଖନୀୟ ଚିନ୍ତନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପୁନଶ୍ଚ ଧର୍ମୀୟ ବିଶ୍ୱାସ କ୍ଷେତ୍ରରେ ରହସ୍ୟବାଦ, ଅଲୌକିକତା ତଥା ବ୍ୟକ୍ତିନିଷ୍ଠ ଅନୁଭବକୁ ଗୁରୁତ୍ୱ ଦିଆଯିବା ବେଳେ ବୈଜ୍ଞାନିକ ଚିନ୍ତନ କ୍ଷେତ୍ରରେ ମୁକ୍ତ ମନ, ବସ୍ତୁନିଷ୍ଠ ପଦ୍ଧତି ତଥା ଜିଜ୍ଞାସୁବୋଧକୁ ଗୁରୁତ୍ୱ ଦିଆଯାଏ । କହିବା ନିଷ୍ପ୍ରୟୋଜନ ଯେ ଏହି ଦୁଇଟି ଆଭିମୁଖ୍ୟ ଭିତରେ ମୌଳିକ ଓ ଗୁଣାତ୍ମକ ପାର୍ଥକ୍ୟ ବିଦ୍ୟମାନ । ବୈଜ୍ଞାନିକ ଚିନ୍ତା ଚେତନାରେ ରହସ୍ୟମୟ ବ୍ୟକ୍ତିନିଷ୍ଠ ଅନୁଭବକୁ ଗୁରୁତ୍ୱ ଦିଆନଯାଇ ବସ୍ତୁନିଷ୍ଠ ତଥ୍ୟଭିତ୍ତିକ ଆଧାରକୁ ଗୁରୁତ୍ୱ ଦିଆଯାଏ । ବୈଜ୍ଞାନିକ ସିଦ୍ଧାନ୍ତ ପୃଷ୍ଠଭୂମିରେ କୌଣସି ଆଧିଦୈବିକ ବା ଅଲୌକିକ କାରଣର ସ୍ଥାନ ନଥାଏ । ପ୍ରକୃତିରେ ରହିଥିବା ପ୍ରତ୍ୟେକଟି ଘଟଣା ପ୍ରବାହକୁ ପ୍ରାକୃତିକ ନିୟମ ଧାରାରେ ବ୍ୟାଖ୍ୟା କରିବା ସମ୍ଭବ ଓ କୌଣସି ପ୍ରାକୃତିକ ଘଟଣା ପଶ୍ଚାତରେ ଆଧିଦୈବିକ କାରଣ ଯେ ରହିନାହିଁ ଏହା ବୈଜ୍ଞାନିକ ଜ୍ଞାନର ନିଷ୍କର୍ଷ ଭବରେ ପ୍ରତିଷ୍ଠିତ ହେବାରେ ଲାଗିଛି । ଅବଶ୍ୟ ପ୍ରକୃତିର ବହୁ ରହସ୍ୟ ଏବେ ବି ମଣିଷ ବୋଧର ଅପହଞ୍ଚ ହୋଇ ରହିଛି ବୋଲି ବିଜ୍ଞାନ ଗ୍ରହଣ କରିଥାଏ । କିନ୍ତୁ ଆଜି ଯାହା ବ୍ୟାଖ୍ୟା କରାଯାଇ ପାରୁନାହିଁ ତାହା ଆଗାମୀ ଦିନରେ ଯେ ବ୍ୟାଖ୍ୟା ହୋଇପାରିବ ଏହି ସମ୍ଭାବନାକୁ ବୈଜ୍ଞାନିକ ବିଗ୍ରହଶୀଳତା କ୍ଷେତ୍ରରେ ଗ୍ରହଣ କରାଯାଏ । ଏପରିକି ସଂପ୍ରତି ଅଭ୍ରାନ୍ତ ମନେ ହେଉଥିବା ସିଦ୍ଧାନ୍ତଗୁଡ଼ିକ ଆଗାମୀ ଦିନରେ ମଧ୍ଯ ନୂତନ ପ୍ରକଳ୍ପ ବା ପ୍ରତ୍ୟକ୍ଷ ଯୋଗୁଁ ଯେ ପରିବର୍ତ୍ତନ ହୋଇପାରିବ ଏହି ସମ୍ଭାବନା ମଧ୍ଯ ବୈଜ୍ଞାନିକ ଜ୍ଞାନ କ୍ଷେତ୍ରରେ ଦେଖିବାକୁ ମିଳେ । ମୋଟ ଉପରେ କହିବାକୁ ଗଲେ ମଧ୍ୟଯୁଗୀୟ

ମାନସିକତାଠାରୁ ଆଧୁନିକ ଯୁଗର ଚିନ୍ତା ଚେତନା ଭିତରେ ଏହି ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ମଣିଷର ବୌଦ୍ଧିକ ଉନ୍ମୋଚନ କ୍ଷେତ୍ରରେ ଏହି ଦୃଷ୍ଟିକୋଣର ପରିପ୍ରକାଶ ଯେ ଏକ ଗୁଣାତ୍ମକ ଅଭିବୃଦ୍ଧି ଏହା ଅନସ୍ୱୀକାର୍ଯ୍ୟ ।

( ୪ )

ବିଗ୍ରହଶୀଳତାର ନିରଙ୍କୁଶ ପ୍ରାଧାନ୍ୟକୁ ଗ୍ରହଣ କରିବା ହେଉଛି ହେତୁବାଦ । ହେତୁବାଦ ମୁକ୍ତମନ, ଜିଜ୍ଞାସୁବୋଧ ଓ ବୈଜ୍ଞାନିକ ଦୃଷ୍ଟିକୋଣ ଉପରେ ଆଧାରିତ । ବିଶେଷ କରି ଏହାକୁ କେବଳ ଏକ ବୌଦ୍ଧିକ ଆଲୋଚନା ସ୍ତରରେ ସୀମିତ ରଖିବା ପରିବର୍ତ୍ତେ ବରଂ ସାମଗ୍ରିକ ଭାବରେ ଏହାର ସାମାଜିକ ତଥା ବ୍ୟବହାରିକ ଦିଗ ପ୍ରତି ଗୁରୁତ୍ୱ ଦେବା ଯଥାର୍ଥ ମନେହୁଏ । ବୌଦ୍ଧିକ ସ୍ତରରେ ଓ ବିଶେଷତଃ ଜ୍ଞାନଲାଭ କ୍ଷେତ୍ରରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ବୌଦ୍ଧିକ ମାନଦଣ୍ଡରୁ ହେତୁବାଦ ଓ ବୈଜ୍ଞାନିକ ଦୃଷ୍ଟିକୋଣ ମଧ୍ୟରେ ପାର୍ଥକ୍ୟ ନାହିଁ । ବୈଜ୍ଞାନିକ ଦୃଷ୍ଟିକୋଣ ପରି ହେତୁବାଦ ପର୍ଯ୍ୟବେକ୍ଷଣ, ପରୀକ୍ଷଣ, ଅନ୍ତର୍ବୋଧ, ଯୁକ୍ତିଶୀଳତା, ପ୍ରଣାଳୀବଦ୍ଧ ଜ୍ଞାନ ଓ ସୃଜନଶୀଳ ଆବେଗ ଇତ୍ୟାଦିକୁ ଗ୍ରହଣ କରିଥାଏ । ବୈଜ୍ଞାନିକ ଦୃଷ୍ଟିକୋଣ ଜ୍ଞାନର ସୀମିତତାକୁ ସ୍ୱୀକାର କରିବା ସହ ମଣିଷ ବୋଧର ବହିର୍ଭୂତ କ୍ଷେତ୍ରଗୁଡ଼ିକ ବିଷୟରେ ସଚେତନ କରାଇଥାଏ । କିନ୍ତୁ ମଣିଷ ପ୍ରଜ୍ଞାର ଅନ୍ତର୍ନିହିତ ସାମର୍ଥ୍ୟକୁ ସ୍ୱୀକାର କରି ଆମର ଅଜ୍ଞାତ କ୍ଷେତ୍ରଗୁଡ଼ିକୁ ଭବିଷ୍ୟତରେ ବ୍ୟାଖ୍ୟାର ସମ୍ଭାବନାକୁ ସ୍ୱୀକାର କରିଥାଏ । ବୈଜ୍ଞାନିକ ପଦ୍ଧତି କରିଆରେ ନୂତନ ତଥ୍ୟ, ଅନୁଭୂତି ଓ ସିଦ୍ଧାନ୍ତ ସକଳକୁ ବ୍ୟାଖ୍ୟା କରିବା ସହିତ ଯେଉଁ କ୍ଷେତ୍ରରେ ଆମର ସିଦ୍ଧାନ୍ତ କେବଳ ପ୍ରାକଳ୍ପିକ ସ୍ତରରେ ରହିଛି ତାହା ମଧ୍ୟ ସ୍ୱୀକାର କରିବା ବୈଜ୍ଞାନିକ ଦୃଷ୍ଟିକୋଣର ଅନୁକୂଳ ଅଟେ । "ବୈଜ୍ଞାନିକ ପଦ୍ଧତିରେ ଯେଉଁ ତଥ୍ୟ ବା ପ୍ରକଳ୍ପକୁ ବ୍ୟାଖ୍ୟା କରିବା ସମ୍ଭବ ହେଉ ନାହିଁ ତାହା ମଧ୍ୟ ମୁକ୍ତ ଭାବରେ ଗ୍ରହଣ କରିବା ବୈଜ୍ଞାନିକ ଦୃଷ୍ଟିକୋଣର ପରିଚାୟକ ଅଟେ । "ବୈଜ୍ଞାନିକ ଦୃଷ୍ଟିକୋଣ" ସମ୍ବନ୍ଧରେ କେତେକ ବିଶିଷ୍ଟ ବୈଜ୍ଞାନିକ (୧) ଯେଉଁ ଘୋଷଣାନାମାଟି ପ୍ରକାଶ କରିଥିଲେ ତାହା ସହିତ 'ହେତୁବାଦ ସମତାଳ ରଖାକରେ । ସେହି ଘୋଷଣାନାମାଟି ହେଲା—

(କ) ବୈଜ୍ଞାନିକ ପଦ୍ଧତି ଜ୍ଞାନଲାଭ କ୍ଷେତ୍ରରେ ଏକ ନିର୍ଭରଶୀଳ ପଦ୍ଧତି;

(ଖ) ବୈଜ୍ଞାନିକ ପଦ୍ଧତି ଅବଲମ୍ବନରେ ଲାଭ କରାଯାଉଥିବା ଜ୍ଞାନଦ୍ୱାରା ମଣିଷର ସମସ୍ୟାକୁ ବୁଝି ତାହାର ସମାଧାନ ବାହାର କରିବା ସମ୍ଭବ;

(ଗ) ନୈତିକତା, ରାଜନୀତି, ଅର୍ଥନୀତିଠାରୁ ଆରମ୍ଭ କରି ଜୀବନର ଦୈନନ୍ଦିନ ବ୍ୟାପାରରେ ଓ ପ୍ରତ୍ୟେକଟି ଉଦ୍ୟମରେ ବୈଜ୍ଞାନିକ ପ୍ରଣାଳୀର ପୂର୍ଣ୍ଣ ବିନିଯୋଗଦ୍ୱାରା ମଣିଷର ପ୍ରଗତି ସମ୍ଭବ ।

(ଘ) ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନରେ ଲବ୍ଧ କରାଯାଉଥିବା ଜ୍ଞାନ ସେହି ସମୟର ଅନ୍ୱେଷାରେ ସତ୍ୟର ନିକଟବର୍ତ୍ତୀ ବୋଲି ଗ୍ରହଣ କରାଗଲେ ବି ସେହି ଜ୍ଞାନ ସହମେଳ ଖାଉନଥିବା ପ୍ରତ୍ୟୟର ବିଶ୍ଳେଷଣରୁ ପ୍ରତିଷ୍ଠିତ ଜ୍ଞାନର ମୂଳ ଭିତ୍ତିକୁ ସମୟକୁ ସମୟ ନୂତନ ବୈଷୟିକ ସିଦ୍ଧାନ୍ତ ମାନଦଣ୍ଡରେ ପର୍ଯ୍ୟାଲୋଚନା କରାଯିବା ଦରକାର ।

ଏହି ପୃଷ୍ଠଭୂମିରେ ଏହା କହିବା ସମୀଚୀନ ମନେ ହୁଏ ଯେ ବୈଜ୍ଞାନିକ ଦୃଷ୍ଟିକୋଣ ଯେଉଁ ମୂଲ୍ୟବୋଧ ଉପରେ ତାହାହିଁ ହେତୁବାଦର ଅନ୍ତର୍ନିହିତ ଆଦର୍ଶ । ତାତ୍ତ୍ୱିକ ଓ ବ୍ୟବହାରିକ ସ୍ତରରେ ସେମାନେ ପରସ୍ପରଠାରୁ ଅଭିନ୍ନ ।

ହେତୁବାଦର ସାମାଜିକ ଅଙ୍ଗୀକାରବୋଧ ସମ୍ବନ୍ଧରେ ଏହା କହିବା ଯଥାର୍ଥ ଯେ ବ୍ୟକ୍ତିର ସାମର୍ଥକୁ ସ୍ୱୀକାର କରିବା ସହିତ ମଣିଷ ଯେ ତାର ସଭ୍ୟତା, ସଂସ୍କୃତି ଓ ବିଶେଷ କରି ତାର ଭବିଷ୍ୟତର ନିୟନ୍ତା ଏହାହିଁ ହେତୁବାଦର ମୂଳାଦର୍ଶ ଅଟେ । ଯେଉଁଠି ମଣିଷ ସାମୂହିକ ପ୍ରୟାସ ଦ୍ୱାରା ସାମାଜିକ ଜୀବନକୁ ଉନ୍ନତ ଓ ଶୃଙ୍ଖଳିତ କରିବା ପାଇଁ ଉଦ୍ୟମ କରିଛି ସେଠାରେ ଜୀବନର ଗୁଣାତ୍ମକ ଅଭିବୃଦ୍ଧି ଘଟିଛି । ବ୍ୟକ୍ତିଗତ ପ୍ରୟାସରେ ସାହିତ୍ୟ, ଦର୍ଶନ, କଳା ଆଦି ଋଦ୍ଧିମନ୍ତ ହେଉଥିବା ବେଳେ ସାମୂହିକ ପ୍ରଯତ୍ନ ଫଳରେ ସମାଜର ଜୀବନଧାରା, ଆଦର୍ଶବୋଧ ମାର୍ଜିତ ହୋଇଛି । ଜ୍ଞାନର ବିକାଶ ହେବାଦ୍ୱାରା ସମାଜରୁ ଦାରିଦ୍ର୍ୟ, ଅଜ୍ଞତା, କୁସଂସ୍କାର ଓ ବୌଦ୍ଧିକ ଜଡ଼ତା ଇତ୍ୟାଦି ହ୍ରାସ ପାଇଛି ବା ବିଲୋପ ହୋଇଛି । ସୁତରାଂ ହେତୁବାଦର ସାମାଜିକ ଆଭିମୁଖ୍ୟ କ୍ଷେତ୍ରରେ ଏହା ସମାଜରୁ ଦାରିଦ୍ର୍ୟ, ଅଜ୍ଞତା ଇତ୍ୟାଦିକୁ ବିଲୋପ କରିବାରେ ପ୍ରୟାସ କରିଛି । ମଣିଷ ନିଜର ପରିସ୍ଥିତି ଓ ପରିବେଶକୁ ଅବବୋଧ କରି ସେଥିରେ ଉନ୍ନତି ଆଣିବାକୁ ପ୍ରୟାସ କରିବାଦ୍ୱାରା ବହୁ କ୍ଷେତ୍ରରେ ସେ ସଫଳ ହୋଇଛି । ମହାମାରୀ ରୋଗମାନଙ୍କୁ ନିୟନ୍ତ୍ରଣ କରିବାରେ ତାର କ୍ରମବର୍ଦ୍ଧିଷ୍ଣୁ ସାମର୍ଥ୍ୟ ବୃଦ୍ଧି ପାଇଛି । ଦାରିଦ୍ର୍ୟ ଜନିତ ଅସହାୟ-ବୋଧର ସେ ଶିକାର ନ ହୋଇ ବରଂ ପ୍ରକୃତି ଯେତେ ପ୍ରତିକୂଳ ହେଲେ ମଧ୍ୟ ସେ କ୍ଷେତ୍ରରେ ସେ ନିଜର ପ୍ରୟାସଦ୍ୱାରା ନିଜର ପରିବେଶକୁ ବଦଳାଇବାରେ ସମର୍ଥ ହୋଇଛି । ପ୍ରାକୃତିକ ବିପର୍ଯ୍ୟୟରୁ ନିଜକୁ ରକ୍ଷା କରିବାପାଇଁ ନିଜର ବୁଦ୍ଧି ବଳରେ ନିଜର ସୁରକ୍ଷାର ପନ୍ଥା ବାହାର କରିଛି । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଆବଶ୍ୟକତା ପୂରଣ ପାଇଁ ବିହିତ ପଦକ୍ଷେପ ଗ୍ରହଣ କରିଛି । ବୈଜ୍ଞାନିକ ଜ୍ଞାନର ପ୍ରୟୋଗକରି ପ୍ରଯୁକ୍ତିବିଦ୍ୟାର ଅଭୂତପୂର୍ବ ଉନ୍ନତି ସାଧନ କରିଛି । ଗମନାଗମନଠାରୁ

ଆରମ୍ଭ କରି ଜୀବନର ବହୁ କ୍ଷେତ୍ରରେ ଉନ୍ନତି ସାଧନ ଦିଗରେ ମଣିଷ ବ୍ରତୀ ହୋଇଛି । ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା କ୍ଷେତ୍ରରେ ଯେଉଁ ଅଭୂତପୂର୍ବ ସାଫଲ୍ୟ ଆସିଛି ତାହା ସଭ୍ୟତାର ରୂପରେଖ ବଦଳାଇ ଦେଇଛି । ପ୍ରକୃତି ଉପରେ ମଣିଷର ନିୟନ୍ତ୍ରଣ କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇବାରେ ଲାଗିଛି ।

ବୈପ୍ଳବିକ ସ୍ତରରେ ହେତୁବାଦ ମଣିଷର ସାମର୍ଥ୍ୟକୁ ସ୍ୱୀକାର କରିଥାଏ । ମଣିଷ ସଭ୍ୟତା ଓ ସଂସ୍କୃତିର ନିୟାମକ ବୋଲି ଏହା ଗ୍ରହଣ କରେ । ଏହି ଦୃଷ୍ଟିଭଙ୍ଗୀ ଧର୍ମୀୟ ଦୃଷ୍ଟିଭଙ୍ଗୀଠାରୁ ପୃଥକ ମନେହୁଏ । ଧର୍ମୀୟ ଦୃଷ୍ଟିଭଙ୍ଗୀରେ ଅନେକାଂଶରେ ମଣିଷକୁ ପ୍ରାକୃତିକ ବା ଐଶ୍ୱରୀୟ ଶକ୍ତିର କ୍ରୀଡ଼ନକ ବୋଲି ମନେ କରାଯାଏ । ଅଲୌକିକ ଶକ୍ତି ପାଖରେ ସଭକ୍ତି ନିବେଦନ ଓ ଆତ୍ମସମର୍ପଣ କରିବା ସେହି ମାନସିକତାର ମହତ୍ତ୍ୱ ଅଟେ । ଏହି ସମର୍ପଣ-ଜନିତ-ଦାସତ୍ୱ ଭାବନାକୁ ବିଶିଷ୍ଟ ନିରୀଶ୍ୱରବାଦୀ ଗୋରା [2] (ଗୋପରାଜୁ ରାମଚନ୍ଦ୍ର ରାଓ) ଆସ୍ତିକତାବାଦ ବୋଲି ଗ୍ରହଣ କରିଛନ୍ତି । ତାଙ୍କ ଦୃଷ୍ଟିରେ ଜଗତ ପ୍ରତି ମଣିଷର ପ୍ରତିକ୍ରିୟା ଦୁଇପ୍ରକାର ହୋଇପାରେ । ପ୍ରଥମତଃ ମଣିଷ ତାର ଜାଗତିକ ପରିବେଶ ପାଖରେ ନିଜକୁ ସମର୍ପଣ କରି ଦୈବୀଶକ୍ତି ହାତରେ ନିଜର କ୍ରୀଡ଼ନକ ମନେ କରିପାରେ । ଏହା ଆସ୍ତିକତାବାଦ । ଅଥଚ ପରିବେଶ ପାଖରେ ନିଜର ଅସ୍ତିତ୍ୱକୁ ଜାହିର କରିବା ସହିତ ଏହାକୁ ନିୟନ୍ତ୍ରଣ ଭିତରେ ରଖି ନିଜର ଆବଶ୍ୟକତା ପାଇଁ ବିନିଯୋଗ କରିବା ହେଉଛି କର୍ତ୍ତୃତ୍ୱବୋଧ । ଏହି କର୍ତ୍ତୃତ୍ୱବୋଧ ଜନିତ ସ୍ୱାଧୀନ ଦୃଷ୍ଟିଭଙ୍ଗୀକୁ ଗୋରା ନିରୀଶ୍ୱରବାଦ ବୋଲି ବର୍ଣ୍ଣନା କରିଛନ୍ତି । ଗୋରାଙ୍କର ଆସ୍ତିକତାବାଦ ବା ନିରୀଶ୍ୱରବାଦ ଜନିତ ପ୍ରତୀତି ଅନେକାଂଶରେ ସ୍ୱନିର୍ଣ୍ଣିତ ସଂଜ୍ଞା (stipulative definition) ପରି ମନେ ହେଉଥିଲେ ବି ଏହି ମତ ପଶ୍ଚାତରେ ଯେଉଁ ସୂକ୍ଷ୍ମ ଭାବନା ରହିଛି ତାହା ତାତ୍ପର୍ଯ୍ୟପୂର୍ଣ୍ଣ । ହେତୁବାଦୀ ଚିନ୍ତନଧାରାରେ ଆଦିମ ସ୍ତରର ଜୀବନ ପ୍ରବାହଠାରୁ ଆଧୁନିକ ଯୁଗର ଜୀବନ ପ୍ରବାହ ମଧ୍ୟରେ ସର୍ବଦା ମଣିଷର ଯେ ଉଦ୍ୟମ ରହିଛି ଏହା ନିଃସନ୍ଦେହ । ପ୍ରାଚୀନ ଯୁଗରେ ମାଟିତଳେ ପାଣିର ସନ୍ଧାନ, ଜଙ୍ଗଲ କାଟି ଚାଷଜମି ପ୍ରସ୍ତୁତି, ଲୁହାର ବ୍ୟବହାର, ବୟନ କଳାର ବିକାଶ ଇତ୍ୟାଦି ହେଉ ବା ଆଧୁନିକ ଯୁଗରେ ସହର ନିର୍ମାଣ, ଉନ୍ନତ ପ୍ରଣାଳୀରେ ଶସ୍ୟ ଉତ୍ପାଦନ, କଂପ୍ୟୁଟର ପ୍ରଚଳନ ଇତ୍ୟାଦି ହେଉ ପ୍ରତ୍ୟେକ କ୍ଷେତ୍ରରେ ମଣିଷର ଯେ ପ୍ରୟାସ ରହିଛି ଏହା ନିଃସନ୍ଦେହ । ମଣିଷ ଯେ ତାର ସଭ୍ୟତା ଗଢ଼େ ଓ ସେ ହିଁ ତାର ଭାଗ୍ୟର ନିୟାମକ ଏହାହିଁ ହେତୁବାଦର ନିଷ୍କର୍ଷ ଅଟେ ।

ବିଚାରଶୀଳତାର ଉତ୍କର୍ଷତା ଯେତିକି ଅଧିକରୁ ଅଧିକ ବ୍ୟାପକ ହେଲା ତାର ପରିଣାମ ସ୍ୱରୂପ ସାମାଜିକ ଓ ରାଜନୈତିକ ଚିନ୍ତନ ପ୍ରକ୍ରିୟାରେ ସେହିପରି ଗୁଣାତ୍ମକ ପରିବର୍ତ୍ତନ ପାଇଁ ପରିବେଶ ସୃଷ୍ଟି ହେଲା । ଅତୀତରେ କିମ୍ବା ଧର୍ମକେନ୍ଦ୍ରିକ

ସମାଜ ବ୍ୟବସ୍ଥାରେ ଏକଛତ୍ରବାଦ ବା ରାଜତନ୍ତ୍ର ରହିଥିଲା ଓ ରାଜାଙ୍କୁ ଭଗବାନଙ୍କର ପ୍ରତିନିଧି ଭାବରେ ଗ୍ରହଣ କରାଯାଉଥିଲା । ଅଥଚ ନବଜାଗରଣ ଯୁଗ ପରେ ଯେଉଁ ରାଜନୈତିକ ଦର୍ଶନର ସୂତ୍ରପାତ ହେଲା ତାହା ଏକ ଗଣତାନ୍ତ୍ରିକ ସମାଜ ବ୍ୟବସ୍ଥା ପାଇଁ ମାନସିକତା ସୃଷ୍ଟି କଲା । ଗଣତନ୍ତ୍ର, ସମତା, ସ୍ୱାଧୀନତା, ବ୍ୟକ୍ତି ମର୍ଯ୍ୟାଦା-ବୋଧ ପରି ମୂଲ୍ୟବୋଧଗୁଡ଼ିକ ସମାଜରେ ଅଧିକରୁ ଅଧିକ ଆଦୃତ ହେଲା । ବ୍ୟକ୍ତି ହିଁ ଶାସନ ଓ ରାଜନୈତିକ ଆଦର୍ଶ କ୍ଷେତ୍ରରେ କେନ୍ଦ୍ରବିନ୍ଦୁ ହେଲା । ସମାଜବାଦୀ ଚେତନା ଉଦ୍ରେକ ହେଲା ଓ ଏହା କେତେ କେତେ ନୂଆ ପରିଭାଷା ମଧ୍ୟରେ ବ୍ୟକ୍ତ ହେବାକୁ ଲାଗିଲା । ରାଜନୈତିକ ଏକଛତ୍ରବାଦ, ଶୋଷଣ, ସାମନ୍ତବାଦ, ଜାତିବାଦ ବିରୁଦ୍ଧରେ ବହୁ ରାଷ୍ଟ୍ରରେ ସ୍ୱର ଗୁଞ୍ଜରି ଉଠିବା ସହିତ ଗଣତନ୍ତ୍ର, ସାମ୍ୟବାଦ, ମାନବବାଦ ଇତ୍ୟାଦି ସାମାଜିକ ଓ ରାଜନୈତିକ ମୂଲ୍ୟଚୟ ମଣିଷର ମାନସିକ ଦିଗ୍‌ବଳୟକୁ ବିସ୍ତାର କରିଦେଲା । ଅବଶ୍ୟ ପ୍ରତ୍ୟେକଟି ବ୍ୟବସ୍ଥାର ଆପେକ୍ଷିକ ଦୋଷ ତ୍ରୁଟି ରହିପାରେ, ତଥାପି ବୈଶ୍ୱିକ ସ୍ତରରେ ଗଣତନ୍ତ୍ର, ବ୍ୟକ୍ତି ସ୍ୱାଧୀନତା, ସମତା, ମାନବିକ ଅଧିକାର ଇତ୍ୟାଦି ମୂଲ୍ୟବୋଧ ଗୁଡ଼ିକ ଯେ ଉନ୍ନତ ଚେତନାର ପ୍ରତୀକ ଏହା କୁହାଯାଇପାରେ । ଏହି ମୂଲ୍ୟଚୟ-ଗୁଡ଼ିକ ହେତୁବାଦୀ ଜୀବନାଦର୍ଶରୁ ଉଦ୍‌ଭୂତ ହୋଇ ବୃହତ୍ତର ପରିବେଶରେ ଅଧିକରୁ ଅଧିକ ସ୍ୱୀକୃତ ହେବାକୁ ଲାଗିଲା । ସାମନ୍ତବାଦୀ ଦୃଷ୍ଟିଭଙ୍ଗୀରେ ସାମନ୍ତ ବା ଶାସକଙ୍କର ଯେଉଁ ସ୍ତୁତି ଚାଲିଥିଲା ତାହା ବଦଳରେ ପ୍ରତ୍ୟେକ ବ୍ୟକ୍ତିର ସାମାଜିକ ଅଧିକାର ନେଇ ଏପରିକି ସାଂବିଧାନିକ ସ୍ୱୀକୃତି ରହିଲା । ବ୍ୟକ୍ତିର ଅଧିକାରକୁ ଗୁରୁତ୍ୱ ଦିଆଯିବା ସହିତ ପ୍ରତ୍ୟେକ ବ୍ୟକ୍ତିର ସମୁଚିତ ବିକାଶକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ଗ୍ରହଣ କରାଗଲା । ସୃଜନାତ୍ମକ କଳା, ସାହିତ୍ୟ ଇତ୍ୟାଦି କ୍ଷେତ୍ରରେ ଏହି ଦୃଷ୍ଟିଭଙ୍ଗୀ ଅଧିକରୁ ଅଧିକ ପ୍ରତିଫଳିତ ହେବାକୁ ଲାଗିଲା । ଆଗେ ସାହିତ୍ୟ ଯେପରି ରାଜା ଓ ସାମନ୍ତମାନଙ୍କୁ ନେଇ ଦରବାରୀ ସାହିତ୍ୟ ହୋଇ ରହିଥିଲା ସେଥିରେ ପରିବର୍ତ୍ତନ ହେଲା । ସାଧାରଣ ମଣିଷର ହସ, କାନ୍ଦ, ସୁଖ, ଦୁଃଖ, ନୈତିକ ଦ୍ୱନ୍ଦ୍ୱ ଇତ୍ୟାଦି ସାହିତ୍ୟର ବିଷୟ ହେଲା । ସାହିତ୍ୟରେ ବାସ୍ତବବାଦୀ ଚେତନାର ପ୍ରତିଫଳନ ହେଲା ।

ଏତଦ୍‌ବ୍ୟତୀତ ବୈଶ୍ୱିକ ଉତ୍କର୍ଷତା ମଣିଷର ନୈତିକ ଚେତନା ସ୍ତରରେ ଅଧିକ ଗୁରୁତ୍ୱପୂର୍ଣ୍ଣ ମନେହେଲା । ବ୍ୟକ୍ତିର ସାମାଜିକ ଅଙ୍ଗୀକାରବୋଧ ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ବା ଦଳଠାରୁ ସମଗ୍ର ମଣିଷଜାତି ବା ପ୍ରକୃତି ପ୍ରତି ପ୍ରସାରିତ ହେଲା । ପ୍ରାଚୀନ ସମାଜରେ ବ୍ୟକ୍ତିର ମର୍ଯ୍ୟାଦା ଶାରୀରିକ ସାମର୍ଥ୍ୟକୁ ନେଇ ସ୍ଥିରୀକୃତ ହେଉଥିଲା, କାରଣ ସେତେବେଳର ସମାଜରେ ଯୋଦ୍ଧା ଭାବର ଗୁରୁତ୍ୱ ଅଧିକ ଥିଲା । କିନ୍ତୁ ଆନ୍ତର୍ବ୍ୟକ୍ତିକ ସମ୍ବନ୍ଧ ଯେତିକି ପ୍ରସାରିତ ହେବାକୁ ଲାଗିଲା ବ୍ୟକ୍ତିର ନୈତିକ

ଅଙ୍ଗୀକାର ସେତିକି ବ୍ୟାପକ ହେବାକୁ ଲାଗିଲା । ପରିବାର ବା କ୍ଷୁଦ୍ର ସାମାଜିକ ଗୋଷ୍ଠୀଠାରୁ ରାଷ୍ଟ୍ର ଓ ବୃହତ୍ତର ମାନବଜାତି ପ୍ରତି ବ୍ୟକ୍ତିର କର୍ତ୍ତବ୍ୟ ସଂପ୍ରସାରିତ ହେବା ସଭ୍ୟତାର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଅଟେ । ସମ୍ପ୍ରତି ଆନ୍ତର୍ଜାତିକ ଦୃଷ୍ଟିକୋଣର ପ୍ରସାର ତଥା ସମଗ୍ର ମଣିଷ ସମାଜର କଲ୍ୟାଣ-ଭାବନା ଆମ ସାଂସ୍କୃତିକ ଉତ୍ତରଣର ପରିଚୟ ଦେଇଥାଏ । ରେଡ୍‌କ୍ରସ, ବିଶ୍ୱ ଜାତିସଂଘ, ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା ପରି ଅନେକ ଆନ୍ତର୍ଜାତିକ ସଂଗଠନ ସମଗ୍ର ମଣିଷଜାତିର କଲ୍ୟାଣ ପାଇଁ କାର୍ଯ୍ୟ କରିବା ଏହି ଉତ୍ତରଣର ସ୍ୱାକ୍ଷର ବହନ କରେ ।

( ୬ )

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଅନେକ ଆନ୍ତର୍ଜାତିକ ସଂଗଠନ ସାରା ବିଶ୍ୱରେ ମୁଣ୍ଡ ଟେକିଛି । ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିବିଦ୍ୟା ପୃଥିବୀର ଦୂରତାକୁ କମାଇ ଦେବାରେ ସାହାଯ୍ୟ କରିଛି । ଭାଷା, ଧର୍ମ, ଜାତୀୟତାର ଊର୍ଦ୍ଧ୍ୱରେ "ମାନବିକତା" ହିଁ ସର୍ବଶ୍ରେଷ୍ଠ ଆଦର୍ଶ ଭାବେ ଅଧିକରୁ ଅଧିକ ସ୍ୱୀକୃତ ହେବାରେ ଲାଗିଛି । ଅନ୍ତତଃ ପୃଥିବୀର ପ୍ରତ୍ୟେକ ଦେଶରେ କିଛି ଚିନ୍ତାଶୀଳ ବ୍ୟକ୍ତି, ରାଜନୀତିଜ୍ଞ, ଜନନାୟକ, ବୈଜ୍ଞାନିକ, ସମାଜସେବୀ ସାରା ପୃଥିବୀର ଜନଗଣଙ୍କୁ ଏକକ ଭାବରେ ଗ୍ରହଣ କରୁଛନ୍ତି । କୌଣସି ଅଞ୍ଚଳର କିଛି ଗୁରୁତର ସମସ୍ୟା ଆନ୍ତର୍ଜାତିକ ସ୍ତରରେ ଆଲୋଚନା ହେବାର ଅବକାଶ ସୃଷ୍ଟି ହୋଇଛି । କୌଣସି ଅଞ୍ଚଳର ଜନଗଣଙ୍କର ଦୁର୍ଗତିକୁ ଦୂର କରିବାକୁ ପୃଥିବୀର ବିଭିନ୍ନ ଦେଶର ଜନଗଣଙ୍କର ସହାନୁଭୂତି ମିଳିପାରୁଛି । ପୃଥିବୀକୁ ଯୁଦ୍ଧ ରହିତ କରି ସମସ୍ତ ସମସ୍ୟାକୁ ଶାନ୍ତିପୂର୍ଣ୍ଣ ଭାବରେ ଆଲୋଚନା ମାଧ୍ୟମରେ ସମାଧାନ କରିବାକୁ ପୃଥିବୀର ସଚେତନ ଚିନ୍ତାନାୟକ-ମାନେ ମତପୋଷଣ କରୁଛନ୍ତି । ମୋଟ ଉପରେ ସାରା ପୃଥିବୀରେ ଆନ୍ତର୍ଜାତିକ ଦୃଷ୍ଟିକୋଣ ନେଇ ଯେଉଁ ମାନସିକତା ଆସିଛି ତାହା ଅସ୍ୱୀକାର କରିହେବ ନାହିଁ । ଏପରିକି ସମଗ୍ର ବିଶ୍ୱ ପାଇଁ ଏକ "ବିଶ୍ୱ ସରକାର" ଗଠନର ଭାବନା ବିଶ୍ୱଯୁଦ୍ଧ ପରବର୍ତ୍ତୀ କାଳରେ ପ୍ରକାଶ ପାଇଛି । ଏହାର ସମ୍ଭାବନା ସାଂପ୍ରତିକ ସ୍ଥିତିରେ ଅବାସ୍ତବ ବା ସୁଦୂରପ୍ରସାରୀ ମନେ ହେଉଥିଲେ ସୁଦ୍ଧା ଏ କ୍ଷେତ୍ରରେ ଯେଉଁ ବୈପ୍ଳବିକ ଭାବନା ଆସିଛି ତାହା ଗୁରୁତ୍ୱପୂର୍ଣ୍ଣ । ହୁଏତ ସଭ୍ୟତାର ଅଗ୍ରଗତି ସହ ବିଜ୍ଞାନ ଓ ପ୍ରଯୁକ୍ତି ଜ୍ଞାନ ଏହି ସମ୍ଭାବନାକୁ ଦିନେ ଯେ ସାକାର କରିପାରିବ ଏହିପରି ଏକ ଆଶା ମଧ୍ୟ ରହୁଛି । ମଣିଷମାନଙ୍କର ରଙ୍ଗ, ଚାଲିଚଳଣି, ଖାଦ୍ୟ, ପୋଷାକ ଭିତରେ ପାର୍ଥକ୍ୟ ରହିଛି ହେଲେ ସବୁ ମଣିଷଙ୍କର ହୃଦୟର ଭାଷା ସମାନ, ମାନବିକ ସମ୍ପ୍ରୀତି ଅଭିନ୍ନ ଓ ସମଗ୍ର ମଣିଷଜାତି ଏକ । ଏହି ବିଚାର ଅଧିକରୁ ଅଧିକ ବାସ୍ତବ ପକ୍ଷରେ ପୃଥିବୀରେ ବିକାଶଲାଭ କରିବାରେ ଲାଗିଛି । ମଣିଷ ମଣିଷ ଭିତରେ

ଏପରି ଅନ୍ତର୍ନିହିତ ଗୁଣ ନାହିଁ ଯାହାକି ତାକୁ ଅନ୍ୟଠାରୁ ପୃଥକ୍ କରି ରଖିବ । ବିଭିନ୍ନ ଜାତି, ଧର୍ମ ବା ଭାଷାଭାଷୀ ଲୋକମାନଙ୍କ ଭିତରେ ରହିଥିବା ବୈଷମ୍ୟ ପ୍ରାକୃତିକ ନୁହେଁ ବରଂ ଏହା ସାମାଜିକ ପରିବେଶ ଓ ପରିସ୍ଥିତି ଜନିତ ଅଟେ । ବ୍ୟକ୍ତି ବ୍ୟକ୍ତି ଭିତରେ ସାମର୍ଥ୍ୟ ବା ଯୋଗ୍ୟତାର ପ୍ରଭେଦ ସେପରି ଗୁରୁତ୍ୱପୂର୍ଣ୍ଣ ନୁହେଁ । ସୁତରାଂ ସବୁ ମଣିଷମାନଙ୍କୁ ସମାନ ବୋଲି ଗ୍ରହଣକରି ପ୍ରତ୍ୟେକ ବ୍ୟକ୍ତିର ଅଧିକାରକୁ ସ୍ୱୀକୃତି ଦେବା ଏକ ସଭ୍ୟ ଦୃଷ୍ଟିଭଙ୍ଗୀ । ସମାଜର ସମସ୍ତ ବ୍ୟକ୍ତିଙ୍କର ସମୁଚିତ ବିକାଶ, ଅଧିକାର, ମର୍ଯ୍ୟାଦାବୋଧ ନେଇ ଭାବନା ଆସିବା ତଥା ସାମାଜିକ ନ୍ୟାୟ ପାଇଁ ରାଷ୍ଟ୍ର ପ୍ରତିବଦ୍ଧ ରହିବା ବୌଦ୍ଧିକ ବିକାଶର ସ୍ୱାକ୍ଷର ବହନ କରେ ।

ମୋଟ ଉପରେ କହିବାକୁ ଗଲେ ହେତୁବାଦ ଜନିତ ବିଚାରଶୀଳତାର ପ୍ରାଧାନ୍ୟଦ୍ୱାରା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭ୍ୟୁଦୟ ହୋଇଛି । ପରିଣାମତଃ ସମାଜରେ ବିଶ୍ୱାସ ପରିବର୍ତ୍ତେ ଅନୁସନ୍ଧିତ୍ସା, କୁସଂସ୍କାର ବଦଳରେ ପ୍ରତିକ୍ଷଣ ବା ପରୀକ୍ଷଣ ଆଧାରିତ ଜ୍ଞାନର ପ୍ରାଧାନ୍ୟ, ଅନମନୀୟତା ସ୍ଥାନରେ ମୁକ୍ତ ଚିନ୍ତା, ସ୍ୱମତଜନିତ ରୁଦ୍ଧ ମାନସିକତା ପରିବର୍ତ୍ତେ ସ୍ୱାଧୀନ ଦୃଷ୍ଟିଭଙ୍ଗୀର ବିକାଶ ହୋଇଛି । ବ୍ୟକ୍ତିର ସାମାଜିକ ଅଙ୍ଗୀକାରବୋଧ କ୍ଷୁଦ୍ର ଗୋଷ୍ଠୀ ବା ଜାତିଠାରୁ ବୃହତ୍ତର ସମାଜ ବା ସମଗ୍ର ମନୁଷ୍ୟଜାତି ପ୍ରତି ପ୍ରସାରିତ ହୋଇଛି, ବ୍ୟକ୍ତି ମର୍ଯ୍ୟାଦାବୋଧ ମନୋଭାବ ଆସିଛି, ସାମନ୍ତବାଦୀ ଦୃଷ୍ଟିକୋଣରେ ରହିଥିବା ବ୍ୟକ୍ତିପୂଜା ଜନିତ ଦାସତ୍ୱ ମନୋଭାବ ଦୂର ହୋଇଛି, ପ୍ରତ୍ୟେକ ବ୍ୟକ୍ତିର ଅଧିକାରକୁ ଗୁରୁତ୍ୱ ଦିଆଯାଇଛି, ସମତା ଓ ସାମାଜିକ୍ ନ୍ୟାୟ ନେଇ ଚେତନା ଉଦ୍ରେକ ହୋଇଛି, ପ୍ରତ୍ୟେକ ବ୍ୟକ୍ତିର ସୁଖ, ସ୍ୱାଚ୍ଛନ୍ଦ୍ୟ ପାଇଁ ସରକାରୀ ସଚେତନତା ବୃଦ୍ଧି ପାଇଛି । ଧର୍ମଗତ ରକ୍ଷଣଶୀଳତା ବା ଧର୍ମାନ୍ଧତା ପରିବର୍ତ୍ତେ ଧର୍ମନିରପେକ୍ଷ ମନୋଭାବର ଉଦ୍ରେକ ହୋଇଛି, ଅଲୌକିକ ଶକ୍ତିରେ ବିଶ୍ୱାସ ପରିବର୍ତ୍ତେ ଆତ୍ମ-ବିଶ୍ୱାସ ବୃଦ୍ଧି ପାଇଛି, ଅତୀନ୍ଦ୍ରିୟ ଶକ୍ତି ସ୍ଥାନରେ ଜଗତ ଓ ଜାଗତିକ ଘଟଣା ପ୍ରତି ସଚେତନତା ଆସିଛି, ଅନ୍ୟାୟ ଓ ଅତ୍ୟାଚାରକୁ ପ୍ରତିରୋଧ କରିବା ନେଇ ମାନସିକତା ସୃଷ୍ଟି ହୋଇଛି । ରାଜନୈତିକ ଦୃଶ୍ୟପଟରେ ଗଣତନ୍ତ୍ର, ସମାଜବାଦ, ଧର୍ମନିରପେକ୍ଷତା, ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ମୂଲ୍ୟଚୟର ବିକାଶ ହୋଇଛି । ସମାଜର ସମସ୍ତ ବ୍ୟକ୍ତି କିପରି ସୁଖ ସ୍ୱାଚ୍ଛନ୍ଦ୍ୟରେ ରହିପାରିବେ ସେଥିପାଇଁ ଅଧିକାଂଶ ରାଷ୍ଟ୍ର ଜନମଙ୍ଗଳକାରୀ ଯୋଜନାକୁ ଅଗ୍ରାଧିକାର ଦେଉଛନ୍ତି । ମୋଟ ଉପରେ କହିଲେ ସାମାଜିକ ବିକାଶଧାରାରେ ମଣିଷ ହିଁ ମାନଦଣ୍ଡ ହୋଇପାରୁଛି । ଜୀବନର ଗୁଣାତ୍ମକ ବିକାଶ ହିଁ ସକଳ ବିକାଶର ଯେ ଚାବିକାଠି ଏହି ଦୃଷ୍ଟିକୋଣ ଅଧିକରୁ ଅଧିକ ସ୍ୱୀକୃତ ହେବାରେ ଲାଗିଛି । ଜୀବନର ବିଭିନ୍ନ ସ୍ତରରେ ବିଚାରଶୀଳତାର ପ୍ରାଧାନ୍ୟ ଆସିଛି । ଚିନ୍ତାଶୀଳ ଭାବେ ବ୍ୟକ୍ତିଗତ

ଓ ବ୍ୟକ୍ତିଗତ ଲକ୍ଷ୍ୟ ସ୍ଥିରକରି ସାମାଜିକ ପୁନଃନିର୍ମାଣ ପାଇଁ ପ୍ରୟାସ ହୋଇପାରୁଛି । ବସ୍ତୁତଃ ସକଳ ବିକାଶର ମୂଲ୍ୟାୟନ ଓ ସାମାଜିକ ଦିଗଦର୍ଶନ କ୍ଷେତ୍ରରେ ବିଚାରଶୀଳ ମାନଦଣ୍ଡ ହିଁ ନିର୍ଣ୍ଣାୟକ ଭୂମିକା ନେଇପାରୁଛି । ଜୀବନର ଗୁଣାତ୍ମକ ଅଭିବୃଦ୍ଧିରେ ବିଚାରଶୀଳତାର ଏହି ମହତ୍ତ୍ୱ ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଛି ଏହା ଅନସ୍ୱୀକାର୍ଯ୍ୟ ।

( ୬ )

ବିଚାରଶୀଳତାର ପ୍ରାଧାନ୍ୟ ଯୋଗୁଁ ଉଲ୍ଲିଖିତ ବିକାଶ ବୌଦ୍ଧିକ ସ୍ତରରେ ସମାହିତ ହୋଇଥିଲେ ମଧ୍ୟ ଏହାକୁ ଏକ ଗୁଣାତ୍ମକ ବିକାଶ ବୋଲି କହିବା ନେଇ ହୁଏତ ସନ୍ଦେହ ଆରୋପ କରାଯାଇପାରେ । ବିଶେଷତଃ ସମାଜର ସାଧାରଣ ଜୀବନଧାରାରେ ଅସଂଖ୍ୟ ଅହେତୁକ ଓ ବିଚାରଶୂନ୍ୟ ଭାବନା, ହେତୁହୀନ କାର୍ଯ୍ୟ, ନୀତିହୀନ ବ୍ୟବହାର ଓ ଚିନ୍ତାଶୂନ୍ୟ ଯୋଜନାର ବହୁଳତା ଯେପରି ଦେଖିବାକୁ ମିଳେ ତାହା ଆମର ବିଚାରଶୀଳତା ପ୍ରତି ସନ୍ଦେହ ସୃଷ୍ଟି କରିଥାଏ । ବିଚାରଶୀଳତା ଯେ ସାମଗ୍ରିକ ଜୀବନଧାରାରେ ନାହିଁ ଏହା ବି କେହି କହିପାରନ୍ତି । ବୈଚାରିକ ସ୍ତରରେ ଯେଉଁ ଜ୍ଞାନର ଅଭ୍ୟୁଦୟ ହୋଇଛି ତାହା ସମ୍ପୂର୍ଣ୍ଣ ଏକ ଉଲମ୍ବିତ (vertical) ବିକାଶ, ତାହା ଯେ ସାଧାରଣ ଜୀବନ ପ୍ରବାହରେ ସାମନ୍ତରାଳ ଭାବରେ (horizontal) ହୋଇନାହିଁ ଏହା ସମ୍ଭବତଃ ଆମର ଜୀବନଧାରାରୁ ପ୍ରତୀତ ହୁଏ । କେତେକ ମୁଷ୍ଟିମେୟ ବ୍ୟକ୍ତିଙ୍କର ବୁଦ୍ଧିଦୀପ୍ତ ଓ ତାର୍କିକ ସାମର୍ଥ୍ୟ ଜନସମାଜର ହିତ ପାଇଁ ଉଦ୍ଦିଷ୍ଟ ହେବା ପରିବର୍ତ୍ତେ ମାନବଜାତିର ବୃହତ୍ତର କ୍ଷତିସାଧନ ପାଇଁ ବେଳକେ ଉଦ୍ଦିଷ୍ଟ ହେବା ବେଶ୍ ପ୍ରହେଳିକା ସଦୃଶ ମନେହୁଏ । ଜ୍ଞାନ ଯଦି ସୁଖ ଶାନ୍ତି ପାଇଁ ଅଭିପ୍ରେତ ନ ହୋଇ ମଣିଷ ସମାଜରେ ଶୋଷଣ, ଅତ୍ୟାଚାର ଓ ଦୁର୍ଦ୍ଦଶାକୁ ବୃଦ୍ଧି କରାଏ ତେବେ ସେ କ୍ଷେତ୍ରରେ ଅଜ୍ଞତାକୁ ଶ୍ରେୟସ୍କର ବୋଲି ଗ୍ରହଣ କରିବା ଅସମୀଚୀନ ମନେ ହୋଇନପାରେ । ବିଶେଷତଃ ଆଧୁନିକ ଯୁଗରେ ବିଜ୍ଞାନର ଅଭୂତପୂର୍ବ ସଫଳତା ସଭ୍ୟତା ପାଇଁ ଧ୍ୱଂସକାରୀ ହେବା ଆମ ବିଚାରହୀନତାର ପ୍ରମାଣ ଦେଇଥାଏ । ସାଂପ୍ରତିକ ଯୁଗରେ ବିଜ୍ଞାନ ଓ ପ୍ରଯୁକ୍ତିଜ୍ଞାନ ଯୋଗୁଁ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ଯେଉଁ ଆର୍ଥିକ ତାରତମ୍ୟ ବୃଦ୍ଧି ପାଇଛି ତାହା ବାସ୍ତବରେ ଚିନ୍ତାର ବିଷୟ । ସେହିପରି ଯନ୍ତ୍ରର ବହୁଳ ପ୍ରୟୋଗର ପରିଣାମ ଯୋଗୁଁ ସମାଜର ଅଧିକାଂଶ ବ୍ୟକ୍ତି ଯେପରି ଆର୍ଥିକ ଦୁର୍ଗତିର ସମ୍ମୁଖୀନ ହେଉଛନ୍ତି ତାହା ସାମାଜିକ ସ୍ଥିରତାକୁ ବ୍ୟାହତ କରିବାରେ ଲାଗିଛି । ମଣିଷ ମଣିଷ ଭିତରେ ସବୁ ସ୍ତରରେ ଯେପରି ପାର୍ଥକ୍ୟ ବଢ଼ି ବଢ଼ି ଚାଲିଛି ତାହା ଆମ ଅସୁସ୍ଥ ମାନସିକତାର

ପରିଚୟ ଦେଇଥାଏ । ସାଂପ୍ରତିକ ସ୍ଥିତିରେ ଆର୍ଥିକ ସମତା ପରିବର୍ତ୍ତେ ଶୋଷଣ ଓ ବୈଷମ୍ୟ ଜନଜୀବନରେ ଅଧିକରୁ ଅଧିକ ବୃଦ୍ଧି ପାଉଛି । ବେକାରୀ ସମସ୍ୟା ଉତ୍କଟ ହେବାରେ ଲାଗିଛି । ହିଂସା, ଅପରାଧ ପ୍ରବଣତା ମଧ୍ୟ ଦ୍ରୁତଗତିରେ ବଢ଼ିବାରେ ଲାଗିଛି । ଦୂରଦର୍ଶନ ପରି ଏକ ପ୍ରଭାବଶାଳୀ ଗଣମାଧ୍ୟମର ଅପପ୍ରୟୋଗ ହୋଇ ଏକ ଭୋଗବାଦୀ ଓ ଉପଭୋକ୍ତାବାଦୀ ସଂସ୍କୃତିର ବିକାଶ ହୋଇଛି । ଯୌନ ବ୍ୟଭିଚାର, ଅପସଂସ୍କୃତି ବୃଦ୍ଧି ପାଇବାରେ ଲାଗିଛି । ସାମାଜିକ ସ୍ଥିରତା ଓ ଶାନ୍ତି ସାଂପ୍ରତିକ ସମାଜରେ ଘୋର ଆହ୍ୱାନର ସମ୍ମୁଖୀନ ହୋଇଛି । ଏତଦ୍‌ବ୍ୟତୀତ ପରିବେଶର ପ୍ରଦୂଷଣ ଯେପରି ଏକ ଭୀତିପ୍ରଦ ଅବସ୍ଥାକୁ ଯାଉଛି ତାହା ଆଗାମୀ ଦିନରେ ମଣିଷର ସ୍ଥିତି ନେଇ ଆଶଙ୍କା ବ୍ୟକ୍ତ କରୁଛି । ସେହିପରି ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଆଣବିକ ଅସ୍ତ୍ର ନିର୍ମାଣରେ ଅହେତୁକ ପ୍ରତିଯୋଗିତା ଲାଗି ରହିଛି । ପୃଥିବୀପୃଷ୍ଠର ସୀମିତ ପ୍ରାକୃତିକ ସମ୍ପଦଗୁଡ଼ିକୁ ଧ୍ୱଂସାତ୍ମକ ମାରଣାସ୍ତ୍ର ନିର୍ମାଣ କ୍ଷେତ୍ରରେ ବିନିଯୋଗ କରିବା ଆମ ବିଚାରହୀନତାର ପ୍ରମାଣ ଦିଏ । ଯୁଦ୍ଧ, ବିଭୀଷିକା, ଧ୍ୱଂସ, ଅମାନବିକତା, ସନ୍ତ୍ରାସବାଦ, ନବସାମ୍ରାଜ୍ୟବାଦ ଶିଳ୍ପ-ବିପ୍ଳବ-ପରବର୍ତ୍ତୀ ସମୟରୁ କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଇ ସାଂପ୍ରତିକ ଯୁଗରେ ଏକ ଭୀତିପ୍ରଦ ସୋପାନରେ ପହଞ୍ଚିଛି । ପ୍ରଚଳିତ ପ୍ରଯୁକ୍ତିବିଦ୍ୟାର ଅପରିଣାମଦର୍ଶୀ ପ୍ରୟୋଗଦ୍ୱାରା ସମାଜରେ ଯେଉଁ ଆର୍ଥିକ, ସାଂସ୍କୃତିକ ଓ ରାଜନୈତିକ ଅସନ୍ତୁଳନ ବୃଦ୍ଧି ପାଉଛି ତାହା ସମାଜର ସୁଖ ଶାନ୍ତିକୁ ଭୟଙ୍କର ଭାବରେ ବ୍ୟାହତ କରିବାରେ ଲାଗିଛି । ପୃଥିବୀ ଜନସଂଖ୍ୟାର ଅଧାଅଧି ଲୋକ ଜୀବନର ସର୍ବନିମ୍ନ ଆବଶ୍ୟକତାକୁ ପୂରଣ କରିବାରେ ଅସମର୍ଥ ହେଉଥିବାବେଳେ ମୁଷ୍ଟିମେୟ ଲୋକ ଶୋଷଣ କରି ପ୍ରାଚୁର୍ଯ୍ୟ ଭିତରେ ବଞ୍ଚିବା କେଉଁ ସାଂସ୍କୃତିକ ଉତ୍ତୋରଣର ପ୍ରମାଣ ଦେଉଛି ? ପ୍ରଯୁକ୍ତିଜ୍ଞାନ ଯେତିକି ଆଗକୁ ଯାଉଛି ଜନଗଣଙ୍କ ଭିତରେ ଆର୍ଥିକ ବିଷମତା ସେତିକି ବୃଦ୍ଧି ପାଇବାରେ ଲାଗିଛି, ଜନସଂଖ୍ୟାର ଏକ ମୁଖ୍ୟ ଅଂଶ କର୍ମ ସଂସ୍ଥାନହୀନ ହେବାରେ ଲାଗିଛି, ଶିଶୁଶ୍ରମିକ ସଂଖ୍ୟା ଅଧିକାଂଶ ଦେଶରେ ବଢ଼ିବାରେ ଲାଗିଛି । ଚିକିତ୍ସା ବିଜ୍ଞାନର ଯେତିକି ଉନ୍ନତି ହେଉଛି ମଣିଷ ଉତ୍ତମ ସ୍ୱାସ୍ଥ୍ୟର ଅଧିକାରୀ ହେବା ପରିବର୍ତ୍ତେ ନୂଆ ନୂଆ ରୋଗର ଶିକାର ହେବାରେ ଲାଗିଛି । ଆନ୍ତର୍ଜାତିକ ସଂଗଠନ ବୃଦ୍ଧି ପାଇବା ସହିତ ଆନ୍ତର୍ଜାତିକ ଉତ୍ତେଜନା ମଧ୍ୟ ବଢ଼ିଚାଲିଛି । ଏହିପରି ବିଚାର କଲେ ନାନା ଜଟିଳ ସମସ୍ୟା ଆଧୁନିକ ଜୀବନଧାରାରେ ପରିଲକ୍ଷିତ ହେବ । ଅଧିକାଂଶ ସମସ୍ୟା ମଣିଷର ବିଚାରହୀନତାରୁ ସୃଷ୍ଟ ବୋଲି ମଧ୍ୟ ପ୍ରତୀତ ହେବ । ସୁତରାଂ ସଭ୍ୟତାର କ୍ରମୋନ୍ନତି ଓ ଜ୍ଞାନର ଅଗ୍ରଗତି ହେଉଛି ବୋଲି ଯେତେ କହିଲେ ମଧ୍ୟ ଆମର ବାସ୍ତବ ଜୀବନ ଯେ ପ୍ରକୃତରେ ବିଚାରଶୀଳ ଆଦର୍ଶଦ୍ୱାରା ଅନୁପ୍ରାଣିତ ଏହା କହିବା ଅସମୀଚୀନ ମନେହୁଏ ନାହିଁ । ଜ୍ଞାନର ବିକାଶ ସହିତ ସମ୍ବେଦନଶୀଳ ଭାବନାର ବିକାଶ ନ ହେଲେ ମଣିଷ ମଣିଷ ଭିତରେ ବିଭିନ୍ନ ସ୍ତରରେ

ବିଷମତା ଯେ ବଢ଼ିଚାଲିବ ଏହା ନିଃସନ୍ଦେହ ମନେହୁଏ । ବସ୍ତୁତଃ ବିଚାରଶୀଳ ଭାବନା ସମାଜରେ ବ୍ୟାପକ ହୋଇପାରିବ ନାହିଁ । ଜ୍ଞାନ ଶୋଷଣ ଦିଗରେ, ପ୍ରଯୁକ୍ତିଜ୍ଞାନ ବିଷମତା ବୃଦ୍ଧି ଦିଗରେ, ଗଣତନ୍ତ୍ର ଗୁଣ୍ଡାମୀରେ, ଶିକ୍ଷା ବେକାରୀ ସୃଷ୍ଟିରେ ଆଧୁନିକତା ଅସଭ୍ୟତାରେ ସହାୟକ ହେବା ବୌଦ୍ଧିକ ଉତ୍କର୍ଷତା ପରିବର୍ତ୍ତେ ଆମ ସାଂସ୍କୃତିକ କ୍ଷୟଶୀଳତାର ସୂଚନା ଦେଇଥାଏ । ସୁତରାଂ ସାଂପ୍ରତିକ ଯୁଗରେ ଜ୍ଞାନ, ବିଜ୍ଞାନର ବହୁଳ ଅଗ୍ରଗତି ସତ୍ତ୍ୱେ ସମାଜର ସଙ୍କଟ ଯେ ବଢ଼ିଛି ଏହାହିଁ ବଡ଼ ପ୍ରହେଳିକା କହିଲେ ଅତ୍ୟୁକ୍ତି ହେବ ନାହିଁ । ମଣିଷ ମଣିଷ ଭିତରେ ସମ୍ପ୍ରୀତି ପରିବର୍ତ୍ତେ ସଙ୍କଟ ଅଧିକ ହେବା, ବ୍ୟକ୍ତି ନିଜକୁ ଅଧିକ ଅସହାୟବୋଧ କରିବା, ପାରିବାରିକ ବନ୍ଧନ ଶିଥିଳ ହୋଇପଡ଼ିବା, ଅନ୍ୟର ଦୁଃଖ ଦୁର୍ଦ୍ଦଶା ପ୍ରତି ସମବେଦନା-ହୀନ ମନୋଭାବ ଆସିବା ଇତ୍ୟାଦି ଘଟଣା ଯେତେ ସ୍ପଷ୍ଟଭାବରେ ଆମର ଜୀବନଧାରାରେ ଅନୁଭୂତ ହେଉଛି ତାହା ଉନ୍ନତି ପରିବର୍ତ୍ତେ ନୈତିକ ଅବନତିର ଚିତ୍ର ଦେବାରେ ଲାଗିଛି । ଏସବୁ ସ୍ଥିତି ଆମର ସଭ୍ୟତା, ବିଚାରଶୀଳତା ଇତ୍ୟାଦିର ପୁନଃ ମୂଲ୍ୟାୟନ କରିବାକୁ ଆମକୁ ଆହ୍ୱାନ ଦେବାରେ ଲାଗିଛି । ଆମର ବିକାଶ ସତ୍ତ୍ୱେ ଆମେ ନିଜକୁ କେତେଦୂର ସଭ୍ୟ, ବିଚାରଶୀଳ ଓ ଦରଦୀ ବୋଲି କହିପାରିବା ?

( ୮ )

ମଣିଷର ମାନସିକ ସ୍ୱଭାବ କ୍ଷେତ୍ରରେ ବୌଦ୍ଧିକ ଓ ଆବେଗିକ ଦୁଇଟି ସ୍ତର ଦେଖିବାକୁ ମିଳିଥାଏ । ବୌଦ୍ଧିକ ସାମର୍ଥ୍ୟ କ୍ଷେତ୍ରରେ ଜ୍ଞାନ, ବୁଦ୍ଧି, ବିଚାରଶୀଳତା, କୌତୁହଳ ପ୍ରବଣତା ଇତ୍ୟାଦି ଦେଖିବାକୁ ମିଳେ ଅଥଚ ଆବେଗିକ ସ୍ତରରେ କାମନା, ବାସନା, ଅଭିଳାଷ, ଅନୁଭବ ଇତ୍ୟାଦି ରହିଥାଏ । ମଣିଷ ଭିତରେ ନାନା କାରଣ ନେଇ ଅଭାବବୋଧ ଓ ଅଭିଳାଷ ସୃଷ୍ଟି ହୁଏ । ଆମର ଲକ୍ଷ୍ୟ ଆମର ଆବେଗିକ ସ୍ତରରୁ ଆସିଥାଏ ଓ ସେହି ଲକ୍ଷ୍ୟକୁ ପୂରଣ କରିବା କ୍ଷେତ୍ରରେ ଆମର ବୁଦ୍ଧି ସାଧନ ଭାବରେ କାର୍ଯ୍ୟ କରିଥାଏ । ଅର୍ଥାତ୍ ଆମର ବୁଦ୍ଧି ବା ଜ୍ଞାନ ଆମର ଆବେଗ ଓ ଇଚ୍ଛାର ବେଳକେ ବାହକ ହୋଇଥାଏ । ମଣିଷ ନିଜର କାମନା ବାସନାକୁ ଚରିତାର୍ଥ କରିବା ପାଇଁ ବୁଦ୍ଧି ପ୍ରୟୋଗ କରିଥାଏ । ଆମର ଆବେଗିକ ସ୍ତରର ଅନୁଭବ ବା ଲକ୍ଷ୍ୟ ଉନ୍ନତ ଓ ରୁଚିସମ୍ପନ୍ନ ହୋଇପାରେ କିମ୍ବା ବେଳକେ ଅସାମାଜିକ ବା ଅନୈତିକ ହୋଇପାରେ । ଜଣେ ଅତ୍ୟନ୍ତ ବୁଦ୍ଧିମାନ ବ୍ୟକ୍ତି ଅନୈତିକ ଓ ଅସାମାଜିକ କାର୍ଯ୍ୟରେ ଲିପ୍ତ ରହିପାରେ ଅଥଚ ଜଣେ ସାଧାରଣ ମଣିଷ ଅତ୍ୟନ୍ତ ଶିଷ୍ଟ, ନିଷ୍କପଟ ହୋଇପାରେ । ବସ୍ତୁତଃ ଉତ୍ତମ ସ୍ୱଭାବ ଓ ବୁଦ୍ଧି

ଭିତରେ ସର୍ବଦା ଯେ ମେଳ ରହିଥାଏ ତାହା କୁହାଯାଇ ପାରିବ ନାହିଁ । ଅବଶ୍ୟ ଜଣେ ଚିନ୍ତାଶୀଳ ବ୍ୟକ୍ତି ଭଲ-ମନ୍ଦ ଓ ନୀତି-ଅନୀତିର ମୂଲ୍ୟାୟନ କ୍ଷେତ୍ରରେ ଅଧିକ ବିଚାରଶୀଳ ହେବାର ସମ୍ଭାବନା ଥିଲେ ମଧ୍ୟ ଯଦି ତାଙ୍କର ଆବେଗିକ ସ୍ତର ଉନ୍ନତ ହୋଇନଥାଏ ତେବେ ନିଜର ଇଚ୍ଛା ପୂରଣ ପାଇଁ ସେ ନିଜ ବୁଦ୍ଧିର ଅପପ୍ରୟୋଗ କରିପାରନ୍ତି । ଉତ୍ତମ ସ୍ୱଭାବ ବା ମହତ୍ତର ଲକ୍ଷ୍ୟ ଅଭାବରେ ବୁଦ୍ଧିର ଅପପ୍ରୟୋଗର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ ।

ମଣିଷର ବୌଦ୍ଧିକ ସ୍ତର ଉନ୍ନତ ହେବା ସହିତ ତାର ପ୍ରବୃତ୍ତିଗତ ସ୍ୱଭାବ ଶୃଙ୍ଖଳିତ ହେବା ଆବଶ୍ୟକ । ମଣିଷର ପ୍ରବୃତ୍ତି ଅଧିକାରାତ୍ମକ (possessive) କିମ୍ବା ସୃଜନାତ୍ମକ (creative) ହୋଇପାରେ । ନିଜର ସ୍ୱାର୍ଥ ସାଧନ କରିବା, ଯେକୌଣସି ପନ୍ଥାରେ ଇଚ୍ଛାକୁ ଚରିତାର୍ଥ କରିବା, ସୁଖ ସମ୍ଭୋଗ ପାଇଁ ପ୍ରୟାସୀ ହେବା ସ୍ୱଭାବ ବ୍ୟକ୍ତ ଚରିତ୍ରରେ ଅନ୍ତର୍ନିହିତ ରହିଥାଏ ଓ ଏହାକୁ ଅଧିକାରାତ୍ମକ ପ୍ରବୃତ୍ତିର ଅନ୍ତର୍ଭୁକ୍ତ କରାଯାଏ । ସମାଜରେ ସେଥିପାଇଁ ସବୁ ସମୟରେ ପ୍ରତିଯୋଗିତା ଲାଗି ରହିବା ଦେଖାଯାଏ । ଆମର ବସ୍ତୁଗତ ସମ୍ବଳ ସୀମିତ ହୋଇଥିବାରୁ ଓ ମଣିଷର ଚାହିଦାର ସୀମା ନ ଥିବାରୁ ବ୍ୟକ୍ତ-ବ୍ୟକ୍ତି ବା ଗୋଷ୍ଠୀ ଗୋଷ୍ଠୀ ଓ ଏପରିକି ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ପ୍ରତିଯୋଗିତା, ଦ୍ୱନ୍ଦ୍ୱ ଓ ବିଦ୍ୱେଷ ସୃଷ୍ଟି ହେଉଥାଏ । ସୁତରାଂ କେତେକ ନିଜର ଅଭିଳାଷ ପୂରଣ କଲାବେଳେ ଅନ୍ୟମାନେ ଏହି ଅଧିକାର ବା ସୁଯୋଗରୁ ବଞ୍ଚିତ ହୋଇଥାନ୍ତି । ପ୍ରତିଯୋଗିତାରୁ ଅନେକାଂଶରେ ପ୍ରଭେଦ ସୃଷ୍ଟି ହୋଇଥାଏ । ବ୍ୟକ୍ତି, ଗୋଷ୍ଠୀ ବା ଏକ ରାଷ୍ଟ୍ର ପାଇଁ ଏହା ପ୍ରଯୁଜ୍ୟ ହୋଇଥାଏ । ଅପରପକ୍ଷରେ ସୃଜନାତ୍ମକ ପ୍ରବୃତ୍ତି ଅଧିକାରାତ୍ମକ ପ୍ରବୃତ୍ତିଠାରୁ ପୃଥକ୍ ଅଟେ । କାରଣ ସୃଜନାତ୍ମକ ପ୍ରବୃତ୍ତି କ୍ଷେତ୍ରରେ ଯେଉଁ ଗୁଣର ଅଧିକାରୀ ହେବାକୁ ବ୍ୟକ୍ତିର ଆକାଙ୍କ୍ଷା ପ୍ରକାଶ ପାଏ ସେଥିରେ କୌଣସି ପ୍ରତିଯୋଗିତାର ଆବଶ୍ୟକତା ନଥାଏ । ଉତ୍ତମ ସ୍ୱାସ୍ଥ୍ୟ, କଳାତ୍ମକ ଦୃଷ୍ଟି, ବୈଜ୍ଞାନିକ ମନୋଭାବ୍, ସଭ୍ୟ ଜୀବନଧାରା ଇତ୍ୟାଦି ସୃଜନାତ୍ମକ ଗୁଣର ଅଧିକାରୀ ହେବା ସମାଜର ସମସ୍ତ ବ୍ୟକ୍ତିଙ୍କ ପାଖରେ ସମ୍ଭବ ହୋଇପାରେ । ଏଥିପାଇଁ କୌଣସି ପ୍ରତିଯୋଗିତାର ଆବଶ୍ୟକତା ପଡ଼େ ନାହିଁ କିମ୍ବା କେହି ଏହାର ଅଧିକାରୀ ହେଲେ ଅନ୍ୟମାନେ ଏଥିରୁ ବଞ୍ଚିତ ହୁଅନ୍ତି ନାହିଁ । ସମାଜରେ ସୃଜନାତ୍ମକ ପ୍ରବୃତ୍ତିର ଅଧିକ ବିକାଶ ହେବା ସଭ୍ୟ ଦୃଷ୍ଟିଭଙ୍ଗୀର ପ୍ରତୀକ ଅଟେ । ଜ୍ଞାନ, ନ୍ୟାୟ, ଶୃଙ୍ଖଳାବୋଧ, ମାର୍ଜିତ ରୁଚି, ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ଇତ୍ୟାଦି ମହତ୍ତର ପ୍ରବୃତ୍ତିଗୁଡ଼ିକର ପ୍ରସାର ପାଇଁ ପ୍ରୟାସ କରିବା ନେଇ ପରିବେଶ ଅଧିକ ଅନୁକୂଳ ରହିବାଦ୍ୱାରା ସମାଜର ସାଂସ୍କୃତିକ ଉତ୍ତୋରଣ ହୋଇଥାଏ ।

ବୈଜ୍ଞାନିକ ଗବେଷଣା ଓ ପ୍ରଯୁକ୍ତିବିଦ୍ୟାର ବହୁଳ ବିନିଯୋଗଦ୍ୱାରା ସମାଜରେ ବ୍ୟକ୍ତିଙ୍କର ପ୍ରାଚୁର୍ଯ୍ୟ ବା ବିଳାସ ନିଶ୍ଚୟ ବଢ଼ିଛି । କିନ୍ତୁ ସମପରିମାଣରେ ସମାଜରେ ମାର୍ଜିତ ରୁଚି, ନୀତିବୋଧ, ସମ୍ବେଦନଶୀଳତା ବୃଦ୍ଧି ଦିଗରେ ତାହା ଯଥେଷ୍ଟ ସହାୟକ ହୋଇ ନାହିଁ । ଅଧିକନ୍ତୁ କେତେକ କ୍ଷେତ୍ରରେ ଜନସମାଜରେ ବିକୃତ ରୁଚିକୁ ବ୍ୟାପକ କରିବାରେ ଯନ୍ତ୍ର ଓ ପ୍ରଯୁକ୍ତି ମୁଖ୍ୟ ଭୂମିକା ନେଉଛି । ଉପଭୋକ୍ତାବାଦୀ ସଂସ୍କୃତିର ବିକାଶ ପାଇଁ ଗଣମାଧ୍ୟମ ଓ ପ୍ରଯୁକ୍ତିଜ୍ଞାନର ଅପ-ପ୍ରୟୋଗ ହେଉଛି । ବ୍ୟକ୍ତି ସ୍ୱଭାବରେ ସୃଜନାତ୍ମକ ପ୍ରବୃତ୍ତି ଜାଗ୍ରତ କରିବା କ୍ଷେତ୍ରରେ ଶିକ୍ଷାନୁଷ୍ଠାନ, ଗଣମାଧ୍ୟମ, ସାମାଜିକ ପରିବେଶ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇପାରୁ ନାହିଁ । ବସ୍ତୁତଃ ଜ୍ଞାନର ବିକାଶ ସହିତ ଚାରିତ୍ରିକ ଶୃଙ୍ଖଳାର ବିକାଶ ନ ହେବାରୁ ଉଭୟ ମଧ୍ୟରେ ସମତାଳ ରହିପାରୁ ନାହିଁ । ଆମର ବୁଦ୍ଧି, ଜ୍ଞାନ, ବିଜ୍ଞାନ ଆମର ଆବେଗିକ-ଅଧିକାରାତ୍ମକ-ପ୍ରବୃତ୍ତିକୁ ଚରିତାର୍ଥ କରିବା ଦିଗରେ ସହାୟକ ହେଉଛି କିନ୍ତୁ ଏସବୁକୁ ଉନ୍ନତ ଓ ରୁଚିସଂପନ୍ନ କରିବାରେ ବଳିଷ୍ଠ ଭୂମିକା ନେଇପାରୁ ନାହିଁ ।

ଏହି ପୃଷ୍ଠଭୂମିରେ ଜ୍ଞାନକୁ ସମାଜର ହିତ ଦିଗରେ ପ୍ରୟୋଗ କରିବାପାଇଁ ପ୍ରୟାସର ଯଥେଷ୍ଟ ଆବଶ୍ୟକତା ରହିଛି । ଜ୍ଞାନକୁ ବିଳାସ ବା ଶୋଷଣର ମାଧ୍ୟମ ଭାବରେ ନ ନେଇ, ସାମାଜିକ କଲ୍ୟାଣର ସାଧନ ଭାବରେ ବିନିଯୋଗ କରିବା ବିଚାରଶୀଳ ଜୀବନର ଆଭିମୁଖ୍ୟ ହେବା ଦରକାର । ବିଚାରହୀନ ଭାବରେ ଜ୍ଞାନ ବା ବୈଜ୍ଞାନିକ କୌଶଳର ପ୍ରୟୋଗ କଲେ ଯେଉଁ କୁପରିଣତି ସୃଷ୍ଟି ହେବ ତାହାର ଶିକାର ସମସ୍ତେ ହେବେ । ମଣିଷ ସଂପ୍ରତି ଯେଉଁ ଜ୍ଞାନ, ପ୍ରକୃତିକୁ ନିୟନ୍ତ୍ରଣ କରିବା ନେଇ ସାମର୍ଥ୍ୟ, ଆନ୍ତର୍ଜାତିକ ଘଟଣା ନେଇ ସଚେତନ ହେବାର ପରିବେଶ ଇତ୍ୟାଦି ଲାଭ କରିବାକୁ ସକ୍ଷମ ହୋଇଛି ସେ କ୍ଷେତ୍ରରେ ବିଚାରଶୀଳ ଭାବେ କେତେକ ମହତ୍ତର ଲକ୍ଷ୍ୟପ୍ରତି ସଚେତନତା ସୃଷ୍ଟି କରିବାପାଇଁ ପ୍ରୟାସର ଆବଶ୍ୟକତା ରହିଛି । ସାଂପ୍ରତିକ ସ୍ଥିତିରେ ବିଚାରଶୀଳତା ପ୍ରୟୋଗର ଯଥାର୍ଥତା ଅଧିକ ମନେହୁଏ । କାରଣ ସଂପ୍ରତି ମଣିଷ ଯେଉଁ ଜ୍ଞାନ ଓ କୌଶଳର ଅଧିକାରୀ ହୋଇଛି ତାହାର ମନ୍ଦ ବିନିଯୋଗ ହେଲେ ସଭ୍ୟତା ଧ୍ୱଂସମୁଖୀ ହେବାର ସମ୍ଭାବନା ରହିଛି । ବିଜ୍ଞାନ ଓ ପ୍ରଯୁକ୍ତିଜ୍ଞାନର ପ୍ରୟୋଗଦ୍ୱାରା ସଭ୍ୟତାର ରୂପରେଖ ବଦଳିପାରେ ଅଥଚ ଅପପ୍ରୟୋଗ ପାଇଁ ମଣିଷକୁ ବହୁମୂଲ୍ୟ ଦେବାକୁ ପଡ଼ିପାରେ । ସେ କ୍ଷେତ୍ରରେ ମାନବିକ ସ୍ୱଭାବକୁ ସୃଜନାତ୍ମକ ଆବେଗ ଦିଗରେ ବିନିଯୋଗ କରିବା ନେଇ ସଚେତନ ପଦକ୍ଷେପ ନେବାର ଗୁରୁତ୍ୱ ଅଧିକ ମନେହୁଏ । ଏହି ପୃଷ୍ଠଭୂମିରେ କେତେକ ସର୍ବନିମ୍ନ ଲକ୍ଷ୍ୟ ଏଠାରେ ଆଲୋଚନା କରାଯାଇପାରେ । ଯେକୌଣସି ରାଜନୈତିକ ବ୍ୟବସ୍ଥାକୁ ଗ୍ରହଣ କରିଥିବା ରାଷ୍ଟ୍ର ତାର ନାଗରିକଙ୍କ ଭିତରେ ଏହି ଲକ୍ଷ୍ୟକୁ କିପରି ବ୍ୟାପକ କରାଇପାରିବ ସେପାଇଁ ପ୍ରତ୍ୟେକ ସ୍ତରରେ ଆଲୋଚନାର ମଧ୍ୟ ଗୁରୁତ୍ୱ ରହିଛି ।

ପ୍ରଥମତଃ ବ୍ୟକ୍ତିର ଅଧିକାରାତ୍ମକ ପ୍ରବୃତ୍ତିକୁ ନିୟନ୍ତ୍ରଣ କରି ସୃଜନାତ୍ମକ ପ୍ରବୃତ୍ତିର ବିକାଶ ଘଟାଇବାରେ ଦେଶର ଶିକ୍ଷା, ଗଣମାଧ୍ୟମ, ସାମାଜିକ ପରିବେଶର ମହତ୍ତ୍ୱ ଗୁରୁତ୍ୱପୂର୍ଣ୍ଣ । ପ୍ରତ୍ୟେକ ବ୍ୟକ୍ତି କିପରି ଅଧିକରୁ ଅଧିକ ବୃହତ୍ତର ମାନବ ସମାଜ ପ୍ରତି ଉତ୍ତରଦାୟୀ ରହିବ ସେନେଇ ତାର ଆବେଗକୁ ପ୍ରଭାବିତ କରାଯିବା ଦରକାର । ବ୍ୟକ୍ତି ଭିତରେ ଥିବା ସ୍ୱାର୍ଥପରତା ଓ ଆତ୍ମକେନ୍ଦ୍ରିକ ଭାବନା କିପରି ସମ୍ବେଦନଶୀଳତା ଓ ସମ୍ପ୍ରୀତିରେ ରୂପାନ୍ତରିତ ହୋଇପାରିବ ସେପାଇଁ ପ୍ରୟାସ ଆବଶ୍ୟକ । ମଣିଷ ଭିତରର ଆବେଗ ଓ ପ୍ରବୃତ୍ତିକୁ ଉପଯୁକ୍ତ ଶିକ୍ଷା ଓ ଅନୁକୂଳ ସାମାଜିକ ପରିବେଶଦ୍ୱାରା ସୃଜନାତ୍ମକ ଭାବରେ ପ୍ରଭାବିତ କରାଯାଇପାରେ ଅଥଚ ପ୍ରତିକୂଳ ପ୍ରଭାବରେ ସେହି ଆବେଗ ହିଂସାତ୍ମକ, ସ୍ୱାର୍ଥକେନ୍ଦ୍ରିକ ଲକ୍ଷ୍ୟରେ ପ୍ରଭାବିତ ମଧ୍ୟ ହୋଇପାରେ । ସୁତରାଂ ନୈତିକ ଜୀବନାଦର୍ଶ, ମାନବିକ ସମ୍ପ୍ରୀତି ଓ ସମାଜପ୍ରତି ଉତ୍ତରଦାୟିତ୍ୱବୋଧ ଇତ୍ୟାଦି ମହତ୍ତର ଭାବନା ସୃଷ୍ଟି ଦିଗରେ ପ୍ରୟାସ କରାଗଲେ ଆମର ଜ୍ଞାନ ଓ ସାମର୍ଥ୍ୟ ମଣିଷଜାତିର ହିତସାଧନ ଦିଗରେ ବିନିଯୋଗ ହୋଇପାରିବ । ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ନିହିତ ସାମର୍ଥ୍ୟର ସମୁଚିତ ବିକାଶ ପାଇଁ ରାଷ୍ଟ୍ର ଉତ୍ତରଦାୟୀ ରହିବା ଆବଶ୍ୟକ । ଏତଦ୍‌ବ୍ୟତୀତ ଉପଭୋକ୍ତାବାଦୀ ଅପସଂସ୍କୃତି କିପରି ସମାଜର ଅହିତ ସାଧନ କରୁଛି ସେନେଇ ସଚେତନତା ବୃଦ୍ଧି ଦରକାର । ପୁନଶ୍ଚ ସାମାଜିକ ଓ ଆର୍ଥିକ ବୈଷମ୍ୟ ସୃଷ୍ଟି ଦିଗରେ ଯେଉଁ ଯେଉଁ ବ୍ୟବସ୍ଥା ସହାୟକ ହେଉଛି ତାହାର ଦୂରୀକରଣ ମଧ୍ୟ ହେବା ଉଚିତ । ସମାଜରେ ବୈଷମ୍ୟ ବୃଦ୍ଧି ସୁସ୍ଥ ମାନବିକ ସମ୍ବନ୍ଧର ପରିପନ୍ଥୀ । ଏହି ପୃଷ୍ଠଭୂମିରେ କେତେକ ପ୍ରଯୁକ୍ତିବିଦ୍ୟାର ପୁନଃମୂଲ୍ୟାୟନ ଆବଶ୍ୟକ, କାରଣ କେତେକ କ୍ଷେତ୍ରରେ ଏହା ଗୁରୁତର ବୈଷମ୍ୟ ସୃଷ୍ଟି ଦିଗରେ ସହାୟକ ହେଉଛି ।

ଏତଦ୍‌ବ୍ୟତୀତ ସମଗ୍ର ମଣିଷଜାତିକୁ ଏକ ଏକକ ସତ୍ତା ଭାବରେ ଗ୍ରହଣ କରିବା ସଭ୍ୟ ଜୀବନଧାରାର ଅଙ୍ଗ ହେବା ଆବଶ୍ୟକ । ଯେଉଁ ଆଦର୍ଶ, ବିଚାର, ପଦକ୍ଷେପ ଇତ୍ୟାଦି ମାନବିକ ଏକତ୍ୱକୁ ବିରୋଧ କରିଥାଏ କିମ୍ବା ମଣିଷ ମଣିଷ ଭିତରେ ପ୍ରଭେଦ ଓ ପାର୍ଥକ୍ୟକୁ ମୂଳକରି ଦେଖିଥାଏ ତାହା ଦୂର ହେବା ଦରକାର । ସେହିପରି ଆଗାମୀ ବଂଶଧରମାନଙ୍କ ପାଇଁ ବିତସ୍ପୃହ ରହିବା ଯଥାର୍ଥ ମନେହୁଏ ନାହିଁ । ଆମର ଜ୍ଞାନ, ବିଜ୍ଞାନ ଓ ପ୍ରଯୁକ୍ତି ଯେପରି ଆଗାମୀ ପୀଢ଼ୀ ପାଇଁ ବିପଦଜନକ ପରିବେଶ ସୃଷ୍ଟି କରିବ ନାହିଁ ସେପ୍ରତି ମଧ୍ୟ ସଚେତନତା ରହିବା ଆବଶ୍ୟକ । ମଣିଷଜାତିର ସ୍ଥାୟୀତ୍ୱ ପ୍ରତି ଯାହାକିଛି ବିପଦଜନକ ତାହା ଦୂର କରିବା ନୈତିକ ଦାୟିତ୍ୱ ହେବା ବିଧେୟ ।

ମୋଟଉପରେ ଜ୍ଞାନ ମାନବିକ ଶ୍ରେୟ ଓ ସମ୍ପ୍ରୀତି ପାଇଁ ଉଦ୍ଦିଷ୍ଟ ହୋଇ ରହିବା ହେଉଛି ଯଥାର୍ଥ ବିଚାରଶୀଳତା ଅଥବା ଜ୍ଞାନକୁ ଧ୍ୱଂସସାଧନ ଦିଗରେ

ପ୍ରୟୋଗ କରିବା ହେଉଛି ବିଘ୍ନରହୀନତା । ଆରିଷ୍ଟଟଲ ମଣିଷକୁ ବିଘ୍ନରଶୀଳ ପ୍ରାଣୀ ବୋଲି କହିଥିଲେ, କିନ୍ତୁ ବିଘ୍ନରଶୀଳତାକୁ ଏକ ଗୁଣାତ୍ମକ ଅର୍ଥରେ ଦେଖିଲେ ଏହା ସବୁ ମଣିଷଙ୍କ ଭିତରେ ଯେ ସମାନ ନୁହେଁ ଏହା ନିଃସନ୍ଦେହରେ କୁହାଯାଇ ପାରେ । ବରଂ ମଣିଷକୁ ବିଘ୍ନରଶୀଳ କରିବାରେ ଶିକ୍ଷା, ସମାଜ, ଗଣମାଧ୍ୟମ ଇତ୍ୟାଦିର ଭୂମିକା ଗୁରୁତ୍ୱପୂର୍ଣ୍ଣ । ବିଘ୍ନରଶୀଳତା ଏକ ସାଂସ୍କୃତିକ ମୂଲ୍ୟବୋଧ, ଏହା ବ୍ୟକ୍ତିର ସହଜାତ ସ୍ୱଭାବ ନୁହେଁ । ବ୍ୟକ୍ତି ଭିତରେ ସ୍ନେହ, ମମତ୍ୱବୋଧ, ଉନ୍ନତ ରୁଚି, ଦରଦୀ ଭାବ ଇତ୍ୟାଦି ଗୁଣର ବିକାଶ କରାଇବାରେ ସାମାଜିକ ପରିବେଶର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ବସ୍ତୁତଃ ବିଘ୍ନରଶୀଳତାକୁ ଏକ ସାଧନ ଭାବେ ମହତ୍ତର ଲକ୍ଷ୍ୟ ପୂରଣ ପାଇଁ ଗ୍ରହଣ କରାଗଲେ ମାନବଜାତିର ଗୁଣାତ୍ମକ ପ୍ରଗତି ଯେ ସମ୍ଭବ ହେବ ଏହା କୁହାଯାଇପାରେ । ଏହା ଏକ ସାଧନ ଭାବରେ ଆମର ସକଳ କ୍ଷୟଶୀଳ ଓ ମାନବତାବିରୋଧୀ ଚିନ୍ତା, ଚେତନା ଓ ବ୍ୟବସ୍ଥାକୁ ଦୂର କରିବାରେ ସମର୍ଥ ହୋଇପାରିବ । ସେହିପରି ଏହା ମଧ୍ୟ ଲକ୍ଷ୍ୟ ଭାବରେ ଜୀବନର ଉତ୍କର୍ଷ ବିଧାନଗୁଡ଼ିକୁ ସ୍ଥିର କରିବାରେ ସମର୍ଥ ହେବ । ଜୀବନର ଶ୍ରେୟ ନିରୂପଣ କ୍ଷେତ୍ରରେ ଏହା ସର୍ବଶ୍ରେଷ୍ଠ ମାନଦଣ୍ଡ ହୋଇପାରିବ ।

ସମାଜରେ ଯେତେ ଅଧିକ ବ୍ୟକ୍ତି ବିଘ୍ନରଶୀଳତାର ପ୍ରାଧାନ୍ୟକୁ ଦୈନନ୍ଦିନ ବ୍ୟାପାରରେ ତଥା ସାମାଜିକ ଶ୍ରେୟ ହାସଲ କ୍ଷେତ୍ରରେ ବିନିଯୋଗ କରିବେ ସମାଜ ସେତିକି ଉନ୍ନତ ହେବ । ଅଥଚ ବିଘ୍ନରଶୀଳ ଜୀବନଧାରା ପ୍ରତି ଉଦାସୀନ ରହିବା ବା ଏହାର ମୂଲ୍ୟଚୟ ପ୍ରତି ସ୍ପର୍ଶକାତରଶୂନ୍ୟ ହେବା ସମାଜର ସାଂସ୍କୃତିକ ଉତ୍ତୋରଣର ପରିପନ୍ଥୀ ଅଟେ । ଭୌତିକ ବିକାଶ ସହିତ ନୈତିକ ବିକାଶ ତଥା ବୃହତ୍ତର ସମାଜ ପ୍ରତି ଅଙ୍ଗୀକାରବୋଧ ସେହି ମୂଲ୍ୟଚୟର ସର୍ବନିମ୍ନ ଆଦର୍ଶ କହିଲେ ଅତ୍ୟୁକ୍ତି ହେବ ନାହିଁ ।

( ୯ )

ଜ୍ଞାନ, ନୈତିକତା ଓ ସାମାଜିକ ଶ୍ରେୟର ମୂଲ୍ୟାୟନ କ୍ଷେତ୍ରରେ ହେଉ ଅଥବା ବ୍ୟକ୍ତିର ଆବେଗିକ ଅନୁଭବ ବା ପ୍ରବୃତ୍ତିର ଭଲ-ମନ୍ଦ ବିଘ୍ନର କ୍ଷେତ୍ରରେ ହେଉ ବିଘ୍ନରଶୀଳତା ହିଁ ନିର୍ଭରଶୀଳ ମାନଦଣ୍ଡ ଯୋଗାଇଥାଏ । କିନ୍ତୁ ବିଘ୍ନରଶୀଳତା ଜନିତ ହେତୁବାଦ ବିରୁଦ୍ଧରେ କେତେକ ସାଧାରଣ ଅଭିଯୋଗ କରାଯାଏ ଯାହା ଏହି ପୃଷ୍ଠଭୂମିରେ ବିଘ୍ନର୍ଯ୍ୟ ।

ଜ୍ଞାନ ବା ନୈତିକତା ସମ୍ପର୍କିତ ମତ ବା ସିଦ୍ଧାନ୍ତ ନାନା ବୌଦ୍ଧିକ ଅନୁଶୀଳନ ମଧ୍ୟଦେଇ ସମ୍ଭବ ହୋଇଛି । କିନ୍ତୁ ବହୁ ସମୟରେ ବିଗ୍ରହ ବୁଦ୍ଧି ପରସ୍ପର-ବିରୋଧୀ ସିଦ୍ଧାନ୍ତମାନ ଆଣିଥାଏ । ପ୍ରତ୍ୟେକ ସିଦ୍ଧାନ୍ତ ବା ତତ୍ତ୍ୱ ପାଇଁ ଏହା ଯୁକ୍ତିନିଷ୍ଠ ଆଧାର ଯୋଗାଇଥାଏ । ସୁତରାଂ ଯୁକ୍ତିନିଷ୍ଠ ଆଧାର କ୍ଷେତ୍ରରେ ପରସ୍ପର ବିରୋଧୀ ମତ ରହୁଥିବାରୁ ତର୍କଶୀଳ ଆଧାରର ଊର୍ଦ୍ଧ୍ୱକୁ ଯିବା ଉଚିତ ବୋଲି କେତେକ ମତପୋଷଣ କରିଥାନ୍ତି । କିନ୍ତୁ ଏହି ଯୁକ୍ତି କେତେଦୂର ଗ୍ରହଣଯୋଗ୍ୟ ? ବିଗ୍ରହଶୀଳ ମାନଦଣ୍ଡକୁ ପ୍ରତ୍ୟାଖ୍ୟାନ କରାଗଲେ ଅନ୍ୟ କେଉଁ ମାନଦଣ୍ଡ ଗ୍ରହଣଯୋଗ୍ୟ ହେବ ତାହା ପ୍ରଥମେ ସ୍ଥିରହେବା ଦରକାର । ତର୍କଶୀଳ ଆଧାର କ୍ଷେତ୍ରରେ ଯଦି ପରସ୍ପର ବିରୋଧୀ ସିଦ୍ଧାନ୍ତମାନ ଦେଖିବାକୁ ମିଳେ ତେବେ ସେହି ବିଗ୍ରହଶୀଳ ମାନଦଣ୍ଡରେ ସିଦ୍ଧାନ୍ତ ସକଳକୁ ପର୍ଯ୍ୟାଲୋଚନା କରି ପ୍ରତ୍ୟେକଟିର ଆପେକ୍ଷିକ ଦୋଷତ୍ରୁଟିକୁ ନିର୍ଣ୍ଣୟ କରାଯିବା ସମ୍ଭବ । କୌଣସି ସିଦ୍ଧାନ୍ତର ତାର୍କିକ ସ୍ୱଚ୍ଛତା ବା ସଙ୍ଗତିକୁ ସେହି ଯୁକ୍ତିଶୀଳ ମାନଦଣ୍ଡରେ ହିଁ ମୂଲ୍ୟାୟନ କରାଯିବା ସମ୍ଭବ, ଅଥଚ ବସ୍ତୁନିଷ୍ଠ ଯୁକ୍ତିଶୀଳ ଆଧାରକୁ ପରିହାର କରିବାଦ୍ୱାରା ତାହା ସମ୍ଭବ ହେବ ନାହିଁ । ଜ୍ଞାନର ସୀମା ବା ବୈଧତା ନିରୂପଣ କ୍ଷେତ୍ରରେ ବିଗ୍ରହଶୀଳ ମାନଦଣ୍ଡ ହିଁ ଏକମାତ୍ର ନିର୍ଭରଶୀଳ ଆଧାର ମନେହୁଏ । ଅନ୍ୟ କୌଣସି ନିର୍ଭର-ଯୋଗ୍ୟ ମାନଦଣ୍ଡ ଅଭାବରେ ଯୁକ୍ତଶୀଳ ଆଧାରକୁ ପରିତ୍ୟାଗ କରିବା ସମୀଚୀନ ମନେହୁଏ ନାହିଁ ।

ଅବଶ୍ୟ ଯୁକ୍ତିଶୀଳ ଆଧାରକୁ ସୀମିତ, ସ୍ୱବିରୋଧୀ ଓ କେବଳ ପ୍ରତ୍ୟକ୍ଷ ଆଧାରିତ କହୁଥିବା ସମାଲୋଚକ ଅନ୍ତର୍ବୋଧ (intuition) ବା ସେପରି କିଛି ବ୍ୟକ୍ତିନିଷ୍ଠ ଉପଲବ୍ଧିକୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେଇପାରନ୍ତି । ଅର୍ଥାତ୍ ଅନ୍ତର୍ବୋଧ, ଅଲୌକିକ ଅଭିବ୍ୟକ୍ତି ବା ସେପରି କିଛି ଅନୁଭବକୁ ଏ କ୍ଷେତ୍ରରେ କେହି କେହି ଆଧାର ଭାବରେ ନେଇପାରନ୍ତି । ଏପରିକି କୌଣସି ବ୍ୟକ୍ତିଙ୍କର ଆଧ୍ୟାତ୍ମିକ ଅନୁଭୂତିର ମାନଦଣ୍ଡରେ ତାଙ୍କର କେତେକ ଭାବନାକୁ ଆପ୍ତ-ସିଦ୍ଧ ଭାବରେ ନେବା ମଧ୍ୟ ଦେଖାଯାଏ । ଅନ୍ତର୍ବୋଧ, ପରାନୁଭବ ଇତ୍ୟାଦିର ସମ୍ଭାବନାକୁ ସ୍ୱୀକାର କଲେ ମଧ୍ୟ ଏହା ଯେ ବୌଦ୍ଧିକ ସିଦ୍ଧାନ୍ତ ନିର୍ଣ୍ଣୟ କ୍ଷେତ୍ରରେ ମାନଦଣ୍ଡ ହୋଇପାରିବ ତାହା ଭାବିବା ଯଥାର୍ଥ ମନେହୁଏ ନାହିଁ । କାରଣ ବିଭିନ୍ନ ବ୍ୟକ୍ତି ସେମାନଙ୍କର ଅନ୍ତର୍ବୋଧ ନେଇ ପରସ୍ପର ଅସଂଲଗ୍ନ ସିଦ୍ଧାନ୍ତର ଅବତାରଣା କଲେ ତାହାର ନିର୍ଣ୍ଣୟ ବସ୍ତୁନିଷ୍ଠ ଓ ଯୁକ୍ତିଶୀଳ ଆଧାର ପରିବର୍ତ୍ତେ ସମାହିତ କରିବା ସହଜ ମନେହୁଏ ନାହିଁ । ବରଂ ଧର୍ମମାନଙ୍କର ସିଦ୍ଧାନ୍ତଗୁଡ଼ିକ ଅନ୍ତର୍ବୋଧ ବା ଆଧ୍ୟାତ୍ମିକ ଅନୁଭବ ବୋଲି ଯାହା କୁହାଯାଏ ତାହା ସ୍ୱବିରୋଧୀ ମନେହୁଏ । କଳ୍ପନା ଜ୍ଞାନର କଷଟିରେ ପରୀକ୍ଷିତ ନ ହେଲେ ତାହା ବିଶ୍ୱାସର ସ୍ତରରେ ରହିଯାଏ । କହିବା ନିଷ୍ପ୍ରୟୋଜନ ଯେ ବିଶ୍ୱାସ ଓ ଜ୍ଞାନର ଆଧାର କ୍ଷେତ୍ରରେ ମୌଳିକ ପାର୍ଥକ୍ୟ

ରହିଥାଏ । ପ୍ରତ୍ୟକ୍ଷବାଦକୁ ସକଳଜ୍ଞାନର ଆଧାର କ୍ଷେତ୍ରରେ ନେବା ଯଥାର୍ଥ ନୁହେଁ ବୋଲି ଯାହା କୁହାଯାଏ ସେହି ପୃଷ୍ଠଭୂମିରେ ଏହା କହିବା ସମୀଚୀନ ଯେ ବୈଜ୍ଞାନିକ ଜ୍ଞାନ ପ୍ରଣାଳୀବଦ୍ଧ ଭାବରେ ଗଢ଼ି ଉଠିଥାଏ । ବସ୍ତୁନିଷ୍ଠ ଜ୍ଞାନ କ୍ଷେତ୍ରରେ ବିଚାରଶୀଳତା ବୈଜ୍ଞାନିକ ପ୍ରଣାଳୀକୁ ଅତ୍ୟନ୍ତ ନିର୍ଭରଯୋଗ୍ୟ ବୋଲି ନେଇଥାଏ । ବୈଜ୍ଞାନିକ ବିମର୍ଶ କ୍ଷେତ୍ରରେ କେତେକ ସିଦ୍ଧାନ୍ତ ଯେତିକି ଗୁରୁତ୍ୱପୂର୍ଣ୍ଣ ନୁହେଁ (କାରଣ ଏହା ପରିବର୍ତ୍ତନ ସାପେକ୍ଷ) ଯେଉଁ ପ୍ରଣାଳୀ ମାଧ୍ୟମରେ ଏହାର ଆଧାର ଗଢ଼ି-ଉଠିଥାଏ ତାହାହିଁ ଗୁରୁତ୍ୱପୂର୍ଣ୍ଣ । ବୈଜ୍ଞାନିକ ଜ୍ଞାନର ଆଧାର ପ୍ରତ୍ୟକ୍ଷବାଦ ଉପରେ ଗଢ଼ିଉଠିବା ତ୍ରୁଟିପୂର୍ଣ୍ଣ ନୁହେଁ । ବରଂ ଏକ ପ୍ରଣାଳୀବଦ୍ଧ ପଦ୍ଧତିକୁ ଅସ୍ୱୀକାର କରିବା କୌଣସି ଲକ୍ଷ୍ୟ ହାସଲ କରିପାରେ ନାହିଁ ।

ବିଚାରଶୀଳତା ବା ବୈଜ୍ଞାନିକ ପଦ୍ଧତିକୁ ବସ୍ତୁନିଷ୍ଠ ଜ୍ଞାନ କ୍ଷେତ୍ରରେ ଯେତେ ନିର୍ଭରଶୀଳ ବୋଲି ନିଆଗଲେ ମଧ୍ୟ କେତେକଙ୍କ ମତରେ ଏହା ବି ବିଶ୍ୱାସ ଭାବରେ ଗଢ଼ି ଉଠିଥାଏ । ବୈଜ୍ଞାନିକ ପଦ୍ଧତି, ଆମର ଅସ୍ତିତ୍ୱ, ଏକ ବାହ୍ୟ ଜଗତର ସ୍ଥିତି, ଘଟଣା ପ୍ରବାହର ଉପସ୍ଥିତି ଇତ୍ୟାଦିକୁ ପ୍ରଥମେ ବିଶ୍ୱାସ ଭାବରେ ନ ନେଲେ କୌଣସି ଜ୍ଞାନର ଶୁଭାରମ୍ଭ ହୋଇପାରେ ନାହିଁ । ଅର୍ଥାତ୍ ବୈଜ୍ଞାନିକ ଜ୍ଞାନ ବିଶ୍ୱାସର ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ ନୁହେଁ । କିନ୍ତୁ ବୈଜ୍ଞାନିକ ଜ୍ଞାନ ଜନିତ ବିଶ୍ୱାସ ଓ ରହସ୍ୟବାଦ ଜନିତ ବିଶ୍ୱାସ ମଧ୍ୟରେ ପାର୍ଥକ୍ୟ ବିଦ୍ୟମାନ । ରହସ୍ୟବାଦୀ-ଭାବନା କ୍ଷେତ୍ରରେ ବିଶ୍ୱାସ-ପରିପନ୍ଥୀ ଅନୁଭୂତି ବା ଯୁକ୍ତି ସତ୍ତ୍ୱେ ରହସ୍ୟବାଦୀ ନିଜର ବିଶ୍ୱାସକୁ ପରିହାର କରନ୍ତି ନାହିଁ । ଅଥଚ ବୈଜ୍ଞାନିକ ଜ୍ଞାନ କ୍ଷେତ୍ରରେ ଯଦିବି କୌଣସି ବିଶ୍ୱାସକୁ ଗ୍ରହଣ କରାଯାଏ ତାହାକୁ କେବଳ ଏକ ପ୍ରାଥମିକ ପ୍ରସ୍ତାବ ଭାବରେ ନିଆ-ଯାଇଥାଏ । ବୈଜ୍ଞାନିକ ପଦ୍ଧତି କ୍ଷେତ୍ରରେ ଭିନ୍ନ ପ୍ରକଳ୍ପ ବା ସିଦ୍ଧାନ୍ତର ସମ୍ଭାବନା ନେଇ କୌଣସି ମତକୁ ସନ୍ଦେହ କରାଯାଇପାରେ, ବସ୍ତୁତଃ କୌଣସି ସିଦ୍ଧାନ୍ତକୁ ପୁନଃ ପରୀକ୍ଷା କରାଯାଏ । ଅଥଚ ଧର୍ମୀୟ ବିଶ୍ୱାସ ବା ରହସ୍ୟବାଦୀ ଭାବନା କ୍ଷେତ୍ରରେ କେତେକ ବିଶ୍ୱାସକୁ ଅଲଙ୍ଘନୀୟ ବୋଲି ଗ୍ରହଣ କରିବାର ଦୃଷ୍ଟିଭଙ୍ଗୀ ପ୍ରକାଶ ପାଏ । ଜଣେ ରହସ୍ୟବାଦୀ ବ୍ୟକ୍ତିଙ୍କର ବିଶ୍ୱାସ କେବଳ ବ୍ୟକ୍ତିନିଷ୍ଠ ହୋଇଥାଏ ଓ ସେହି ବିଶ୍ୱାସ ନେଇ ବସ୍ତୁନିଷ୍ଠ ଭିତ୍ତି ନଥାଏ । ବ୍ୟକ୍ତିନିଷ୍ଠ ଭାବନା ସକଳ ପଶ୍ଚାତରେ ବିଭିନ୍ନ ମନସ୍ତାତ୍ତ୍ୱିକ କାରଣ ରହିଥାଏ । ସୁତରାଂ ଏହି ଦୁଇ ସ୍ତରର ବିଶ୍ୱାସ ମଧ୍ୟରେ ଗୁଣାତ୍ମକ ଓ ମୌଳିକ ପାର୍ଥକ୍ୟ ରହିଥିବା ନିଃସନ୍ଦେହରେ କୁହାଯାଇପାରେ ।

ଆମର ଭାବପ୍ରବଣତା, ଉଚ୍ଛ୍ୱାସ, ଆବେଗ, ଅନୁରାଗ, ଅନୁଭୂତି ଜୀବନର କଳାତ୍ମକ ଓ ସୃଜନାତ୍ମକ ପରିସରଟିକୁ ବ୍ୟାପକ କରିଥାଏ । ଏସବୁକୁ ପରିହାର କରିବାଦ୍ୱାରା ଜୀବନ କୃତ୍ରିମ ଓ ଯାନ୍ତ୍ରିକ ହୋଇପଡ଼େ । ବିଚାରଶୀଳ ଦୃଷ୍ଟି

( ୪ )

ଏସବୁକୁ ପରିତ୍ୟାଗ କରେ ନାହିଁ ବା ଏସବୁର ପ୍ରତିକୂଳ ନୁହେଁ । ବରଂ ଆମର ଅନୁଭବ, ଅନୁରାଗ ବା ଆବେଗକୁ ଉନ୍ନତ ତଥା ରୁଚିପୂର୍ଣ୍ଣ କରିବାରେ ବିଗ୍ଭରଶୀଳତାର ଭୂମିକା ଗୁରୁତ୍ୱପୂର୍ଣ୍ଣ ମନେହୁଏ । ମଣିଷର ଆବେଗ, ଅନୁରାଗ ଉତ୍ତମ ବା ମନ୍ଦ ଲକ୍ଷ୍ୟ ଦିଗରେ ଅଭିପ୍ରେତ ହୋଇପାରେ । ସୁତରାଂ ଆମର ଆବେଗିକ ସ୍ତରକୁ ଉନ୍ନତ ଓ ମାର୍ଜିତ କରିବାରେ ବିଗ୍ଭରବୋଧ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ନେଇଥାଏ । ଜଣେ ସୁସ୍ଥ ବ୍ୟକ୍ତିର ଆବେଗ ସଂସ୍କାରଯୁକ୍ତ, ସଂସ୍କୃତିସମ୍ପନ୍ନ ହେବାବେଳେ ଜଣେ ବିକାରଗ୍ରସ୍ତ ବ୍ୟକ୍ତିର ଉଚ୍ଛ୍ୱାସ ବା ଆବେଗ ନିଷ୍ଠୁର ଓ ସ୍ୱାର୍ଥ କେନ୍ଦ୍ରିକ ହେବା ଅସମ୍ଭବ ନୁହେଁ । ସୁତରାଂ ବିଗ୍ଭରଶୀଳତା ଆମର ଆବେଗିକ ଅନୁଭୂତି ସକଳକୁ ପ୍ରତ୍ୟାଖ୍ୟାନ କରେ ନାହିଁ କିମ୍ବା ସେସବୁର ବିରୋଧୀ ନୁହେଁ, ପରନ୍ତୁ ସେସବୁକୁ ରୁଚିଶୀଳ ଓ ଉନ୍ନତ କରିବା କ୍ଷେତ୍ରରେ ସହାୟକ ହୋଇଥାଏ ।

ହେତୁବାଦକୁ ଏହିପରି ଏକ ବ୍ୟାପକ ପୃଷ୍ଠ ଭୂମିରେ ଗ୍ରହଣ କଲେ ଏହା ଯେ ଜୀବନର ଏକ ମହତ୍ତମ ଉତ୍ପ୍ରେରଣ ଏହା ଅସ୍ୱୀକାର କରି ହେବ ନାହିଁ । ପରନ୍ତୁ ହେତୁବାଦକୁ ଏକ ସଙ୍କୁଚିତ ଅର୍ଥରେ ତାର୍କିକ ଯୁକ୍ତି ଭିତରେ ଆବଦ୍ଧ କରି ତାକୁ ସମାଲୋଚନା କରିବାର ଦୃଷ୍ଟିଭଙ୍ଗୀ ଅତି ସାଧାରଣ ଅଟେ । ଶ୍ରୀ ଚିର ରଞ୍ଜନ ଦାସ ହେତୁବାଦକୁ ଏହିପରି ଏକ ସୀମିତ ଅର୍ଥରେ ନେଇ କହିଛନ୍ତି,

"ହେତୁବାଦର ବଡ଼ ଅସୁବିଧା ହେଉଛି ଯେ ତାହା ମନୁଷ୍ୟର ମସ୍ତିଷ୍କଟାକୁ ହିଁ ଏକମାତ୍ର ଗବାକ୍ଷ ବୋଲି ସ୍ୱୀକାର କରିଛି । ପୃଥିବୀଟାକୁ ଜାଣିବାର ଆହୁରି କେତେ କେତେ ଦ୍ୱାର ମଧ୍ୟ ରହିଛି । × × × ନିଜର ଗାରଟି ମଧ୍ୟରେ ନିଜକୁ କିଳି ରଖି ହେତୁବାଦ ମନୁଷ୍ୟମାନଙ୍କ ସକାଶେ ବହୁ ବିଡ଼ମ୍ବନା ଏବଂ ଅସହିଷ୍ଣୁତାର କାରଣ ହୋଇଛି । × × × ବୁଦ୍ଧି ସେପାଖକୁ ଅନ୍ୟ ଯେଉଁ ଗବାକ୍ଷମାନେ ରହିଛନ୍ତି, ସେଗୁଡ଼ିକ ମଧ୍ୟରେ ପ୍ରବେଶ କରିପାରିଲେ ହେତୁବାଦ ଯେ ପ୍ରକୃତରେ କେତେ ଅଳପ, ସେହି ପ୍ରତ୍ୟୟ ବି ସ୍ପଷ୍ଟ ହୋଇଥାଏ ।"

ଶ୍ରୀ ଦାସ ହେତୁବାଦକୁ ଏକ ସୀମିତ ଓ ନକରାତ୍ମକ ଅର୍ଥରେ ଗ୍ରହଣ କରି ଏହା ବାହାରର ଗବାକ୍ଷ ବିଷୟରେ ସୂଚନା ଦେଇଛନ୍ତି । କିନ୍ତୁ ସେହି ଗବାକ୍ଷଗୁଡ଼ିକର ସଂଜ୍ଞା, ସ୍ୱରୂପ ବିଷୟରେ କୌଣସି ସୂଚନା ଦେଇନାହାନ୍ତି । ଆମର ଆଲୋଚନା ପୃଷ୍ଠଭୂମିରେ ଏହା କହିବା ସମୀଚୀନ ଯେ ହେତୁବାଦ ଜ୍ଞାନ ଲାଭ କ୍ଷେତ୍ରରେ ମୁକ୍ତ ମନ ପୋଷଣ କରି ବସ୍ତୁନିଷ୍ଠ ମାନଦଣ୍ଡ ଆଧାରରେ ଜ୍ଞାନର ଭିତ୍ତିକୁ ନିର୍ଣ୍ଣୟ କରିଥାଏ । ପୁନଶ୍ଚ ସୃଜନଶୀଳ ଆବେଗ, ଅନୁରାଗ ଓ ଉଚ୍ଛ୍ୱାସ ସକଳକୁ ଜୀବନଧର୍ମୀ କରିବାକୁ ଯୁକ୍ତିଶୀଳ ଆଧାର ଯୋଗାଇଥାଏ । ବ୍ୟକ୍ତିର ନୈତିକ ଉତ୍ତରଦାୟିତ୍ୱକୁ ଏକ କ୍ଷୁଦ୍ର

ପରିସରରୁ ବୃହତ୍ତର ସମାଜ ପ୍ରତି ପ୍ରସାରିତ କରିବାରେ ସହାୟକ ହୋଇଥାଏ । ଅତୀନ୍ଦ୍ରିୟ କାଳ୍ପନିକ ଜଗତର ପରିକଳ୍ପନା ପରିବର୍ତ୍ତେ ଐହିକ ଜୀବନକୁ ଗୁରୁତ୍ୱ ଦେଇ ନ୍ୟାୟ, ସମତା, ଅହିଂସା, ବ୍ୟକ୍ତି ମର୍ଯ୍ୟାଦାବୋଧ ଇତ୍ୟାଦି ବୃହତ୍ତର ମୂଲ୍ୟବୋଧକୁ ସାମାଜିକ ଶ୍ରେୟ ଭାବେ ଗ୍ରହଣ କରିଥାଏ । ହେତୁବାଦକୁ ଅପୂର୍ଣ୍ଣ, ଅସମର୍ଥ ଓ ସୀମିତ ଇତ୍ୟାଦି କହି ଅହେତୁକ ଭାବନାକୁ ସମର୍ଥନ କରିବା ଦ୍ୱାରା କୌଣସି ଶ୍ରେୟ ହାସଲ ହୋଇପାରେ କି ? ବୁଦ୍ଧିବାଦ ଜନିତ ବିଗ୍ରହଶୀଳତାର ବୈଗ୍ରହିକ ଓ ବ୍ୟବହାରିକ ସିଦ୍ଧାନ୍ତ ସକଳକୁ ସମାଲୋଚନା କଲାବେଳେ ତାହାଠାରୁ ଉନ୍ନତ ଭାବନା ପ୍ରତି ଦିଗଦର୍ଶନ ଦେଉଥିଲେ ତାହା ସ୍ୱାଗତଯୋଗ୍ୟ ହୋଇପାରନ୍ତା । ଅର୍ଥାତ ବିଗ୍ରହଶୀଳତାର ପ୍ରତ୍ୟାଖ୍ୟାନ ଦ୍ୱାରା କେଉଁ ମହତ୍ତର ଲକ୍ଷ୍ୟ ସାଧନ ହୋଇପାରିବ ତାହାର ସୂଚନା ଦିଆଯିବା ଆବଶ୍ୟକ । ସେହିପରି ସାମାଜିକ ଶ୍ରେୟ ସାଧନ କ୍ଷେତ୍ରରେ କେଉଁ ଜୀବନ ଦର୍ଶନ ମହତ୍ତର ଭୂମିକା ନେଇପାରିବ ତାହାର ସୈଦ୍ଧାନ୍ତିକ ଭିତ୍ତି ଯୋଗାଇପାରିଲେ ବୌଦ୍ଧିକ ଉତ୍ତୋରଣ କ୍ଷେତ୍ରରେ ନୂତନ ଦିଗନ୍ତର ସୂଚନା ମିଳିବ । ପରନ୍ତୁ ଏସବୁର ଅଭାବରେ ବିଗ୍ରହଶୀଳତା ଜ୍ଞାନ ଆହରଣ କ୍ଷେତ୍ରରେ ଯେଉଁ ନିର୍ଭରଯୋଗ୍ୟ ପ୍ରଣାଳୀ, ସାମାଜିକ ଶ୍ରେୟ ସାଧନ କ୍ଷେତ୍ରରେ ଯେଉଁ ମାନବବାଦୀ ଜୀବନ ଦର୍ଶନ ତଥା ବ୍ୟକ୍ତିଗତ ଜୀବନଧାରା କ୍ଷେତ୍ରରେ ଯେଉଁ ରୁଚିଶୀଳ, ଉନ୍ନତ ଓ ଉତ୍ତରଦାୟୀ ଆଭିମୁଖ୍ୟକୁ ଗ୍ରହଣ କରେ ତାହା ଗ୍ରହଣଯୋଗ୍ୟ । ଅଧିକନ୍ତୁ ଐତିହାସିକ ପୃଷ୍ଠଭୂମିରେ ଯଦି ପ୍ରକୃତରେ ବିଗ୍ରହଶୀଳ ଜୀବନଦୃଷ୍ଟି ଓ ଏହାର ଅନ୍ତର୍ନିହିତ ମୂଲ୍ୟଚୟକୁ ସମାଜରେ ବ୍ୟାପକ କରାଯାଇପାରନ୍ତା ତେବେ ଏକ ସୁଖ ସମୃଦ୍ଧମୟ ପୃଥିବୀ ସମ୍ଭବପର ହୁଅନ୍ତା । ବ୍ୟକ୍ତିଗତ ତଥା ବ୍ୟଷ୍ଟିଗତ ଜୀବନର ପ୍ରତ୍ୟେକ ସୋପାନରେ ଏହା ନିର୍ଣ୍ଣାୟକ ଭାବରେ ପ୍ରକାଶିତ ହେଲେ ଆମ ସଂସାର ଆମ କଳ୍ପନାର ସ୍ୱର୍ଗରେ ପରିଣତ ହୋଇପାରନ୍ତା ।

ସହାୟକ ଗ୍ରନ୍ଥ :


୧ । "Science, Non-Socience and the Paranormal" ପୁସ୍ତକର A statement on Scientific Temper ପ୍ରବନ୍ଧ ଦ୍ରଷ୍ଟବ୍ୟ । ପୃଷ୍ଠା-୫ । ସଂପାଦନା ଏଚ୍. ନରସିମ୍ହାୟା, ବାଙ୍ଗାଲୋର ସାଇନସ ଫୋରମ୍, ୧୯୮୭ ।

୨ । ଗୋରାଙ୍କ (ଗୋପରାଜୁ ରାମଚନ୍ଦ୍ର ରାଓ) ପୁସ୍ତକ "Positive Atheism", ପୃଷ୍ଠା ୨ ଦ୍ରଷ୍ଟବ୍ୟ । ପ୍ରକାଶକ : ଆଥେଇଷ୍ଟ ସେଣ୍ଟର, ବିଜୟଓ୍ୱାଡ଼ା, ୧୯୭୮ ।

୩ । ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ପୁସ୍ତକ, "ଶବ୍ଦ ଶତକ" ପୃଷ୍ଠା ୧୦୦ ଦ୍ରଷ୍ଟବ୍ୟ । ସୁହୃତ୍ ପ୍ରକାଶନୀ, ୧୯୯୯ ।




# ମାନବୀକ ଦୃଷ୍ଟି

( ୧ )

ବଞ୍ଚି ରହିବାର ପ୍ରୟାସ ପ୍ରତ୍ୟେକ ପ୍ରାଣୀର ଏକ ସହଜାତ ପ୍ରବୃତ୍ତି । ପ୍ରକୃତିରେ ପ୍ରତ୍ୟେକ ଜୀବ ପରିବେଶ ସହ ସମତାଳ ରକ୍ଷାକରି ବଞ୍ଚି ରହିବାକୁ ପ୍ରୟାସ କରେ । କିନ୍ତୁ ଇତର ଜୀବମାନେ ନିଜର ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୋଇ ବଞ୍ଚି ରହୁଥିବାବେଳେ ମଣିଷ ଆଦିମ କାଳରୁ ପ୍ରକୃତି ଓ ପରିବେଶକୁ ଅବରୋଧ କରି ବଞ୍ଚିବାକୁ ପ୍ରଯତ୍ନ କରିଛି । ଏହି ପ୍ରୟାସ ଯୋଗୁଁ ଚାଳିଶ ପଚାଶ ହଜାର ବର୍ଷ ତଳେ ଜଙ୍ଗଲରେ ବୁଲି ଫଳମୂଳ ଖାଇ ଶିକାର କରି ବଞ୍ଚୁଥିବା ମଣିଷ ସମୟକ୍ରମେ ଏକ ଉନ୍ନତ ସ୍ଥିତିକୁ ଆସିପାରିଛି । ସେ ନିଜର ସ୍ଥିତି ନେଇ ସଚେତନ ହୋଉଛି । ଅନ୍ୟ ସହ ସହଯୋଗୀ ଓ ସମଭାଗୀ ହୋଇ ବଞ୍ଚିବାକୁ ପ୍ରୟାସ କରିଛି । ମଣିଷ ଭିତରେ ଅନ୍ତର୍ନିହିତ ଥିବା ସାମାଜିକ ପ୍ରବୃତ୍ତି ମଧ୍ୟରୁ ଦଳ; ଗ୍ରାମ, ରାଜ୍ୟ, ରାଷ୍ଟ୍ର ପରି ବୃହତ୍ତର ଗୋଷ୍ଠୀ ଉଦ୍‌ଭବ ହୋଇଛି । ସେହିପରି ମଣିଷ ଶାରୀରିକ ସୁସ୍ଥତା ପାଇଁ ଉଦ୍ୟମ କରିଛି, ମାନସିକ ବିକାଶ ଦିଗରେ ପ୍ରୟାସୀ ହୋଇଛି । ଆସ୍ତେ ଆସ୍ତେ ଶିଳ୍ପ, କଳା, ଭାସ୍କର୍ଯ୍ୟ ସୃଷ୍ଟି ହୋଇଛି । ଭାଷା, ଲିପି, ସାହିତ୍ୟ ସୃଷ୍ଟି ଦିଗରେ ପ୍ରଯତ୍ନ କରିଛି । ବୌଦ୍ଧିକ ସ୍ତରରେ ଧର୍ମ, ଦର୍ଶନ, ରାଜନୈତିକ ଚିନ୍ତନ କାଳକ୍ରମେ ଉଦ୍ଭବ ହୋଇଛି । ଜ୍ଞାନ ବିଜ୍ଞାନ ସ୍ତରରେ ନାନା ସିଦ୍ଧାନ୍ତ, ମତବାଦ, ବୌଦ୍ଧିକ ଭାବନା, ତାତ୍ତ୍ୱିକ ବିଚାର ଆସିଛି । ଚିକିତ୍ସା ବିଜ୍ଞାନର ଉନ୍ନତି ହୋଇଛି । ନୂଆ ନୂଆ ପ୍ରଯୁକ୍ତିଜ୍ଞାନ ମଣିଷର ସାମର୍ଥ୍ୟକୁ ବୃଦ୍ଧି କରିଛି । ପରିଣାମତଃ ଗତ ଏକ ଶତାବ୍ଦୀ ମଧ୍ୟରେ ଗମନାଗମନ, କୃଷି ଉତ୍ପାଦନ, ଗଣମାଧ୍ୟମ ଅତି ଉନ୍ନତ ସୋପାନକୁ ଆସିଛି । କ୍ରମ ବର୍ଦ୍ଧିଷ୍ଣୁ ଭାବେ ପ୍ରକୃତିର ବହୁ ରହସ୍ୟକୁ ଉନ୍ମୋଚିତ କରିବାରେ ମଣିଷ ସଫଳ ହେବାରେ ଲାଗିଛି । ବ୍ୟଷ୍ଟି ଜୀବନର ଅଧିକାଂଶ କ୍ଷେତ୍ର ନାନା ପରିବର୍ତ୍ତନ, ବିବର୍ତ୍ତନ ଓ କ୍ରମ ଉତ୍ତୋରଣ ଦେଇ ଗଢ଼ିଉଠିଛି । ସଭ୍ୟତାର ବିକାଶ ପଶ୍ଚାତରେ ବହୁ ଚିତ୍ତାକର୍ଷକ ଓ ଏପରିକି ଲୋମହର୍ଷଣକାରୀ ଘଟଣାମାନ ରହିଛି । ମଣିଷର ଅନୁସନ୍ଧିତ୍ସା ଓ ବୌଦ୍ଧିକ ପ୍ରୟାସ ଆଗକୁ ଆଗକୁ ମାଡ଼ିଚାଲିଛି ଓ ଏହି ଧାରା ଯେ ଅବ୍ୟାହତ ରହିବ ତାହା ଅତୀତର ଅନୁଭୂତିରୁ ସ୍ପଷ୍ଟ ହେଉଛି ।

ଏହି ବିକାଶ ସହିତ ମାନବୀୟ ଦୃଷ୍ଟିର ବିକାଶ ହେଲେ ଜୀବନର ଯଥାର୍ଥ ଉତ୍ତୋରଣ ହେବ । ନହେଲେ ସଭ୍ୟତା ଉତ୍ତୁଙ୍ଗ ଶିଖରକୁ ଯାଇ ମଧ୍ୟ ମାନବିକ ସମ୍ପ୍ରୀତି ଅଭାବରେ ଏହା ବିପର୍ଯ୍ୟୟର ସମ୍ମୁଖୀନ ହେବ । ସୁତରାଂ ମାନବିକ ଜୀବନଦୃଷ୍ଟି ବା ମାନବିକତା ସମ୍ପର୍କରେ କିଞ୍ଚିତ ଆଲୋଚନା କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ଅଟେ ।

( ୬ )

ବୌଦ୍ଧିକ ଉତ୍ତୋରଣ ଧାରାରେ ''ମଣିଷ ହିଁ ସବୁର ମାନଦଣ୍ଡ'' ଏହି ଭାବନା ଅଷ୍ଟାଦଶ ଶତାବ୍ଦୀର ଦାର୍ଶନିକ ଚିନ୍ତନ ଧାରାରେ ସୃଷ୍ଟି ହେବା ଏକ ଉଲ୍ଲେଖନୀୟ ଘଟଣା ଅଟେ । ଏହାନୁଯାୟୀ ମଣିଷ ବ୍ୟବସ୍ଥାର ଦାସ ବା କ୍ରୀଡ଼ନକ ନୁହେଁ ବରଂ ସେ ହେଉଛି ସବୁର ମୂଳତତ୍ତ୍ୱ । ସଭ୍ୟତା, ସଂସ୍କୃତି ଓ କୀର୍ତ୍ତିକରଣୀର କେନ୍ଦ୍ରବିନ୍ଦୁ ହେଉଛି ମଣିଷ । ମଣିଷ ଜୀବନ ନିରର୍ଥକ ନୁହେଁ କିମ୍ବା ସେ ଏକ ବୃହତ୍ତର ସାମାଜିକ ବ୍ୟବସ୍ଥାର ସାଧନ ନୁହେଁ, ବରଂ ସେ ହେଉଛି ସାଧ୍ୟ । ସଭ୍ୟତା ଓ ସଂସ୍କୃତିରେ ଯାହା କିଛି ବିକାଶ ହୋଇଛି ତାହା ହେଉଛି ମଣିଷ ହାତ ଓ ମୁଣ୍ଡର କରାମତି । ସମ୍ମିଳିତ ଓ ନିରବଚ୍ଛିନ୍ନ ପ୍ରୟାସର ପରିଣତି । ଏହି ଭାବନା ବା ଦୃଷ୍ଟିଭଙ୍ଗୀ ସାମନ୍ତବାଦୀ ଚିନ୍ତା ଓ ଚେତନାଠାରୁ ପୃଥକ୍ । କାରଣ ଯୁଗ ଯୁଗର ସାମନ୍ତବାଦୀ ବ୍ୟବସ୍ଥାରେ ଈଶ୍ୱର ଓ ରାଜାଙ୍କର ପ୍ରାଧାନ୍ୟକୁ ଗୁରୁତ୍ୱ ଦିଆଯାଉଥିଲା । ସକଳ ପ୍ରଗତିର ଆଧାର ଥିଲେ ରାଜା, ସବୁ କିଛି ବିଧାନର ଉତ୍ସ ଥିଲେ ଭଗବାନ । ବ୍ୟକ୍ତିର ଜୀବନ ଥିଲା ଅତ୍ୟନ୍ତ ନ୍ୟୂନ । ଏକ ସତରଞ୍ଜି ପଟିରେ ସେ ଏକ ଗୋଟି ମାତ୍ର, ତାହାକୁ ଯେପରି ଚଳାଯାଇପାରେ । ଏହି ମାନସିକତାରେ ପରିବର୍ତ୍ତନ ହେବା ଏକ ଉଲ୍ଲେଖନୀୟ ଘଟଣା । ଏହି ପରିବର୍ତ୍ତନକୁ ଏକ ସାଦୃଶ୍ୟମୂଳକ ବ୍ୟାଖ୍ୟାଦ୍ୱାରା ପ୍ରକାଶ କରାଯାଇପାରେ । ଟଲେମିଙ୍କ ପ୍ରକଳ୍ପକୁ ଓଲଟାଇ ଦେଇ କୋପରନିକସ ଯେପରି ଏକ ଜଗତଭାବନା ଦେଲେ ଯେଉଁଥିରେ ପୃଥିବୀ ପରିବର୍ତ୍ତେ ସୌର ମଣ୍ଡଳରେ ସୂର୍ଯ୍ୟଙ୍କୁ କେନ୍ଦ୍ର ଭାବରେ ନିଆଗଲା । ସେହିପରି ଆଧୁନିକ ଭାବଧାରାରେ ଈଶ୍ୱର ବା ଶାସକ ପରିବର୍ତ୍ତେ ମଣିଷ ହିଁ ସକଳ ବିକାଶ ଓ ପ୍ରଗତିର କେନ୍ଦ୍ରବିନ୍ଦୁ ହେଲା । ଏହି ଦାର୍ଶନିକ ପ୍ରତୀତି ସମସାମୟିକ ସମାଜର ବିଭିନ୍ନ ବୌଦ୍ଧିକ ଭାବଧାରାରେ ଆଲୋଡ଼ନ ସୃଷ୍ଟି କଲା । ଏହି ଭାବନାକୁ ଆଧାର କରି ବ୍ୟକ୍ତିର ଅଧିକାରର ପ୍ରଶ୍ନ ଉଠିଲା । ରାଜତନ୍ତ୍ର, ସାମନ୍ତବାଦ, ଏକଛତ୍ରବାଦ ତଥା ଔପନିବେଶବାଦ ବିରୁଦ୍ଧରେ ସ୍ୱର ଗୁଞ୍ଜରି ଉଠିଲା ।

ମୋଟ ଉପରେ କହିଲେ ସାମାଜିକ ଚେତନାର ବିକାଶଧାରାରେ ମାନବବାଦୀ ଆଲୋଡ଼ନ ମଧ୍ୟଦେଇ ନାଗରିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ,

ସମତା ଇତ୍ୟାଦିର ଭବନା ଆସିବା ଏକ ଐତିହାସିକ ସତ୍ୟ ଅଟେ । ସବୁ ମଣିଷ ସମାନ, ସମସ୍ତଙ୍କର ନାଗରିକ ଅଧିକାର ସମାନ ହେବା ଆବଶ୍ୟକ, ସମାଜରେ ସକଳ ବ୍ୟକ୍ତି ସମାନ ସୁବିଧା ସୁଯୋଗ ଲଭ କରିବା ଉଚିତ ଓ ଆଇନ ଦୃଷ୍ଟିରେ ସମସ୍ତେ ସମାନ ହେବା ଦରକାର ଏହିସବୁ ଭବନା ସମାଜରେ ଆଧୁନିକ ଯୁଗରେ ହିଁ ଆସିଛି । ରାଜନୈତିକ ଆନ୍ଦୋଳନ ମଧ୍ୟଦେଇ ଗଣତନ୍ତ୍ରର ଭବନା ଉଦ୍ଭବ ହୋଇଛି । ଅର୍ଥନୈତିକ ସମତାକୁ ଗୁରୁତ୍ୱ ଦେଇ ସମାଜବାଦୀ ଆନ୍ଦୋଳନ ପୃଥିବୀରେ ସୃଷ୍ଟି ହୋଇଛି । ଗଣତନ୍ତ୍ର ବ୍ୟକ୍ତିମାନଙ୍କ ମଧ୍ୟରେ ସମତା, ସ୍ୱାଧୀନତା ଓ ଅଧିକାରର ଭବନା ଯେପରି ସୃଷ୍ଟି କରିଛି ସମାଜବାଦୀ ଆନ୍ଦୋଳନ ଏକ ଶୋଷଣହୀନ ସାମ୍ୟ ସମାଜର ରୂପରେଖ ଦେଇଛି । ଏହି ସବୁ ଆଦର୍ଶଚୟ ମାନବବାଦୀ ଭବଧାରାକୁ ପୁଷ୍ଟ କରିଛି ।

ଯେଉଁ ବ୍ୟବସ୍ଥା ମଣିଷ ମଣିଷ ଭିତରେ ପାର୍ଥକ୍ୟ ବଢ଼ାଏ, ପାଚେରୀ ଛିଡ଼ା କରାଏ ତାହା ମାନବବାଦୀ ଦୃଷ୍ଟିକୋଣର ପରିପନ୍ଥୀ । ଅତୀତର ସାମନ୍ତବାଦୀ ବ୍ୟବସ୍ଥା ମଣିଷ ମଣିଷ ଭିତରେ ପାର୍ଥକ୍ୟକୁ ଗୁରୁତ୍ୱ ଦେଇଛି । ବୈଷମ୍ୟକୁ ସ୍ୱୀକୃତି ଦେବାକୁ ରାଜନୀତି, ଅର୍ଥନୀତି, ଧର୍ମ, ସଂସ୍କୃତି ତତ୍ପର ହୋଇଛନ୍ତି । ପରିଣାମତଃ ଶାସକ-ଶାସିତ, ପ୍ରଭୁ-ଦାସ, ବ୍ରାହ୍ମଣ-ଶୂଦ୍ରର ପାର୍ଥକ୍ୟ ବିଭିନ୍ନ ସମାଜରେ ସୃଷ୍ଟି କରାଯାଇଛି । ଅବଶ୍ୟ ପ୍ରାଚୀନ ସଭ୍ୟତାରେ ସମତାର ଭବନା ଯେ ନ ଥିଲ ଏହା କହିବା ହୁଏତ ସମୀଚୀନ ମନେ ନ ହୋଇପାରେ । କାରଣ ଆଧୁନିକ ଗଣତନ୍ତ୍ର ଉତ୍ପତ୍ତିର ବହୁ ପୂର୍ବରୁ ଗ୍ରୀସ୍‌ରେ ଗଣତାନ୍ତ୍ରିକ ସମାଜ ରହିବା କିମ୍ବା ପ୍ରାଚୀନ ଭରତୀୟ ଗ୍ରାମୀଣ ସଭ୍ୟତାରେ ପ୍ରତ୍ୟକ୍ଷ ଗଣତନ୍ତ୍ର ରହିଥିବା ବିଷୟ କେହି ଦର୍ଶାଇ ପାରନ୍ତି । ଏପରିକି ତୃତୀୟ ବିଶ୍ୱର ଗଣତନ୍ତ୍ର ଯେପରି ଦୁର୍ବଳ ଭିତ୍ତି ଉପରେ ପର୍ଯ୍ୟବସିତ ତାହା ତୁଳନାରେ ପ୍ରାଚୀନ ପ୍ରତ୍ୟକ୍ଷ ଗଣତନ୍ତ୍ର ଯେ ସୈଦ୍ଧାନ୍ତିକ ଦୃଷ୍ଟିରୁ ଉନ୍ନତ ଏହା କୁହାଯାଇପାରେ । ସେହିପରି ଆଧୁନିକ ଶିଳ୍ପ ସଭ୍ୟତାର ବିକାଶ ପୂର୍ବରୁ ସମାଜରେ ଏକ ପ୍ରକାରର ଆର୍ଥିକ ସମତା ରହିଥିବା ବିଷୟ ମଧ୍ୟ କୁହାଯାଏ । ବରଂ ଆଧୁନିକ ପ୍ରଯୁକ୍ତିବିଦ୍ୟା ସାମ୍ପ୍ରତିକ ଯୁଗରେ ସମାଜରେ ଆର୍ଥିକ ବୈଷମ୍ୟକୁ ଗୁଣିତ କରିବାରେ ଲଗିଛି । ବ୍ୟକ୍ତି-ବ୍ୟକ୍ତି ମଧ୍ୟରେ, ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ, ସହର-ଗ୍ରାମ ଭିତରେ ତଥା ଶ୍ରମିକଶ୍ରେଣୀ ଓ ମାଲିକଶ୍ରେଣୀ ମଧ୍ୟରେ ଆର୍ଥିକ ବୈଷମ୍ୟ ଅତି ବ୍ୟାପକ ହେବାରେ ଲଗିଛି । ସୁତରାଂ ସମତାର ଭବନା ଆଧୁନିକ ଯୁଗରେ ଅଧିକ ଆହ୍ୱାନର ଯେ ସମ୍ମୁଖୀନ ହୋଇଛି ଏହା କୁହାଯାଇପାରେ ।

ପ୍ରାଚୀନ ସମାଜରେ ଆଧୁନିକ ଯୁଗର ଗଣତନ୍ତ୍ର ଶାସନ ପ୍ରଚଳିତ ଥିବା ବିବାଦୀୟ ମନେହୁଏ । ଯଦିବି ତଥ୍ୟ ଦୃଷ୍ଟିରୁ ଗଣତାନ୍ତ୍ରିକ ଶାସନ ଥିବା ବିଷୟକୁ ସ୍ୱୀକାର କରାଯାଏ ତଥାପି ଆଧୁନିକ ଜୀବନଧାରାରେ ଗଣତାନ୍ତ୍ରିକ ବ୍ୟବସ୍ଥାକୁ

ଯେପରି ଏକ ବୃହତ୍ତର ପୃଷ୍ଠଭୂମିରେ ଏକ ଆଦର୍ଶ ଭବେ ନିଆଯାଉଛି ତାହା ଗୁରୁତ୍ୱପୂର୍ଣ୍ଣ ଅଟେ । ଆଧୁନିକ ଗଣତାନ୍ତ୍ରିକ ବ୍ୟବସ୍ଥା ଏକ ଗଣତାନ୍ତ୍ରିକ ଜୀବନଧାରା ଓ ବିଶେଷତଃ କେତେକ ମୌଳିକ ମୂଲ୍ୟବୋଧର ଆଧାର ଉପରେ ଗଢ଼ିଉଠିବା ଦେଖାଯାଏ । ସାମାଜିକ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ, ସ୍ୱାଧୀନ ବିଗ୍ରହ ବ୍ୟବସ୍ଥା, ନାଗରିକ ଅଧିକାର ଇତ୍ୟାଦିକୁ ଗଣତନ୍ତ୍ରର ମୂଳାଦର୍ଶ ଭବରେ ନିଆଯାଏ । ଏହିସବୁ ମୂଲ୍ୟଚୟ ବୌଦ୍ଧିକ ବିକାଶଧାରାରେ ନାନା ପରିବର୍ତ୍ତନ ମଧ୍ୟ ଦେଇ ଆସିଥିବା ଦେଖାଯାଏ ।

ଆଧୁନିକ ଶିଳ୍ପ ସଭ୍ୟତା ଓ ପ୍ରଯୁକ୍ତିବିଦ୍ୟା ଯୋଗୁଁ ଆର୍ଥିକ ବୈଷମ୍ୟ ବୃଦ୍ଧି ପାଇବା ଅନସ୍ୱୀକାର୍ଯ୍ୟ । ଏକ ପାରମ୍ପରିକ କୃଷିଭିତ୍ତିକ ସମାଜରେ ଆର୍ଥିକ ବୈଷମ୍ୟ ଉତ୍କଟ ହେବା ସମ୍ଭବ ନୁହେଁ । ପରନ୍ତୁ ଶିଳ୍ପ ବିପ୍ଳବ ପରବର୍ତ୍ତୀ ଯୁଗରେ ଯେପରି ପ୍ରଚୁର ଉତ୍ପାଦନ ହେଲା ସେ କ୍ଷେତ୍ରରେ ଆର୍ଥିକ ସ୍ଥିତିରେ ଏକ ଅସନ୍ତୁଳନ ଆସିବା ଦେଖାଯାଏ । ଯେଉଁଠି ବୈଜ୍ଞାନିକ ଜ୍ଞାନ କୌଶଳ ଓ ପ୍ରଯୁକ୍ତିକୁ ସଫଳ ଭବରେ ପ୍ରୟୋଗ କରାଗଲା ସେଠାରେ ଆଶାତୀତ ଭବରେ ଉତ୍ପାଦନ ବଢ଼ିଲା, ନାନା ନୂଆ ସାମଗ୍ରୀମାନ ତିଆରି ହେଲା । ଏପରିକି ଏକ ଉପଭୋକ୍ତାବାଦୀ ସଂସ୍କୃତିର ମଧ୍ୟ ବିକାଶ ହେଲା । ପରିଣାମତଃ ସମାଜରେ ଆର୍ଥିକ ବୈଷମ୍ୟ ତୀବ୍ର ହୋଇଉଠିଲା । ଯେଉଁ ରାଷ୍ଟ୍ର ସମୂହ ଆଧୁନିକ ପ୍ରଯୁକ୍ତିଜ୍ଞାନ ପ୍ରୟୋଗରେ ବିଶେଷ ସମର୍ଥ ହେଲେ ନାହିଁ ସେସବୁ ରାଷ୍ଟ୍ରର ଅର୍ଥନୀତି ଅନୁନ୍ନତ ରହିଲା । ଆଧୁନିକ ପ୍ରଯୁକ୍ତିଜ୍ଞାନର ପ୍ରୟୋଗ ମାନଦଣ୍ଡରେ ରାଷ୍ଟ୍ର ସମୂହ ଉନ୍ନତ ବା ବିକାଶଶୀଳ ଭବରେ ପରିଚିତ ହେଲେ । ଏହି ଅସନ୍ତୁଳିତ ଆର୍ଥିକ ସ୍ଥିତିରେ ବୈଷମ୍ୟ ବା ଶୋଷଣ ରହିବା ଘଟଣାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । କିନ୍ତୁ ସାଂପ୍ରତିକ ସ୍ଥିତିରେ ଆଧୁନିକ ଜ୍ଞାନ କୌଶଳକୁ ପରିହାର କରି ପ୍ରାଚୀନ କାରିଗରୀ କୌଶଳକୁ ଗ୍ରହଣ କରି ଉତ୍ପାଦନକୁ ସୀମିତ ରଖିବା ଏକ ଅବାସ୍ତବ ପ୍ରକଳ୍ପ ମନେହୁଏ । ବରଂ ଆଧୁନିକ ବ୍ୟବସ୍ଥାକୁ କିପରି ଶୋଷଣହୀନ କରିହେବ ସେ କ୍ଷେତ୍ରରେ ଗଭୀର ଅନୁଶୀଳନ ଆବଶ୍ୟକ । କ୍ରମବର୍ଦ୍ଧିଷ୍ଣୁ ଲୋକସଂଖ୍ୟାର ଆବଶ୍ୟକତା ପୂରଣ ପାଇଁ ବୈଜ୍ଞାନିକ ଜ୍ଞାନ କୌଶଳ ଓ ପ୍ରଯୁକ୍ତିବିଦ୍ୟାର ଉପଯୋଗିତା ଅନସ୍ୱୀକାର୍ଯ୍ୟ । ଏହାଛଡ଼ା ସାଂପ୍ରତିକ ସମୟରେ ମିଳି ପାରୁଥିବା ସୁବିଧା ସୁଯୋଗକୁ ପରିହାର କରିବା ମଧ୍ୟ ସମ୍ଭବ ନୁହେଁ । ପରନ୍ତୁ ସେସବୁକୁ କିପରି ସମସ୍ତ ଜନଗଣଙ୍କ ପାଖକୁ ପ୍ରସାରିତ କରିହେବ ଅର୍ଥାତ ଆଧୁନିକ ଯୁଗର ଉପଲବ୍ଧ ସୁଖ ସୁବିଧାର ସୁଯୋଗ ସମାଜର ସବୁ ବ୍ୟକ୍ତି ପାଇପାରିବେ ଏଥିପାଇଁ ଯଥେଷ୍ଟ ଧ୍ୟାନ ଦେବାକୁ ପଡ଼ିବ । ସାଂପ୍ରତିକ ବ୍ୟବସ୍ଥାରେ ଶୋଷଣ ଯେପରି ଅନାୟାସରେ ରହୁଛି ବା ବିକାଶଶୀଳ ରାଷ୍ଟ୍ର ସମୂହରେ ଜନସଂଖ୍ୟାର ଏକ ପ୍ରମୁଖ ଅଂଶ ଆଧୁନିକ ସୁବିଧା ସୁଯୋଗରୁ ବଞ୍ଚିତ ହୋଇଛନ୍ତି ସେପାଇଁ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ଗୁରୁତ୍ୱ ଦେବାକୁ ହେବ ।

ପ୍ରତ୍ୟେକ ସମାଜରେ ଓ ପ୍ରତି ଯୁଗରେ ଆର୍ଥିକ ବିଷମତା ନାନା ଭାବରେ ରହିଆସିଛି । ଶିଳ୍ପବିପ୍ଳବ ପରେ ପରିବର୍ତ୍ତିତ ସ୍ଥିତି ଯୋଗୁଁ ଏହି ବୈଷମ୍ୟ ଅଧିକ ହେଉଛି, ଅଥଚ ଶିଳ୍ପବିପ୍ଳବ ପୂର୍ବବର୍ତ୍ତୀ ସ୍ଥିତିରେ ଦାରିଦ୍ର୍ୟ ଜନିତ ପରିସ୍ଥିତି ଉତ୍କଟ ଥିଲେ ବି ଶୋଷଣ ନେଇ ପରିବେଶ ଅତି ସୀମିତ ରହିଥିଲା । ସୁତରାଂ ଆଧୁନିକ ଶିଳ୍ପବିପ୍ଳବ ପରେ ପ୍ରାଚୁର୍ଯ୍ୟ ଯେପରି ବଢ଼ିଲା, ଶୋଷଣ ମଧ୍ୟ ସେହିପରି ବୃଦ୍ଧି ପାଇଲା । ହେଲେ ଏକ ଶୋଷଣହୀନ ବ୍ୟବସ୍ଥା କିପରି ଉଦ୍ଭବ ହେବ ଓ ସମାଜର ସମସ୍ତ ବ୍ୟକ୍ତି ଆଧୁନିକ ଜୀବନର ଉପଲବ୍ଧ ସୁଖ ସୁବିଧା ପାଇବାକୁ ସମର୍ଥ ହେବେ ସେଥିପାଇଁ ସୁଚିନ୍ତିତ ପଦକ୍ଷେପ ନେବାକୁ ପ୍ରଯତ୍ନର ସମସ୍ତ ଆବଶ୍ୟକତା ରହିଛି ।

ଏହି ସମସ୍ତ ବାସ୍ତବତାକୁ ସ୍ୱୀକାର କଲେ ମଧ୍ୟ ଆଧୁନିକ ଜୀବନ ପ୍ରବାହରେ ସମତା, ନ୍ୟାୟ, ବ୍ୟକ୍ତିର ଅଧିକାର ନେଇ ଯେଉଁ ବୌଦ୍ଧିକ ଆନ୍ଦୋଳନଟି ଆସିଛି ତାହା ଗୁରୁତ୍ୱପୂର୍ଣ୍ଣ । ଅନ୍ତତଃ ଏସବୁ ମୂଲ୍ୟବୋଧ ଯେ ସଭ୍ୟ ଜୀବନଧାରାର ଅବିଚ୍ଛିନ୍ନ ଅଙ୍ଗ ଏହି ମାନସିକତା ସମାଜରେ ସୃଷ୍ଟି ହୋଇଛି । କହିବା ନିଷ୍ପ୍ରୟୋଜନ ଯେ ଏହି ମାନସିକତା ମାନବବାଦୀ ଦୃଷ୍ଟିକୋଣ ସହ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ।

ଅଧିକନ୍ତୁ ବ୍ୟକ୍ତି ସ୍ୱାଧୀନତା ବା ସମତାର ଭାବନା ଭାରତୀୟ ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ ବୋଲି କେତେକ କହିଥାନ୍ତି । ଭାରତୀୟ ଧର୍ମ ଦର୍ଶନରେ ପ୍ରତ୍ୟେକ ବ୍ୟକ୍ତିର ଏକ ଅବିନାଶୀ ଆତ୍ମା ଥିବା କୁହାଯାଏ । ତାତ୍ତ୍ୱିକ ସ୍ତରରେ ଆତ୍ମାମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ନଥାଏ । ଆତ୍ମା ଏକ ଆଧ୍ୟାତ୍ମିକ ସତ୍ତାକୁ ବୁଝାଏ ଓ ଏହା ମୁକ୍ତି ଲାଭ କରିବା ପର୍ଯ୍ୟନ୍ତ ଜୀବନ-ମୃତ୍ୟୁ ଚକ୍ରରେ ଏହାର କର୍ମଫଳ ନେଇ ଘୁରୁଥାଏ । ପ୍ରତ୍ୟେକ ଜୀବ ଭିତରେ ଅବିନାଶୀ ଆତ୍ମାର ଅସ୍ତିତ୍ୱ ଥିବାରୁ ଜୀବ-ଜୀବ ମଧ୍ୟରେ ପାର୍ଥକ୍ୟ ଅବାସ୍ତବ ଅଟେ । ପ୍ରତ୍ୟେକ ବ୍ୟକ୍ତିର ସାଂପ୍ରତିକ ସ୍ଥିତି ପୂର୍ବ-ନିର୍ଦ୍ଦିଷ୍ଟ ଭାବରେ ସ୍ଥିରୀକୃତ ବୋଲି କୁହାଯାଏ । ଆତ୍ମା ପ୍ରତୀତି ପୃଷ୍ଠଭୂମିରେ ସ୍ୱାଧୀନତା ବ୍ୟକ୍ତିର ଅନ୍ତର୍ନିହିତ ସ୍ୱରୂପ ବୋଲି ବିଶ୍ୱାସ କରାଯାଏ ।

ବ୍ୟବହାରିକ ଓ ତାତ୍ତ୍ୱିକ ସ୍ତରରେ ସମତା ବା ସ୍ୱାଧୀନତାର ଭାବନାକୁ ଯେତେ ପ୍ରାଚୀନ ବୋଲି ମନେ କରାଗଲେ ସୁଦ୍ଧା ଏକ ସାମଗ୍ରୀକ ଜୀବନ ଦର୍ଶନର ପରିଣାମ ଭାବରେ ଏହି ଭାବନାର ଯେ ଅଭ୍ୟୁଦୟ ହୋଇଛି ଏହା ଅସ୍ୱୀକାର କରିହେବ ନାହିଁ । ଭାରତୀୟ ଧର୍ମଦର୍ଶନ ଆତ୍ମାର ଅମରତ୍ୱ ପରିପ୍ରେକ୍ଷୀରେ ବ୍ୟକ୍ତିର ସ୍ୱତନ୍ତ୍ରତାକୁ ସ୍ୱୀକାର କରେ ବୋଲି କୁହାଗଲେ ସୁଦ୍ଧା ବାସ୍ତବପକ୍ଷେ ଭାରତୀୟ ଜୀବନଧାରାରେ ବୈଷମ୍ୟର ଯେଉଁ ନିଛକ ଚିତ୍ରଟି ଦେଖିବାକୁ ମିଳେ ତାହା ସମସ୍ତ ମାନବିକ ସମ୍ବେଦନଶୀଳତାକୁ ଆଘାତ ଦେଇଥାଏ । ଭାରତୀୟ ସାମାଜିକ ବ୍ୟବସ୍ଥା ଯୁଗ ଯୁଗ ଧରି ଉଚ୍ଚ ନୀଚ ଓ ଜାତିଭିତ୍ତିକ ହୋଇ ରହିବା ଏବଂ ମାନବିକ

ମର୍ଯ୍ୟାଦା ତଥା ଅଧିକାରକୁ କୌଣସି ମୂଲ୍ୟ ନଦେବା ସବୁଠାରୁ ବଡ଼ ବିଡ଼ମ୍ବନା କହିବାକୁ ହେବ । ବରଂ ଆତ୍ମା, ଜନ୍ମାନ୍ତରବାଦ ଓ କର୍ମଫଳ ଭାବନା ଆଧାରରେ ସାମାଜିକ ବୈଷମ୍ୟକୁ ଓ ଜାତିପ୍ରଥାକୁ ସ୍ୱୀକୃତି ଦିଆଯିବା ଭାରତୀୟ ଧର୍ମଧାରଣାର ନକରାତ୍ମକ ଦିଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ଧର୍ମଭାବନା, ସମତା ବା ସାମାଜିକ ନ୍ୟାୟ ପ୍ରତିଷ୍ଠା ପରିବର୍ତ୍ତେ ଏହାର ପ୍ରତିକୂଳ ହେବା ଏକ ଐତିହାସିକ ସତ୍ୟ ଅଟେ ।

( ୩ )

କ୍ରମବିକାଶ ଧାରାରେ ମଣିଷ ପ୍ରଭୁତ ଜ୍ଞାନ ଓ ସାମର୍ଥ୍ୟର ଯେ ଅଧିକାରୀ ହୋଇଛି ଏହା ନିଃସନ୍ଦେହ । କିନ୍ତୁ ଜ୍ଞାନର ସଦୁପଯୋଗ ନହେଲେ ମଣିଷ ଜାତିର ପ୍ରଭୁତ କ୍ଷତି ସାଧନ ମଧ୍ୟ ସମ୍ଭବ । ସୁତରାଂ ଜ୍ଞାନର ବିକାଶ ସହିତ ବିବେକ ଓ ନୈତିକ ଦାୟିତ୍ୱବୋଧର ମଧ୍ୟ ବିକାଶ ହେବା ଆବଶ୍ୟକ । ବିଚାର ବୁଦ୍ଧି ସହ ସମ୍ବେଦନଶୀଳତାର ସମନ୍ୱୟଦ୍ୱାରା ସାମାଜିକ ଶ୍ରେୟ ସମ୍ଭବ ହୋଇଥାଏ । ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆସିଥାଏ । ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ନୈତିକ ଅଙ୍ଗୀକାରବୋଧ ବ୍ୟକ୍ତି ଓ ବ୍ୟଷ୍ଟି ଜୀବନକୁ ମହନୀୟ ଓ ସୁନ୍ଦର କରିଥାଏ । ଏହି ଭାବାବେଗ ସୃଷ୍ଟି ଦିଗରେ କଳା, ସାହିତ୍ୟ, ସଙ୍ଗୀତ, ଶିକ୍ଷା ଇତ୍ୟାଦି ସୃଜନାତ୍ମକ ଅଭିବ୍ୟକ୍ତି ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇପାରିବ । ମଣିଷ ମଣିଷ ଭିତରେ ହୃଦୟର ବନ୍ଧନକୁ ନିବିଡ଼ କରିବା ଦିଗରେ ଏହି ସୃଜନଶୀଳ ଆବେଗ ଅଭିନିବେଶ ଯୋଗାଇ ପାରିବ । ମାନବିକ ଦୃଷ୍ଟି ଏକ ମହତ୍ତର ଜୀବନପାଇଁ ଉଦ୍ଦିଷ୍ଟ । ମାନବିକତାର ମୂର୍ଚ୍ଛନାଦ୍ୱାରା ବ୍ୟକ୍ତିର ଜୀବନ, ଦର୍ଶନ, ଆଚାର, ଭାବନା ସମ୍ବନ୍ଧ ଆଦିକୁ ପରିଚାଳିତ କରିବା ହିଁ ହେଉଛି ମାନବିକ ଶ୍ରେୟ । ମାନବିକ ଦୃଷ୍ଟି ସେହି ଶ୍ରେୟର ସନ୍ଧାନ କରେ ଓ ମଣିଷ ଜାତିକୁ ଅଭିନ୍ନ ବୋଲି ଗ୍ରହଣ କରେ ।

ଯେଉଁ ବିଚାରବୋଧ ବୃହତ୍ତର ସମାଜରେ ସମନ୍ୱୟ ସୃଷ୍ଟି କରେ ତାହା ମାନବିକ ଦୃଷ୍ଟିର ଅନୁକୂଳ । ଯେଉଁ ବିଚାର, ଦର୍ଶନ ବା ଭାବଧାରା ଜାତି, ଧର୍ମ, ଲିଙ୍ଗ ଜାତୀୟତା ଆଦିକୁ ମାନଦଣ୍ଡ ନେଇ ମଣିଷକୁ ମଣିଷଠାରୁ ଦୂରେଇ ଦିଏ, ମଣିଷ ମଣିଷ ଭିତରେ ପ୍ରାଚୀର ସୃଷ୍ଟି କରେ କିମ୍ବା ବିଦ୍ୱେଷର ବୀଜ ବପନ କରେ ତାହା ମାନବିକ ଦୃଷ୍ଟିର ପରିପନ୍ଥୀ । ଶୁଦ୍ଧ ମାନବିକ ଏକତ୍ୱ ମଧ୍ୟରେ ଜାତି, ଧର୍ମ, ଭାଷା, ଜାତୀୟତା ଇତ୍ୟାଦି କେବଳ ଔପଚାରିକ ପାର୍ଥକ୍ୟ ମାତ୍ର । ଯେତେକ ସଭ୍ୟତା ଓ ତାହା ସାଂସ୍କୃତିକ ଭାବଧାରାରେ ମଣିଷ ମଣିଷ ଭିତରେ ଯେପରି ବିଭେଦ ଓ ତାରତମ୍ୟକୁ ସ୍ୱୀକୃତି ଦିଆଯାଏ ତାହା ମାନବିକ ଦୃଷ୍ଟିର ପ୍ରତିକୂଳ । ନାରୀ-ପୁରୁଷ

ଜନିତ ଲିଙ୍ଗଭେଦ, ଜନ୍ମଗତ ଜାତିଭେଦ, ବର୍ଣ୍ଣବୈଷମ୍ୟ ଜନିତ ବର୍ଣ୍ଣଭେଦ କେତେକ ସମାଜରେ ବଦ୍ଧମୂଳ ଅଟେ । ଏସବୁ ବିଭଜନକାରୀ ଭବନାକୁ ମାନବିକ ଦୃଷ୍ଟି ବିରୋଧ କରିଥାଏ । ମଣିଷର ସୁଖ ଦୁଃଖ, ହସ କାନ୍ଦ, ଆବେଗ ଅନୁରାଗ, ସ୍ନେହ ବନ୍ଧନ ଭିତରେ ଯେ ପ୍ରଭେଦ ନାହିଁ ଏହା ସ୍ୱଚ୍ଛ ମାନବିକତା ଅଟେ । ସେହିପରି ମଣିଷ ଜାତିର ଇତିହାସରେ ଯୁଦ୍ଧ, ବିଭୀଷିକା, ହିଂସା ଓ ରକ୍ତପାତ ଘଟିବା ଆମ ବିଗ୍ଭରହୀନ ତଥା ଅମାନବିକ ଦୃଷ୍ଟିର ପରିଚୟ ଦେଇଥାଏ । ମଣିଷ ସମାଜରେ ସମସ୍ୟା, ଦ୍ୱନ୍ଦ୍ୱ ରହିବା ଅସମ୍ଭବ ନୁହେଁ । କିନ୍ତୁ ଏହି ସମସ୍ୟା ଓ ଦ୍ୱନ୍ଦ୍ୱକୁ ସମାଧାନ କରିବା କ୍ଷେତ୍ରରେ ବିଗ୍ଭରଶୀଳତା ତଥା ସମ୍ବେଦନଶୀଳତା ମାନଦଣ୍ଡ ହେଲେ ସମସ୍ୟାର ସମାଧାନ ସହଜ ହୋଇଥାଏ । ସକଳ ପାର୍ଥକ୍ୟ, ପ୍ରଭେଦ ବା ବିଚ୍ଛିନ୍ନ ମନୋଭବକୁ ପରିହାର କରି ମଣିଷ ଜାତିକୁ ଏକ ଅବିଚ୍ଛିନ୍ନ ସତ୍ତା ଭବରେ ଗ୍ରହଣ କରିବାଦ୍ୱାରା ଜଣଙ୍କର ଦୃଷ୍ଟି ସମ୍ବେଦନଶୀଳ ହୋଇଥାଏ । ବ୍ୟକ୍ତି ମାନସିକତାରେ ଏହି ଦୃଷ୍ଟିଭଙ୍ଗୀ ସୃଷ୍ଟି କରିବାରେ ଏକ ଅନୁକୂଳ ବାତାବରଣର ଭୂମିକା କିପରି ଗୁରୁତ୍ୱପୂର୍ଣ୍ଣ ତାହା ଯଥାର୍ଥରେ ବିଗ୍ଭର୍ଯ୍ୟ ।

ଆଧୁନିକ ଯୁଗରେ ବିଜ୍ଞାନ ଓ ପ୍ରଯୁକ୍ତିଜ୍ଞାନ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ରହିଥିବା ପ୍ରାକୃତିକ ବା ବାହ୍ୟିକ ପାର୍ଥକ୍ୟକୁ ଦୂର କରିବାରେ ଅନେକାଂଶରେ ସମର୍ଥ ହେଲଣି । ପୃଥିବୀର କୌଣସି କୋଣର ବ୍ୟକ୍ତି କର୍ମସଂସ୍ଥାନ ପାଇଁ ଅନ୍ୟ ଯେକୌଣସି ଅଞ୍ଚଳକୁ ଯାଇପାରୁଛି, ଗୋଟିଏ ଅଞ୍ଚଳର କାରିଗରୀ କୌଶଳ ଅନ୍ୟ ଅଞ୍ଚଳରେ ଉପଲବ୍ଧ ହୋଇପାରୁଛି କୌଣସି ଭଷାର ମୌଳିକ କୃତି ଅନ୍ୟ ଭଷାରେ ଅନୁଦିତ ହୋଇପାରୁଛି, ଗୋଟିଏ କୋଣର ବ୍ୟକ୍ତି ଭଷା, ସଂସ୍କୃତିର ଭିନ୍ନତା ଥିବା ଅନ୍ୟ ଯେକୌଣସି ଅଞ୍ଚଳର ମଣିଷ ସହିତ ଆତ୍ମୀୟତାର ବନ୍ଧନ ଯୋଡ଼ିପାରୁଛି । ଆଧୁନିକ ବିଜ୍ଞାନ ଏକ ଆନ୍ତର୍ଜାତିକ ମାନସିକତା ସୃଷ୍ଟି କରିବାରେ ସହାୟକ ହେଉଛି । କଳାହାଣ୍ଡିର ଦୁର୍ଭିକ୍ଷ ବା ଓଡ଼ିଶାର ବାତ୍ୟାରେ କେଉଁ ସୁଦୂର ଫ୍ରାନ୍ସ ବା ଜର୍ମାନୀର ସାଧାରଣ ମଣିଷ ବ୍ୟଥିତ ହେଉଛି, ଇଥିଓପିଆର ଦୁର୍ଭିକ୍ଷପାଇଁ ଭରତୀୟ ବୁଦ୍ଧିଜୀବୀ ସମବେଦନା ଜଣାଉଛି । ଆମ ସଂସାରରେ ଯାହା କିଛି ମନ୍ଦ ଥିଲେ ବି ମଣିଷ-ମଣିଷ ଭିତରେ ହୃଦୟବତ୍ତା ଯେ ରହିଛି, ଅନ୍ୟର ସୁଖ ଦୁଃଖରେ ସମଭଗୀ ହେବାର ମନ ରହିଛି ତାହାହିଁ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ଏହି ମନୋଭବକୁ ଶୃଙ୍ଖଳିତ ଭବରେ ସାରା ପୃଥିବୀରେ କିପରି ବ୍ୟାପକ କରିହେବ ତାହା ଚିନ୍ତାର ବିଷୟ ।

ପ୍ରଶ୍ନ ଉଠିପାରେ ପୃଥିବୀରୁ ସକଳ ହିଂସା, ବିଦ୍ୱେଷ, ବୈଷମ୍ୟ ସଂପୂର୍ଣ୍ଣ ଦୂର କରିବା ସମ୍ଭବ କି ? ପୃଥିବୀରେ ଶାନ୍ତି, ସମତା, ଅହିଂସା ରହୁ ଏହା ଗ୍ଭହିଁବା ଓ ବାସ୍ତବରେ ସେହିପରି ଏକ ପୃଥିବୀ ହେବା ଭିତରେ ପାର୍ଥକ୍ୟ ରହିଛି । ଉପନିଷଦ ଯୁଗରୁ କେତେକ ଚିନ୍ତାନାୟକ ଆମ ସଂସାରକୁ ହିଂସା-ମୁକ୍ତ କରି ଏକ ଉନ୍ନତ ସମାଜ

ପାଇଁ ସ୍ୱପ୍ନ ଦେଖିଛନ୍ତି । କେତେ କେତେ ମନୀଷୀ ସୁନ୍ଦର ପୃଥିବୀର କଳ୍ପନା ଭିତରେ ଇଉଟୋପିଆର ଚିତ୍ର ମଧ୍ୟ ଦେଇଛନ୍ତି । କିନ୍ତୁ ତଥାପି ମଣିଷ ସମାଜରେ ହିଂସା, ପରଶ୍ରୀକାତରତା, ଅମାନବିକତା, ଶୋଷଣ ଓ ଅତ୍ୟାଚାର ରହିଆସିଛି । ଆଦିମ ଅବସ୍ଥାରେ ମଣିଷ ଭିତରେ ଯେଉଁ ଆଦିମ ପ୍ରବୃତ୍ତି ରହିଥିଲା ଆଜି ଜ୍ଞାନ ବିଜ୍ଞାନ, ସୃଜନାତ୍ମକ ଅଭିବ୍ୟକ୍ତି, ଆନ୍ତରାଷ୍ଟ୍ରୀୟ ଭାବନା କ୍ଷେତ୍ରରେ ଏତେ ଉନ୍ନତି ହୋଇଥିଲେ ମଧ୍ୟ ମଣିଷର ପ୍ରବୃତ୍ତି ସେହିପରି ରହିଛି । ମଣିଷ ଭିତରେ ସ୍ନେହ, ମମତା, ଶ୍ରଦ୍ଧା ଯେପରି ରହିଛି, ସ୍ୱାର୍ଥପରତା ଓ ପାଶବିକ ପ୍ରବୃତ୍ତି ସେହିପରି ରହିଛି । ଏହି ପୃଷ୍ଠଭୂମିରେ ମଣିଷର ଦୃଷ୍ଟିଭଙ୍ଗୀରେ ମହତ୍ତର ଓ ଆଧ୍ୟାତ୍ମିକ ପରିବର୍ତ୍ତନ ଆଣିବାକୁ କେତେ କେତେ ମନୀଷୀ ଓ ସନ୍ଥ ଶୁଦ୍ଧ ମାନବିକ ସମ୍ପ୍ରୀତିର ଆବେଗ ନେଇ ପ୍ରୟାସ କରିଛନ୍ତି । ଏପରିକି ମଣିଷ ବର୍ତ୍ତମାନର ମାନସିକ ଚେତନା ସ୍ତରରେ ରହିଥିବା ପର୍ଯ୍ୟନ୍ତ ତାର ସମସ୍ୟା ଓ ସ୍ଥିତିରେ ଯେ ପରିବର୍ତ୍ତନ ହେବ ନାହିଁ, ସୁତରାଂ ମଣିଷକୁ ବିବର୍ତ୍ତନ ପ୍ରକ୍ରିୟାରେ ଅନ୍ୟ ଏକ ରୂପାନ୍ତରିତ ସ୍ଥିତିକୁ ଯିବାକୁ ହେବ ଏହା ମଧ୍ୟ ଜଣେ ମହାନ ଯୋଗୀ ଶୁଣାଇଛନ୍ତି । ତାଙ୍କ ମତରେ ଚେତନା ସ୍ତରରେ ରୂପାନ୍ତର ହେବା ଆବଶ୍ୟକ । ଅର୍ଥାତ୍ ମାନସିକ ଚେତନାର ଊର୍ଦ୍ଧ୍ୱରେ ଥିବା ଏକ ଅତି ମାନସିକ ସ୍ତରକୁ ବିବର୍ତ୍ତିତ ନ ହେଲେ ମଣିଷର ସମସ୍ୟା ସମାଧାନ ହୋଇପାରିବ ନାହିଁ । ଅତି ମାନସିକ ଚେତନାକୁ ବିବର୍ତ୍ତିତ ହେବାକୁ ମାନବିକ ଅଭୀପ୍ସା ଓ ଈଶ୍ୱରୀୟ କରୁଣାର ସମନ୍ୱୟ ଦରକାର । ଏଥିପାଇଁ ସେ କେତେ ରହସ୍ୟମୟ ଯୋଗ, ସାଧନାର ବାଣୀ ଶୁଣାଇଛନ୍ତି । ଏହି ପ୍ରକଳ୍ପର ସମ୍ଭାବନା ଯାହା ହେଉନା କାହିଁକି ମଣିଷର ବର୍ତ୍ତମାନର ସ୍ଥିତିକୁ ସ୍ୱୀକାର କରି ମଧ୍ୟ ଆମ ସଂସାରକୁ କିପରି ଅଧିକ ସୁଖମୟ ଓ ଆମର ସାମାଜିକ ସମ୍ବନ୍ଧକୁ ଶାନ୍ତିପୂର୍ଣ୍ଣ କରିହେବ ତାହା ଅନ୍ୱେଷଣ କରିବା ଆବଶ୍ୟକ । ମଣିଷର ସମସ୍ତ ଆବେଗ, ପ୍ରବୃତ୍ତି ଓ ବାସନା ରହିବ ଓ ସେହିସବୁ ସ୍ୱଭାବ ଭିତରେ ବ୍ୟବସ୍ଥାକୁ କିପରି ଉନ୍ନତ କରିହେବ ଓ ଜନମାନସରେ ଏକ ବିଚାରଶୀଳ ଓ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀକୁ ବ୍ୟାପକ କରାଯାଇ ପାରିବ ତାହା ଚିନ୍ତା କରାଯିବା ଦରକାର ।

ଏହି ପୃଷ୍ଠଭୂମିରେ ଧର୍ମ ଓ ଆଧ୍ୟାତ୍ମିକତାର ପ୍ରେରଣା କେତେଦୂର ସହାୟକ ହେବ ? ଅତୀତରେ ଧର୍ମଚେତନା ବିଭିନ୍ନ ଭୂଖଣ୍ଡରେ ଜନଗଣଙ୍କ ମଧ୍ୟରେ ଏକ ସାଂସ୍କୃତିକ ଆବେଗକୁ ସୁଦୃଢ଼ କରିଛି । ଏକ ନୀତିପୂର୍ଣ୍ଣ ଜୀବନ ପାଇଁ ଧର୍ମ ଓ ଈଶ୍ୱର ବିଶ୍ୱାସରୁ ବ୍ୟକ୍ତିକୁ ନୈତିକ ଅଭିନିବେଶ ମିଳିଛି । ଧର୍ମୀୟ ଜୀବନଦୃଷ୍ଟି ଭିତରେ ଈଶ୍ୱର-ବିଶ୍ୱାସ ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇ ରହିଛି । ଏପରିକି ମଣିଷଜାତିର ଇତିହାସରେ ବହୁ କ୍ରାନ୍ତିକାରୀ ବ୍ୟକ୍ତି ଈଶ୍ୱର ଓ ଧର୍ମ ବିଶ୍ୱାସକୁ ମଣିଷର ଆଧ୍ୟାତ୍ମିକ ଉତ୍ତରଣ କ୍ଷେତ୍ରରେ ପଥପ୍ରଦର୍ଶକ ଭାବେ ନେଇଛନ୍ତି । ଧର୍ମୀୟ ଅଭିନିବେଶଦ୍ୱାରା

ପରିଗ୍ରହିତ ହୋଇ ମାନବିକ ଦରଦର ପରାକାଷ୍ଠା ଦେଖାଇଛନ୍ତି, ସେବାର ମୂର୍ତ୍ତିମନ୍ତ ପ୍ରତୀକ ହୋଇ ଜୀବନ ବଞ୍ଚିଛନ୍ତି । ଧର୍ମକ୍ଷେତ୍ରରେ ଯାହା ସତ୍ୟ, ଈଶ୍ୱର ଭାବନା କ୍ଷେତ୍ରରେ ମଧ୍ୟ ଅନୁରୂପ ଉଦାହରଣ ପାଇବା ଅୟାସସାଧ୍ୟ ନୁହେଁ । ମୋଟ ଉପରେ ଧର୍ମ ଭାବନା ମହତ୍ତର ଶ୍ରେୟ ଦିଗରେ କେତେକ ବ୍ୟକ୍ତିଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିଛି । ମାନବିକ ଶ୍ରେୟ ଓ ସମ୍ପ୍ରୀତି କ୍ଷେତ୍ରରେ ଧର୍ମୀୟ ଅଭିନିବେଶ ସ୍ଥଳ ବିଶେଷରେ ବ୍ୟକ୍ତି ବିଶେଷଙ୍କ ପାଖରେ ରହିବା ଅସମ୍ଭବ ନୁହେଁ । କିନ୍ତୁ ପ୍ରତ୍ୟେକଟି ମହନୀୟ ଲକ୍ଷ୍ୟ ପଶ୍ଚାତରେ ଧର୍ମୀୟ ଅଭିନିବେଶ ନଥାଏ କିମ୍ବା ଧର୍ମୀୟ ଜୀବନଧାରା ପ୍ରତି ଅନୁରକ୍ତ ରହିବା ଏକ ମହତ୍ତର ଜୀବନ ପାଇଁ ଅବଶ୍ୟମ୍ଭାବୀ ମନେହୁଏ ନାହିଁ । ଅର୍ଥାତ୍ ଧର୍ମଚେତନା ଓ ମାନବିକ ଶ୍ରେୟ ମଧ୍ୟରେ କୌଣସି ତର୍କସମ୍ମତ ସମ୍ବନ୍ଧ ସ୍ଥାପନ କରିବା ସମ୍ଭବ ନୁହେଁ । ଯେଉଁ କ୍ଷେତ୍ରରେ ଧର୍ମୀୟ ଭାବାବେଗଦ୍ୱାରା ପରିଗ୍ରହିତ ହୋଇ କେହି କେହି ମାନବିକ ଉତ୍କର୍ଷତାର ପରିଚୟ ଦେଇଛନ୍ତି ସେ କ୍ଷେତ୍ରରେ ଉଭୟ ମଧ୍ୟରେ ଏକ ମନସ୍ତାତ୍ତ୍ୱିକ ସମ୍ବନ୍ଧ ସ୍ଥାପନ କରାଯାଇପାରେ । ଅଧିକନ୍ତୁ ଧର୍ମୀୟ ଆବେଗ ବେଳେବେଳେ ଆନ୍ତର୍ଜାତିକ ମନୋଭାବ କିମ୍ବା ମାନବିକ ଏକତ୍ୱ ସ୍ଥାପନ ଦିଗରେ ଅନ୍ତରାୟ ହୋଇଥାଏ । ଏପରିକି ସମ୍ପ୍ରଦାୟିକ ଭାବନା ଅନେକାଂଶରେ ଧର୍ମଗତ ଆବେଗରୁ ଆସିଥାଏ । ମାନବିକ ଶ୍ରେୟ ଓ ଏକତ୍ୱ ଭାବନା କ୍ଷେତ୍ରରେ ସାଂପ୍ରଦାୟିକତା ଯେ ସବୁଠାରୁ ବଡ଼ ପ୍ରତିବନ୍ଧକ ଏହା ମନେହୁଏ । ଧର୍ମଗତ ପାର୍ଥକ୍ୟ ଆଧାରରେ ଅନ୍ୟ ବିଶ୍ୱାସ, ପରମ୍ପରା, ଉପାସନା ଇତ୍ୟାଦିକୁ ଗ୍ରହଣ କରୁଥିବା ଜନଗଣଙ୍କ ପ୍ରତି ଘୃଣା ବା ବିଦ୍ୱେଷ ପୋଷଣ ସାଂପ୍ରଦାୟିକତାର ମୁଖ୍ୟ ଅର୍ଥ ଅଟେ । ଏହା ଯେ ସଭ୍ୟ ଜୀବନଦୃଷ୍ଟିର ପରିପନ୍ଥୀ ଏହା ନିଃସନ୍ଦେହ ମନେହୁଏ ।

( ୪ )

ମାନବିକ ଦୃଷ୍ଟି ଏକ ସୁଖ ଶାନ୍ତିମୟ ଜୀବନକୁ ଅଗ୍ରାଧିକାର ଦେବା ସ୍ୱାଭାବିକ । ଅବଶ୍ୟ ସୁଖ ସମୃଦ୍ଧି କାମନା କରିବା ଓ ଏହାପାଇଁ ପ୍ରୟାସୀ ହେବା ମଣିଷର ସହଜାତ ଆବେଗ ଅଟେ । ମଣିଷ ସ୍ୱଭାବତଃ ସୁଖ ସନ୍ଧାନୀ । ଆମେ ଯେଉଁ ସଂସାରଟିରେ ରହୁ ସେଠାରେ ଆମ ଅଭିଳଷିତ ପଦାର୍ଥଟି ଯେ ପ୍ରାପ୍ୟ ଏହା ଆମେ ବିଶ୍ୱାସ କରିଥାଏ । ଅବଶ୍ୟ ସବୁ ମଣିଷଙ୍କର ଅଭିଳାଷ ସମାନ ନୁହେଁ, କିନ୍ତୁ ନିଜର ଅଭିଳାଷ ପୂରଣ ପାଇଁ କାମନା ଓ ଅଭିଳଷିତ ଲକ୍ଷ୍ୟ ପୂରଣ ଜନିତ ସମ୍ଭାବ୍ୟ ସୁଖବୋଧର ଅନୁଭବ ସବୁ ମଣିଷ ଭିତରେ ଥାଏ । ସଂସାରରେ ନାନା ମଣିଷ ନାନା ଭାବରେ ସୁଖର ସନ୍ଧାନୀ ହୋଇଥିବା ପରିପ୍ରେକ୍ଷୀରେ ବିଭିନ୍ନ ସଭ୍ୟତାରେ

ଏସବୁ ସହିତ ନାନା ଆଦର୍ଶ, ନୀତିବୋଧକୁ ସଂଶ୍ଳିଷ୍ଟ କରାଯାଇଥାଏ । ଜ୍ଞାନର ଅନୁସନ୍ଧାନ, ନିଃସ୍ୱାର୍ଥପର ସେବା, ସୁଖ ସମ୍ଭୋଗମୟ ଜୀବନ, ଏପରିକି କୃଚ୍ଛ୍ର ସାଧନା ପରି ନାନା କାର୍ଯ୍ୟକୁ ଉତ୍ସର୍ଗୀକୃତ ଭାବରେ ଜୀବନର ଶ୍ରେୟ ଭାବରେ ଗ୍ରହଣ କରିବା ଦେଖାଯାଏ । ବିଭିନ୍ନ ବ୍ୟକ୍ତି ବା ସଭ୍ୟତାରେ ଯେକୌଣସି ଜୀବନଧାରାକୁ ଶ୍ରେୟ ଭାବରେ ଗ୍ରହଣ କରାଯାଉ ନା କାହିଁକି ସୃଜନଶୀଳ ଅଭିବ୍ୟକ୍ତି ଜୀବନର ଏକ ମହନୀୟ ଗୁଣ ଅଟେ । ସୃଜନଶୀଳ ଅଭିବ୍ୟକ୍ତି ଜୀବନଧାରଣ କ୍ଷେତ୍ରରେ ଯେ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଏହାହିଁ ମାନବିକ ଦୃଷ୍ଟିର ଅନ୍ତର୍ନିହିତ ତାତ୍ପର୍ଯ୍ୟ ଅଟେ । ଯେଉଁ ଭାବନା, ଆଶା, କାର୍ଯ୍ୟ ଇତ୍ୟାଦି ସୃଜନଶୀଳତାର ପରିପନ୍ଥୀ ତାହାହିଁ ଏକ ନକାରାତ୍ମକ ଚେତନାର ପରିଚାୟକ ମନେହୁଏ । ଆଜି ସଭ୍ୟତାରେ ଯାହାକିଛି ବିକାଶ ହୋଇଛି ତାହା ପଶ୍ଚାତରେ ମଣିଷର ସୃଜନଶୀଳତା ଯେ ରହିଛି ତାହା ଅସ୍ୱୀକାର କରିହେବ ନାହିଁ । ସାହିତ୍ୟ, ବିଜ୍ଞାନ, ଦର୍ଶନ, କଳା ଇତ୍ୟାଦି ପ୍ରତ୍ୟେକଟି ବୌଦ୍ଧିକ ଉତ୍ତୋଳନ କ୍ଷେତ୍ରରେ କେତେ କେତେ ମନନ, ଚିନ୍ତନ ଓ ସୂକ୍ଷ୍ମ ଅନୁଶୀଳନ ରହିଛି । ଜୀବନକୁ ମହନୀୟ ତଥା ଅର୍ଥପୂର୍ଣ୍ଣ କରିବାରେ ଏହିସବୁ ସୃଜନାତ୍ମକ ଅଭିବ୍ୟକ୍ତି ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ । ମଣିଷର ସୃଜନାତ୍ମକ ସାମର୍ଥ୍ୟ ଭିତରୁ କେତେ କେତେ ନୂତନ ସ୍ୱପ୍ନ ଓ ଅଭିବ୍ୟକ୍ତି ଜନ୍ମ ନେଇଛି ।

ପ୍ରକୃତି ଭିତରେ ନାନା ସମ୍ଭାବନା ରହିଛି । ମଣିଷ ପ୍ରକୃତିର ଦାସ, ପରିବେଶର କ୍ରୀଡ଼ନକ ହୋଇ ବଞ୍ଚିବାକୁ ଶ୍ରେୟ ମଣି ନାହିଁ । ବରଂ ପ୍ରକୃତିର ଅସଂଖ୍ୟ ସମ୍ଭାବନାକୁ ଜୀବନ ପାଇଁ ଉପଯୋଗୀ କରିବାପାଇଁ ଅବିରତ ପ୍ରୟାସ କରିଛି । ନିଜର ବୌଦ୍ଧିକ ଅନ୍ୱେଷଣ ମାଧ୍ୟମରେ ଜୀବନକୁ ସରସ ଓ ସୁଖମୟ କରିବାରେ ପ୍ରକୃତିକୁ ପ୍ରୟୋଗ କରିଛି । ମଣିଷ ଜୀବନର ଅନ୍ତିମ ଲକ୍ଷ୍ୟକୁ ସାର୍ବିକ ଭାବରେ ନିରୂପଣ କରାଯାଇପାରିବ ନାହିଁ । ଜୀବନକୁ ଅର୍ଥପୂର୍ଣ୍ଣ କରିବାରେ କୌଣସି କଳ୍ପିତ ଅତୀନ୍ଦ୍ରିୟ ଶକ୍ତିର ଭୂମିକା ମଧ୍ୟ ନାହିଁ । ଏହା ବରଂ ମଣିଷର ଦୃଷ୍ଟି ଓ ପ୍ରୟାସ ଭିତରେ ନିହିତ । ଆମର ଉଦ୍ଦେଶ୍ୟ, ଲକ୍ଷ୍ୟ, ସାମର୍ଥ୍ୟ ଜରିଆରେ ଆମର ଜୀବନ ହିଁ ଅର୍ଥପୂର୍ଣ୍ଣ ପ୍ରତୀତ ହୋଇଥାଏ । ଆମେ ଯାହା ଚାହୁଁ ବା ଯେଉଁ ପ୍ରକାରର ଜୀବନ ବଞ୍ଚିବାକୁ ପ୍ରୟାସ କରୁ ତାହା ଆମର ପ୍ରୟାସ, ପ୍ରଚେଷ୍ଟା ଓ ଯୋଜନା ମଧ୍ୟଦେଇ ରୂପ ନିଏ । ମଣିଷର ସଚେତନ ପ୍ରୟାସ ଓ ଉଦ୍ୟମ ଜରିଆରେ ସମ୍ଭାବନାମୟ ପ୍ରକୃତିକୁ ମଣିଷ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ବିନିଯୋଗ କରିପାରେ । ଜୀବନରେ ହତାଶା, ନୈରାଶ୍ୟ, ଦୁଃଖ, ପ୍ରତିକୂଳ ଅବସ୍ଥା, ଯନ୍ତ୍ରଣା ଇତ୍ୟାଦି ରହିବା ସ୍ୱାଭାବିକ । କିନ୍ତୁ ତଥାପି ଏହାକୁ ପରିବର୍ତ୍ତନ କରି ଜୀବନକୁ ପ୍ରୀତିମୟ ତଥା ସରସ ସୁନ୍ଦର କରାଯାଇପାରେ । ମଣିଷର ପ୍ରୟାସଦ୍ୱାରା ହିଁ ଏହା ସମ୍ଭବ ହୋଇଥାଏ । ମଣିଷ ପ୍ରକୃତି ଉପରେ ନିଜର କ୍ରମବର୍ଦ୍ଧିଷ୍ଣୁ ନିୟନ୍ତ୍ରଣ ପାଇଁ ଅଧିକରୁ ଅଧିକ ସମର୍ଥ

ହେବାରେ ଲାଗିଛି । ମଣିଷ କେତେ କେତେ କୌଶଳର ସାମର୍ଥ୍ୟ ହାସଲ କରିଛି, ବୁଦ୍ଧିର ବିକାଶ କରାଇଛି । ଏସବୁକୁ ସୁନିର୍ଦ୍ଦିଷ୍ଟ ଭାବରେ ବିନିଯୋଗ କରିବାକୁ ଜୀବନ ପ୍ରତି ଏକ ଯଥାର୍ଥ ଆଭିମୁଖ୍ୟ ଦରକାର । ନିଜର ସମାଜ ଓ ବୃହତ୍ତର ମାନବଜାତି ପ୍ରତି ଏକ ଉତ୍ତରଦାୟୀ ଆଭିମୁଖ୍ୟ ରଖିବା ହିଁ ହେଉଛି ମାନବିକ ଦୃଷ୍ଟି । ଅର୍ଥାତ୍ ଏକ ସୁଖ ଶାନ୍ତିମୟ ପୃଥିବୀର କଳ୍ପନା ପାଇଁ ବ୍ୟକ୍ତିଗତ, ସାମୂହିକ ଓ ସମ୍ମିଳିତ ପ୍ରୟାସ ଆବଶ୍ୟକ । ବ୍ୟକ୍ତିର ଜୀବନ ଅବଧି ସୀମିତ, କିନ୍ତୁ ମାନବଜାତିର ସ୍ଥାୟିତ୍ୱ ଦିଗରେ ବ୍ୟକ୍ତିର ଭୂମିକା ଗୁରୁତ୍ୱପୂର୍ଣ୍ଣ । ବ୍ୟକ୍ତିମାନଙ୍କର କର୍ମକୁଶଳତା, ଦୁଃସାହାସିକ ପଦକ୍ଷେପ ଓ ଉନ୍ନତ ଭାବନା ବୃହତ୍ତର ଗୋଷ୍ଠୀ ଜୀବନରେ ଯେଉଁ ପ୍ରଭାବ ସୃଷ୍ଟି କରିଥାଏ ତାହାର ସମ୍ମିଳିତ ପରିଣାମରୁ ମାନବଜାତିର ଭବିଷ୍ୟତ ରୂପରେଖ ନେଇଥାଏ । ଅତୀତର ବହୁ ବ୍ୟକ୍ତିଙ୍କର ସୃଜନଶୀଳ ଅବଦାନର ପରିଣାମ ହେଉଛି ଆଜିର ସଭ୍ୟତା । ସେହିପରି ଆଜିର ପ୍ରୟାସ, ପ୍ରଚେଷ୍ଟା ଓ ଉଦ୍ୟମର ପରିଣାମ ଆଗାମୀ କାଲିକୁ ରୂପରେଖ ଦେବ । ମଣିଷର ପ୍ରଚେଷ୍ଟା ଓ ସୃଜନଶୀଳ ଅବଦାନଦ୍ୱାରା ହିଁ ମଣିଷର ଭବିଷ୍ୟତ ନିୟନ୍ତ୍ରିତ ।

ଭୀରୁତା, ଭୟ, ଅହେତୁକ ଭାବାବେଗ, ସ୍ୱାର୍ଥକେନ୍ଦ୍ରିକ ଭାବନା ଇତ୍ୟାଦି ବ୍ୟକ୍ତି ସ୍ୱଭାବରେ ରହିଥିଲେ ବି ବୁଦ୍ଧି, ବିବେକ, ବିଚାରବୋଧ ଜରିଆରେ ସେସବୁକୁ ନିୟନ୍ତ୍ରଣ କରିବା ମଣିଷ ପକ୍ଷରେ ସମ୍ଭବ । ଜୀବନର ବାସ୍ତବ ଅନୁଭୂତିର ଆଧାରରେ ମଣିଷ ତାର ବୁଦ୍ଧି ଓ ବିବେକର ବିକାଶ ଘଟାଇଥାଏ । କିନ୍ତୁ ନିଜର ବୁଦ୍ଧି ଓ ବିଚାରଶୀଳ ଦୃଷ୍ଟିକୁ ପ୍ରତ୍ୟାଖ୍ୟାନ କରି ଅବାସ୍ତବ କଳ୍ପନାରେ ସଂପୃକ୍ତ ହେବାର ମାନସିକତା ମଧ୍ୟ ମଣିଷ ସ୍ୱଭାବରେ ନିହିତ । ପରିକଳ୍ପିତ ଭିନ୍ନ ଜଗତ ଓ ଏକ ରହସ୍ୟମୟ ସୃଷ୍ଟିପାଇଁ ମଣିଷ ଭିତରେ ରହିଥିବା ସହଜାତ ଦୁର୍ବଳତାକୁ ପ୍ରତିହତ କରିବାରେ ବିଚାରବୁଦ୍ଧିର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଆମେ ଯେଉଁ ଭୂମିଟିରେ ରହିଛୁ ଓ ଯେଉଁ ଭୂମିଟିକୁ ଆମର ବୁଦ୍ଧି, କୌଶଳ ଓ ହାତର ଛାପରେ ରୂପ ଦେଇଛୁ ତାହା ସହିତ ଆମର ସମ୍ବନ୍ଧ ହିଁ ଆମପାଇଁ ସବୁଠାରୁ ବଡ଼ ଆକର୍ଷଣ । ଏହା ସହିତ ଆମର ଭାଗବତ ଓ ମାନସିକ ବନ୍ଧନକୁ ଅସ୍ୱୀକାର କରି ଏକ ଭିନ୍ନ ଜଗତର ଓ ସୃଷ୍ଟିର କଳ୍ପନାରେ ବିଭୋର ହେବା ମାନବିକ ଦୃଷ୍ଟି ସହ ସମତାଳଯୁକ୍ତ ନୁହେଁ । କେତେକ ଧର୍ମ, ଦର୍ଶନ ଓ ଏପରିକି ସାହିତ୍ୟ ଭିନ୍ନ ଜଗତ ଓ ମରଣୋତର ସୃଷ୍ଟିକୁ ଗୁରୁତ୍ୱ ଦେଇ ମଣିଷର କଳ୍ପନାକୁ ଏକ ଭିନ୍ନ ଆଦର୍ଶ ଦିଗରେ ପରିଚାଳିତ କରିଛନ୍ତି । ଆମ ସଂସାର ଓ ସମ୍ବନ୍ଧ ତୁଚ୍ଛ, ଅଳୀକ, ମାୟା ଓ ଆମର ସୁଖ ସ୍ୱାଚ୍ଛନ୍ଦ୍ୟହୀନ ଓ ନର୍କର ଦ୍ୱାର ବୋଲି କେତେ କେତେ ଭାବନା ସେ ସବୁରେ ବ୍ୟକ୍ତ ହୋଇଛି । ଜୀବନ ଝଞ୍ଜାଳରେ ମ୍ରିୟମାଣ ବ୍ୟକ୍ତିର ମାନସିକତାକୁ ଏସବୁ ବେଳକେ ଭାରି ପ୍ରଭାବିତ କରିଥାଏ । ଏପରିକି କେହି କେହି ଏହି ପ୍ରକାରର ଭାବାବେଗରେ ପରିଚାଳିତ ହୋଇ

ସଂସାରର ସବୁକିଛି ବାସ୍ତବତାକୁ ପ୍ରତ୍ୟାଖ୍ୟାନ କରିବା ମଧ୍ୟ ଦେଖାଯାଏ । ସେହି ଦୃଷ୍ଟି ବା ଜୀବନଧାରାକୁ ଆଧ୍ୟାତ୍ମିକ ଲକ୍ଷ୍ୟ ଭବରେ କେହି ଗ୍ରହଣ କରିପାରନ୍ତି । କିନ୍ତୁ ଏହା ବ୍ୟକ୍ତିଗତ ବିଶ୍ୱାସ ସ୍ତରରେ ସୀମିତ ରହିବା ଆବଶ୍ୟକ । ଆମର ଜୀବନ, ସ୍ୱପ୍ନ, ସୃଜନଶୀଳ ବିକାଶ. ସାମାଜିକ ସମ୍ବନ୍ଧ, ବୃହତ୍ତର ମାନବଜାତି ପାଇଁ ଅଙ୍ଗୀକାରବୋଧ ଇତ୍ୟାଦିକୁ ପ୍ରାଥମିକତା ଦେଇ ଆଧ୍ୟାତ୍ମିକ ସାଧନାରେ ବ୍ରତୀ ହେବାରେ ଅସୁବିଧା ନାହିଁ । କିନ୍ତୁ ଜୀବନ ଓ ସାମାଜିକ ସ୍ଥିତି ପ୍ରତି ଅନୁରାଗହୀନ ହୋଇ ଏକ ଧାର୍ମିକ କଳ୍ପନାରେ ମୃତ୍ୟୁପର ମୁକ୍ତିପାଇଁ କୃଚ୍ଛ୍ର ସାଧନା ବା ସେପରି କିଛି ଔପଗ୍ରରିକତା ପାଳନରେ ବ୍ରତୀ ହୋଇ ରହିବା ମାନବିକ ଦୃଷ୍ଟି ସହିତ ସୁସଂହତ ମନେହୁଏ ନାହିଁ । ମାନବିକ ଅନୁରାଗ, ସଂପ୍ରୀତି ଓ ସମ୍ବେଦନ ହିଁ ଜୀବନର ସାକାରାତ୍ମକ ଆଦର୍ଶ ହେବାବେଳେ ଏସବୁର ପ୍ରତ୍ୟାଖ୍ୟାନ ମାନବିକ ଦୃଷ୍ଟିର ପ୍ରତିକୂଳ ମନେହୁଏ ।

ମାନବିକ ଦୃଷ୍ଟି ମୃତ୍ୟୁର ବାସ୍ତବତାକୁ ଗ୍ରହଣ କରିଥାଏ । ଜଣେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେଉଁ ଜୀବନଟିକୁ ବଞ୍ଚେ ତାହା ହିଁ ତାର ଅସଲ ପରିଚୟ ବହନ କରେ । ସେହି ଅବଧିଟି ଭିତରେ ତାର ବ୍ୟକ୍ତିସତ୍ତାଟି ଯେଉଁ ସୃଜନଶୀଳ ସାମର୍ଥ୍ୟର ଅଧିକାରୀ ହୋଇଥାଏ, ବୃହତ୍ତର ପରିସର ସହିତ ଯେଉଁ ସମ୍ପର୍କ ଓ ସମ୍ବନ୍ଧର ଖିଅ ଯୋଡ଼ିଥାଏ, ଜୀବନର ଘଟଣାପ୍ରବାହ ଭିତରେ ମାନସିକ ଦରଦ ବ୍ୟକ୍ତ କରିଥାଏ ତାହା ହିଁ ତାର ଅସଲ ସ୍ୱରୂପର ପରିଚୟ ଦିଏ । ଏକ ସ୍ୱାଧୀନ ଓ ସଚେତନ ବ୍ୟକ୍ତି ମୃତ୍ୟୁକୁ ଜୀବନର ଅନ୍ତିମ ସତ୍ୟ ବୋଲି ଗ୍ରହଣକରି ସୃଜନଶୀଳ ଅବଦାନ, ଅନୁରାଗପୂର୍ଣ୍ଣ ଜୀବନ ଓ ବିଗ୍ରରଶୀଳ ଚିନ୍ତନରେ ବ୍ରତୀ ହୋଇଥାଏ । ଜୀବନ ପ୍ରତି ଏକ ସକାରାତ୍ମକ ଆଭିମୁଖ୍ୟ ରଖିଥାଏ । ମୃତ୍ୟୁକୁ ଅବଶ୍ୟମ୍ଭାବୀ ଭବି ଜୀବନକୁ ଅସ୍ୱୀକାର କରେ ନାହିଁ ।

ସେହିପରି କୌଣସି ବ୍ୟକ୍ତି କେବଳ ନିଜେ ସୁଖରେ ରହିବ ବୋଲି ଭବିବା ଓ ଅନ୍ୟର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ବିତସ୍ପୃହ ରହିବା ଯଥାର୍ଥ ମାନବିକ ଦୃଷ୍ଟିର ପରିଚୟ ଦିଏ ନାହିଁ । ଅନ୍ୟଠାରୁ ପୃଥକ ହୋଇ ଓ ଅନ୍ୟକୁ ବଞ୍ଚିତ କରି ସୁଖ ଭେଗକରିବା କେବେହେଲେ ସଫଳ ଜୀବନର ସ୍ୱାକ୍ଷର ବହନ କରେ ନାହିଁ । ମଣିଷ ଭିତରେ ସୁଖବୋଧ, କ୍ଷମତାଲଭ, ଅର୍ଥ ଓ ଏପରିକି ଜାତୀୟତାବୋଧ ନେଇ ଯେଉଁ ଆବେଗ ରହିଛି ତାହା ସ୍ଥଳ ବିଶେଷରେ ବ୍ୟକ୍ତି ବା ଏକ ସମୂହକୁ ସ୍ୱାର୍ଥପର କରିଥାଏ । ସ୍ୱାର୍ଥପରତା ତୁଳନାରେ ତ୍ୟାଗ ମନୋଭବ, ସମ୍ବେଦନାଶୀଳ ଦୃଷ୍ଟିଭଙ୍ଗୀ, ମମତ୍ୱ-ବୋଧ ଭିତରେ ସଫଳ ଜବନର ପରିଚୟ ମିଳିଥାଏ । ମାନବିକ ଦରଦକୁ ସବୁ ଆବେଗର ମୂଳଉତ୍ସ କରାଯାଇପାରିଲେ ଜୀବନର ଗୁଣାତ୍ମକ ଉତ୍ତରଣ ସମ୍ଭବ ହୋଇଥାଏ ।

ପ୍ରତ୍ୟେକ ବ୍ୟକ୍ତି ନିଜର ଦୁଃଖରେ ଦୁଃଖୀ ହେବା ସ୍ୱାଭାବିକ; କିନ୍ତୁ ଅନ୍ୟର ଦୁଃଖରେ ଦୁଃଖୀ ହେବା ଓ ଅନ୍ୟପ୍ରତି ସହାନୁଭୂତିର ମନୋଭାବ ପ୍ରକାଶ କରିବା ମାନବିକ ଦୃଷ୍ଟିର ପରିଚାୟକ ଅଟେ । ଏହି ମନୋଭାବ ଯେଉଁ ସମାଜରେ ଅଧିକରୁ ଅଧିକ ପ୍ରକାଶ ପାଏ ତାହା ସାମାଜିକ ସମ୍ବନ୍ଧର ଗୁଣାତ୍ମକ ଉତ୍କର୍ଷତାକୁ ସୃଷ୍ଟିଏ ଅଥଚ ଯେଉଁଠି ଅନ୍ୟର ଭଲ ମନ୍ଦ ପ୍ରତି ଏକ ସ୍ପର୍ଶକାତରଶୂନ୍ୟ ମନୋଭାବ ଅଧିକ ପ୍ରକାଶ ପାଏ ତାହା ସାମାଜିକ ଅପକର୍ଷତାର ସୂଚନା ଦିଏ । ମଣିଷ ସ୍ୱଭାବରେ ନିଃସ୍ୱାର୍ଥପର ମନୋଭାବ ଯେପରି ରହିଛି ସ୍ୱାର୍ଥକେନ୍ଦ୍ରିକ ମନୋଭାବ ବା ସ୍ୱାର୍ଥପରତା ସେପରି ରହିଛି । ମଣିଷ ପ୍ରଥମତଃ ଜଣେ ଜୀବନ୍ତ ପ୍ରାଣୀ, ସୁତରାଂ ତାର ଜୈବ ଆବଶ୍ୟକତା ପୂରଣ ହେବା କ୍ଷେତ୍ରରେ ସେ ପ୍ରୟାସୀ ହେବା ସ୍ୱାଭାବିକ । କିନ୍ତୁ ତାର ଆବଶ୍ୟକତା ପୂରଣ ହୋଇସାରିଲା ପରେ ମଧ୍ୟ ସେ ଅନ୍ୟକୁ ଶୋଷଣ କରିବା, ଅନ୍ୟକୁ ବଞ୍ଚିତକରି ନିଜର ସ୍ୱାର୍ଥପାଇଁ ଅନେକ କିଛିକୁ ଜାବୁଡ଼ିବା ପାଇଁ ପ୍ରୟାସୀ ହେବା ସ୍ୱାର୍ଥପରତା ଅଟେ । ଗାନ୍ଧୀଙ୍କ ଭାଷାରେ କହିଲେ ସବୁ ମଣିଷଙ୍କର ଆବଶ୍ୟକତା ପୂରଣ ହେବା ପରି ଅବକାଶ ପ୍ରକୃତିରେ ରହିଛି, ହେଲେ ଜଣେ ମଣିଷର ଲୋଭକୁ ପୂରଣ କରିବାପାଇଁ ପ୍ରକୃତି ମଧ୍ୟ ନିଅଣ୍ଟ ହୋଇପାରେ । ମୋଟ ଉପରେ କହିଲେ ନିଜର ସ୍ୱାର୍ଥ ବଦଳରେ ସାମୂହିକ କଲ୍ୟାଣକୁ ଅଧିକ ଗୁରୁତ୍ୱ ଦେବା ଓ ଦରଦୀଭାବ ପୋଷଣ କରିବା ଦୃଷ୍ଟି ମଣିଷକୁ ମାନବିକତାର ଭୂଷଣରେ ଭୂଷିତ କରିଥାଏ । ଏହି ଭୂଷଣ ମଣିଷକୁ ଉତ୍ତମ ମଣିଷଟିଏ କରିଥାଏ ।

( ୬ )

ବସ୍ତୁତଃ ମାନବିକ ଦୃଷ୍ଟି ଏକ ଜୀବନ ଦର୍ଶନର ସୂଚନା ଦିଏ । ଏହା କୌଣସି ବିଶ୍ୱାସ ବା ସାଂପ୍ରଦାୟିକ ଭାବନାର ପୃଷ୍ଠପୋଷକତା କରେ ନାହିଁ । ଏହା କେତେକ ଆଦର୍ଶ ଓ ଉଚ୍ଚତର ମୂଲ୍ୟବୋଧକୁ ଗ୍ରହଣ କରିଥାଏ ଓ ସେହି ମୂଲ୍ୟ-ବୋଧର ପ୍ରସାର ସମାଜର ଗୁଣାତ୍ମକ ଅଗ୍ରଗତି ପାଇଁ ନିର୍ଣ୍ଣାୟକ ମନେହୁଏ । ବିଶେଷକରି ସାଂପ୍ରତିକ ବିଶ୍ୱରେ ଗଣତାନ୍ତ୍ରିକ ଆଚରଣ, ନାଗରିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ, ମତବ୍ୟକ୍ତ କରିବାର ସ୍ୱାଧୀନତା, ସାମାଜିକ ନ୍ୟାୟ ଇତ୍ୟାଦି ମୂଲଚୟକୁ ସଭ୍ୟ ଜୀବନଧାରାର ଅବିଚ୍ଛେଦ୍ୟ ଅଙ୍ଗ ଭାବରେ ଗ୍ରହଣ କରାଯାଉଛି । ସେହିପରି ବୈଜ୍ଞାନିକ ପ୍ରଣାଳୀକୁ ବସ୍ତୁନିଷ୍ଠ ଜ୍ଞାନ କ୍ଷେତ୍ରରେ ଏକ ନିର୍ଭରଯୋଗ୍ୟ ପଦ୍ଧତି ଭାବରେ ଗ୍ରହଣ କରାଯାଉଛି । ମୁକ୍ତ ଦୃଷ୍ଟିଭଙ୍ଗୀ ଜ୍ଞାନ ରାଜ୍ୟରେ ନୂଆ ଦିଗନ୍ତର ସନ୍ଧାନ ଦେବା ସହିତ ଜ୍ଞାନର ପରିସରକୁ କ୍ରମବର୍ଦ୍ଧିଷ୍ଣୁ ଭାବେ ବ୍ୟାପକ କରିପାରିଛି । ଏହିସବୁ ମୂଲ୍ୟଚୟ ମାନବବାଦୀ ଦୃଷ୍ଟିଭଙ୍ଗୀର ବିକାଶ ଭିତରୁ ଉଦ୍‌ଭୂତ

ହୋଇଛି । ପୁନଶ୍ଚ ଆନ୍ତର୍ଦେଶିକ ତଥା ଆନ୍ତରାଷ୍ଟ୍ରୀୟ ସମ୍ବନ୍ଧ ପୃଷ୍ଠଭୂମିରେ ମାନବବାଦୀ ଜୀବନଦୃଷ୍ଟି ସମସ୍ତ ସମସ୍ୟାକୁ ସମାଧାନ କରିବାପାଇଁ ଆଲୋଚନା, ଶାନ୍ତିପୂର୍ଣ୍ଣ ବୁଝାମଣା ଉପରେ ଗୁରୁତ୍ୱ ଦେଇଥାଏ । ଅନ୍ୟର ମତ ପ୍ରତି ସମ୍ମାନ ପ୍ରଦର୍ଶନ ତଥା ଶାନ୍ତିପୂର୍ଣ୍ଣ ସମାଧାନ ମାନବିକ ଦୃଷ୍ଟିରେ ମହତ୍ତ୍ୱପୂର୍ଣ୍ଣ । ପରନ୍ତୁ ଯେକୌଣସି ପ୍ରକାରର ହିଂସା, ଅସହିଷ୍ଣୁତା ବା ଯୁଦ୍ଧ ମାନବିକ ଜୀବନଦୃଷ୍ଟିର ପ୍ରତିକୂଳ ।

ସେହିପରି ବ୍ୟକ୍ତି ସାମର୍ଥ୍ୟର ପୂର୍ଣ୍ଣାଙ୍ଗ ବିକାଶ ଓ ଉତ୍କର୍ଷ ସାଧନକୁ ମାନବବାଦୀ ଦୃଷ୍ଟିରେ ଅଧିକ ଗୁରୁତ୍ୱ ଦିଆଯାଏ । ମଣିଷ ଭିତରର ଅନ୍ତର୍ନିହିତ ସୃଜନଶକ୍ତିର ଯଥୋଚିତ ବିକାଶକୁ ଏହା ମହତ୍ତ୍ୱ ପ୍ରଦାନ କରିଥାଏ । ପ୍ରତ୍ୟେକ କ୍ଷେତ୍ରରେ ଉତ୍କର୍ଷ ସାଧନପାଇଁ ପ୍ରୟାସଦ୍ୱାରା ମଣିଷ ସୁଖ ଓ ଶାନ୍ତିରେ ଜୀବନକୁ ଉପଭୋଗ କରିପାରିବ । ପ୍ରତ୍ୟେକ ବ୍ୟକ୍ତି କିପରି ଏକ ସମୁଚିତ ଜୀବନ ବଞ୍ଚିପାରିବ ଓ ତାହାର ଅନ୍ତର୍ନିହିତ ସାମର୍ଥ୍ୟକୁ ବିକାଶ କରାଇ ପାରିବ ତାହା ମାନବବାଦୀ ଜୀବନ ଦର୍ଶନର ଆଭିମୁଖ୍ୟ ଅଟେ । ସମାଜର ବୃହତ୍ତର ପରିବେଶରେ ସୁଖ ଶାନ୍ତି ରହିଲେ ବ୍ୟକ୍ତିବିଶେଷ ମଧ୍ୟ ସୁଖରେ ଜୀବନଧାରଣ କରିପାରିବ । ମାନବବାଦୀ ଜୀବନଧାରାରେ ବ୍ୟକ୍ତି ଓ ବ୍ୟଷ୍ଟି ଭିତରେ ସଂହତିପୂର୍ଣ୍ଣ ସମ୍ବନ୍ଧକୁ ଗୁରୁତ୍ୱ ଦିଆଯାଏ ।

ସାଧୁତା, କର୍ତ୍ତବ୍ୟନିଷ୍ଠା, ନୈତିକ ଆଚରଣ, ସାମାଜିକ ଦାୟିତ୍ୱବୋଧ, ସତ୍ୟବାଦିତା ଇତ୍ୟାଦି ମୂଲ୍ୟଚୟ ମାଦବବାଦୀ ଜୀବନ ଦର୍ଶନରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଏସବୁ ମୂଲ୍ୟଚୟ ସାମାଜିକ ବିବର୍ତ୍ତନ ଧାରାରେ ମଣିଷର ଅନୁଭୂତି ମଧ୍ୟ ଦେଇ ସମାଜରେ ବିକାଶଲାଭ କରିଛି । ଯେଉଁ ସମାଜର ସାଧାରଣ ଜୀବନ ପ୍ରବାହରେ ଏହିସବୁ ମୂଲ୍ୟଚୟ ପ୍ରତି ସ୍ୱୀକୃତି ଅଧିକ ଥାଏ ତାହା ଏକ ସଭ୍ୟ ସମାଜ ଭାବରେ ପରିଗଣିତ ହେଲାବେଳେ ଯେଉଁ ସମାଜରେ ଏହି ମୂଲ୍ୟଚୟ ପ୍ରତି ଉଦାସୀନତା ପ୍ରକାଶ ପାଉଥାଏ ତାହା କ୍ଷୟଶୀଳ ମନେହୁଏ । ମାନବବାଦୀ ବିଗ୍ୱରରେ ନୈତିକ ଆଦର୍ଶଚୟ ସାମାଜିକ ଜୀବନଧାରାର ଏକ ଅବିଚ୍ଛେଦ୍ୟ ଓ ସାଂସ୍କୃତିକ ଅଙ୍ଗ କାରଣ ସଂଘବଦ୍ଧ ଜୀବନଧାରାରେ ଆନ୍ତର୍ବକ୍ତିକ ସମ୍ବନ୍ଧର ଆବଶ୍ୟକତାରୁ ସେସବୁର ଉତ୍ପତ୍ତି ହୋଇଥାଏ । ନୈତିକ ଆଦର୍ଶ ଓ ମୂଲ୍ୟଚୟ ପ୍ରତି ଅନୁରକ୍ତି ବାସ୍ତବ ଜୀବନକୁ ସମାଜରେ କିପରି ସୁଖ ସମୃଦ୍ଧମୟ କରିଥାଏ ତାହା ମାନବିକ ଅଭିଜ୍ଞତାରୁ ସ୍ପଷ୍ଟ । କାରଣ ଏହା ଅନୁଭବସିଦ୍ଧ ଯେ ନୈତିକ ମୂଲ୍ୟବୋଧର ପ୍ରଭାବରେ ସାମାଜିକ ଜୀବନରେ ଉତ୍କର୍ଷତା ସାଧିତ ହେଉଥିବା ବେଳେ ସେସବୁର ଅଭାବରେ ସାମାଜିକ ଜୀବନ ବିପର୍ଯ୍ୟସ୍ତ ହେବାର ସମ୍ଭାବନ ଥାଏ ।

ମାନବିକ ଦୃଷ୍ଟି ଜୀବନ ପ୍ରତି ସର୍ବଦା ଏକ ସକାରାତ୍ମକ ମନୋଭାବ ପୋଷଣ କରିଥାଏ । ହସ କାନ୍ଦ, ସଫଳତା ବିଫଳତା, ଆଶା ନିରାଶା ଜୀବନ ସହ

ଅଙ୍ଗାଙ୍ଗୀ ଭବେ ସଂଶ୍ଳିଷ୍ଟ । ପ୍ରତ୍ୟେକ ବ୍ୟକ୍ତି ଜୀବନରେ ନାନା ପରିସ୍ଥିତିର ସମ୍ମୁଖୀନ ହୁଏ । ଜୀବନର କେତେକ ମୁହୂର୍ତ୍ତ ଅତ୍ୟନ୍ତ ସ୍ମରଣୀୟ ଓ ପ୍ରୀତିପଦ ହୋଇଥାଏ, ପୁନଶ୍ଚ ବେଳକେ ଏପରି ପରିସ୍ଥିତି ଆସେ ଯାହା ଜୀବନ ପ୍ରତି ସବୁଠାରୁ ବଡ଼ ଆହ୍ୱାନ ସୃଷ୍ଟି କରିଥାଏ । କେତେକ ଘଟଣା ଜୀବନ ପାଇଁ ପ୍ରେରଣାର ଉତ୍ସ ହୋଇ ରହେ, ପୁନଶ୍ଚ ବେଳକେ ଏପରି ପରିସ୍ଥିତି ଆସେ ଯାହା ନୈରାଶ୍ୟ ଆଣିଥାଏ । ଆଶା ନିରାଶା ଭିତରେ ଆଗକୁ ଯିବାକୁ ଲକ୍ଷ୍ୟ ରଖିବା ଏକ ସୁସ୍ଥ ଦୃଷ୍ଟିକୋଣ ଅଟେ । ପ୍ରତିକୂଳ ସ୍ଥିତିରେ ଆତ୍ମବିଶ୍ୱାସ ଓ ପରିସ୍ଥିତିକୁ ସମ୍ମୁଖୀନ ହେବାପାଇଁ ମନୋବଳ ମଣିଷକୁ ଆଗକୁ ଯିବାରେ ସାହାଯ୍ୟ କରେ । ସୁତରାଂ ଜୀବନରେ ଆଶାବାଦୀ ହେବା ବା ଏକ ସକରାତ୍ମକ ଦୃଷ୍ଟି ରଖିବା ସୁସ୍ଥ ମାନସିକତାର ପରିଚୟ ଦେଇଥାଏ ।

( ୬ )

ସାଂପ୍ରତିକ ଯୁଗରେ ଆନ୍ତର୍ବ୍ୟକ୍ତିକ ସମ୍ବନ୍ଧ ଆନ୍ତର୍ଜାତିକ ସ୍ତରକୁ ପ୍ରସାରିତ ହୋଇପାରିଛି । ମଣିଷର ନୈତିକ ଅଙ୍ଗୀକାରବୋଧ କ୍ଷୁଦ୍ର ପରିସରରୁ ବ୍ୟାପକ ହୋଇ ସମଗ୍ର ମଣିଷ ଜାତି ଓ ଏପରିକି ସମଗ୍ର ଜୀବ ଜଗତ ପ୍ରତି ମଧ୍ୟ ପ୍ରସାରିତ ହେବାରେ ଲଗିଛି । ଏହା ସହିତ ମାନବିକ ସଙ୍କଟ ମଧ୍ୟ ଉତ୍କଟ ହେବାରେ ଲଗିଛି ଓ କେତେକ ସଙ୍କଟ ଜୀବନ ପ୍ରବାହ ପ୍ରତି ଆହ୍ୱାନ ସୃଷ୍ଟି କରିଛି । ମଣିଷର ସୃଜନଶୀଳତା ଭିତରୁ ସବୁ ଯୁଗରେ ସଙ୍କଟର ସମାଧାନ ବାହାରିଛି । ସାଂପ୍ରତିକ ସ୍ଥିତିରେ ମଣିଷ ଜାତି ସାମଗ୍ରିକ ଭବରେ ଯେଉଁ ସବୁ ସଙ୍କଟର ସମ୍ମୁଖୀନ ହେଉଛି ତାର ମୁକାବିଲା ପାଇଁ ମଣିଷର ଚେତନା ଉନ୍ମୁକ୍ତ ରହିଛି । କିନ୍ତୁ ଅତୀତର ସଙ୍କଟ ତୁଳନାରେ ସାଂପ୍ରତିକ ସଙ୍କଟ ଏପରି ଭୟାବହ ଓ ସୁଦୂରପ୍ରସାରୀ ଯେ ତାହା ସାମଗ୍ରିକ ଭବରେ ମଣିଷର ଜୀବନ ଓ ସ୍ଥିତି ପ୍ରତି ବିପଦ ସୃଷ୍ଟି କରିଛି । ସୁତରାଂ ଏହି ପରିସ୍ଥିତିରେ ମାନବବାଦୀ ଜୀବନ ଦୃଷ୍ଟିର ଉପାଦେୟତା ଅବଶ୍ୟମ୍ଭାବୀ ମନେହୁଏ । ମଣିଷର ଜ୍ଞାନ ମଣିଷକୁ ଏପରି ଏକ ବିସ୍ଫୋରଣ ଜନିତ ସ୍ଥିତି ଭିତରକୁ ଅଲକ୍ଷ୍ୟରେ ନେଇ ଚାଲିଛି ଯଦ୍ୱାରା ମାନବବାଦୀ ତଥା ସମ୍ବେଦନଶୀଳ ମନୋଭବର ଗୁରୁତ୍ୱ ଯଥେଷ୍ଟ ବୃଦ୍ଧି ପାଇଛି । ବିଶେଷତଃ ସଂପ୍ରତି ଆମର ପରିବେଶ ଯେପରି ଅସନ୍ତୁଳିତ ହେବାରେ ଲଗିଛି ଓ ପୃଥିବୀର ମାଟି, ପାଣି, ପବନ ପରି ପ୍ରାକୃତିକ ଉପାଦାନ ସବୁ ଯେପରି ବିଷାକ୍ତ ହୋଇପଡୁଛି ତାହା ଭବିଷ୍ୟତର ଜୀବଜଗତ ପ୍ରତି ଆଶଙ୍କା ସୃଷ୍ଟି କରୁଛି । ସୀମିତ ପ୍ରାକୃତିକ ସମ୍ପଦ ସବୁର ଯେପରି କ୍ଷୟ ଚାଲିଛି ତାହା ମଧ୍ୟ ଏକ ଭୀତିପ୍ରଦ ସମ୍ଭାବନା ଉଦ୍ରେକ କରାଉଛି । ସୁତରାଂ

ଏହି ସ୍ଥିତିରେ ପରିବେଶ ଓ ଜୀବଜଗତ ମଧ୍ୟରେ ରହିଥିବା ସମନ୍ୱୟକୁ କିପରି ଅତୁଟ ରଖାଯାଇ ପାରିବ ଓ ପରିବେଶର କ୍ଷତି ସାଧନ କରୁଥିବା ସକଳ ପ୍ରକଳ୍ପକୁ ବାଦ ଦେବାକୁ ହେବ ସେନେଇ ଗଭୀର ସଚେତନତା ଆବଶ୍ୟକ । ବିଶେଷକରି ମଣିଷ, ଜୀବଜଗତ ଓ ପ୍ରକୃତି ମଧ୍ୟରେ ରହିଥିବା ଭରସାମ୍ୟତାକୁ ପ୍ରାଥମିକତା ଦିଆଯାଇ ତାପରେ ବିକାଶର ପରିକଳ୍ପନା କରିବାକୁ ହେବ ।

ସେହିପରି ବୈଜ୍ଞାନିକ ଜ୍ଞାନ କୌଶଳକୁ ମାନବ ସମାଜର କଲ୍ୟାଣ ପାଇଁ କିପରି ପ୍ରୟୋଗ କରାଯିବ ଏବଂ ଏହାର ଅପପ୍ରୟୋଗକୁ ବନ୍ଦ କରାଯିବ ସେଥିପାଇଁ ବିଶେଷ ସଚେତନତା ଆବଶ୍ୟକ । ବିଶେଷକରି ପୃଥିବୀର କୌଣସି ରାଷ୍ଟ୍ର ବୈଜ୍ଞାନିକ ଜ୍ଞାନ କୌଶଳକୁ ଯେପରି ମାନବ ଜାତିର ଅନିଷ୍ଟ ସାଧନ ପାଇଁ ପ୍ରୟୋଗ କରିପାରିବ ନାହିଁ ସେପାଇଁ ଆନ୍ତର୍ଜାତିକ ସହମତି ଆବଶ୍ୟକ । ଅଣୁ ଅସ୍ତ୍ରର ନିର୍ମାଣ, ପରୀକ୍ଷା, ପ୍ରୟୋଗ ବା ପ୍ରସାରକୁ କିପରି ପ୍ରତ୍ୟେକ ରାଷ୍ଟ୍ରରେ ବନ୍ଦ କରାଯିବ ସେନେଇ ମଧ୍ୟ ସମଗ୍ର ପୃଥିବୀରେ ସଚେତନତା ରହିବ ଉଚିତ । ସେହିପରି କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଗ୍ରାସକୁ କିପରି ସୀମିତ ରଖାଯାଇ ପାରିବ ତାହା ମଧ୍ୟ ବିଚାର୍ଯ୍ୟ । ଆଧୁନିକ ଚିକିତ୍ସା ବିଜ୍ଞାନର ବିହିତ ପଦକ୍ଷେପ ସତ୍ତ୍ୱେ ବିକାଶଶୀଳ ରାଷ୍ଟ୍ରମାନଙ୍କର ଜନସଂଖ୍ୟା ଯେପରି ଆଶାତୀତ ଭାବେ ବୃଦ୍ଧି ପାଉଛି ଓ ଏ କ୍ଷେତ୍ରରେ ଧାର୍ମିକ ଓ ସାଂସ୍କୃତିକ ଭାବାବେଗ ଯେପରି ଜନମାନସକୁ ସମୟରେ ବିଭ୍ରାନ୍ତ କରୁଛି ସେ କ୍ଷେତ୍ରରେ ଗଭୀର ଆଲୋଚନା ସହିତ ସୁଚିନ୍ତିତ ପଦକ୍ଷେପ ନେବାର ଜରୁରୀ ଆବଶ୍ୟକତା ରହିଛି । ଉଲ୍ଲିଖିତ ସଙ୍କଟ ପୃଷ୍ଠଭୂମିରେ କିପରି ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ପ୍ରସାରକୁ ତ୍ୱରାନ୍ୱିତ କରାଯାଇ ପାରିବ ତାହ ମଧ୍ୟ ବିଚାର୍ଯ୍ୟ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ କ୍ଷେତ୍ରରେ ଅନୁକୂଳ ସ୍ଥିତି ସୃଷ୍ଟି ହୋଇଛି । ବହୁ ଆନ୍ତର୍ଜାତିକ ସଂଗଠନ, ବିଶ୍ୱ ସଂଘ ଇତ୍ୟାଦି ସାମଗ୍ରିକ ଭାବରେ ମଣିଷ ସମାଜର ସମସ୍ୟାକୁ ଏକ ବୃହତ୍ତର ପରିସରରେ ବିଚାର କରୁଛନ୍ତି । ଅନ୍ତତଃ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ କ୍ଷେତ୍ରରେ ଏକ ମାନସିକତା ବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରୁ ପୃଥିବୀରେ ବିକାଶଲାଭ କରିଛି । ତଥାପି ଧର୍ମ, ରାଷ୍ଟ୍ରୀୟତା, ଜାତି ଇତ୍ୟାଦିକୁ ନେଇ କେତେ କେତେ ଉଗ୍ର ବିଚ୍ଛିନ୍ନତାବାଦୀ ମତବାଦ ବଳବତ୍ତର ରହିଛି । ଏସବୁ ମନୋଭାବ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ଦିଗରେ ବଡ଼ ପ୍ରତିବନ୍ଧକ ହୋଇ ରହିଛି । ସୁତରାଂ ଏହିସବୁ ବାସ୍ତବ ପରିସ୍ଥିତିରେ ଏକ ବିଶ୍ୱ ସମୁଦାୟ (World Community) ଗଠନ କରାଯାଇ ସାର୍ବଜନୀନ ମାନସିକତାର ବିକାଶକୁ କିପରି ତ୍ୱରାନ୍ୱିତ କରିହେବ ସେପାଇଁ ଗଭୀର ବିଚାର-ବିମର୍ଷ ଆବଶ୍ୟକ । ଏକ ବିଶ୍ୱ ସମୁଦାୟ ମଣିଷ ଜାତିର ସାଂସ୍କୃତିକ ଭିନ୍ନତା, ବିଚିତ୍ରତା ଓ ବହୁଳତାକୁ ଗ୍ରହଣକରି ମଧ୍ୟ ମଣିଷ ଜାତିର ଅଭିନ୍ନତାକୁ ସ୍ୱୀକାର

କରିବ । କୌଣସି ଅଞ୍ଚଳର ମଣିଷ ବିଶ୍ୱ ସମୁଦାୟର ସୃଜନାତ୍ମକ ବିକାଶଠାରୁ ବିଚ୍ଛିନ୍ନ ହେବ ନାହିଁ । ପୃଥିବୀରେ ଦେଖାଯାଉଥିବା ସମସ୍ୟା ବା ଗୁରୁତର ସଙ୍କଟଗୁଡ଼ିକ ଏକ ବିଶ୍ୱ ସମୁଦାୟଦ୍ୱାରା ସମାଧାନ ପାଇଁ ସହମତି ରହିଲେ ନୂଆ ଯୁଗର ଅୟମାରମ୍ଭ ହେବ । ଏତଦ୍‌ବ୍ୟତୀତ ହିଂସା, ସନ୍ତ୍ରାସବାଦ ଇତ୍ୟାଦି ମାନବତା-ବିରୋଧୀ କାର୍ଯ୍ୟକଳାପର ବିଲୋପ ହେବା ଦିଗରେ ଅନୁକୂଳ ବାତାବରଣ ସୃଷ୍ଟି ହେବ । ଯେକୌଣସି ମାନବିକ ବା ରାଷ୍ଟ୍ରୀୟ ସମସ୍ୟାକୁ କିପରି ଆଲୋଚନା ଜରିଆରେ ଓ ଶାନ୍ତିପୂର୍ଣ୍ଣ ପଦ୍ଧତିରେ ସମାଧାନ କରିବେ ଏଥିପାଇଁ ବିଶ୍ୱ ଜାତିସଂଘ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇପାରିବ । ବିଗ୍ରହଶୀଳତା, ସହଯୋଗିତା ତଥା ସମ୍ବେଦନଶୀଳତାର ପ୍ରସାର ଦିଗରେ ଜାତିସଂଘ ପରି ଆନ୍ତର୍ଜାତିକ ସଂଗଠନ ସମୂହ ଅଗ୍ରଣୀ ଭୂମିକା ନେଇପାରିବେ । ବିଶ୍ୱମଣ୍ଡଳରେ ଆମ ଗ୍ରହଟିରେ ଏକ ଉନ୍ନତ ସଭ୍ୟତାର ବିକାଶ ହୋଇଛି, ତାହାର ସୁରକ୍ଷା ଓ ଉତ୍କର୍ଷ ଆମର ଏକ ମହାନ ଦାୟିତ୍ୱ । ଏହାକୁ କେତେକ ପ୍ଲାନେଟାରୀ ହ୍ୟୁମାନିଜମ୍ (Plannetary Humanism) କହୁନ୍ତି । ଅର୍ଥାତ ଆମର ମାନବିକ ଉତ୍ତରଦାୟିତ୍ୱ ଆମର ଗ୍ରହ ପ୍ରତି ସଂପ୍ରସାରିତ ହୋଇଯାଇଛି ।

( ୭ )

ଆନ୍ତର୍ଜାତିକ ମନୋଭବ ଓ ସାର୍ବଜନୀନ ଦୃଷ୍ଟିକୋଣର ବିକାଶ ଦିଗରେ କେତେକ ସର୍ବନିମ୍ନ ପଦକ୍ଷେପ ଏଠାରେ ବିଗ୍ରର୍ଯ୍ୟ । ଜାତି, ଧର୍ମ, ଜାତୀୟତାର ପ୍ରଭବ ସତ୍ତ୍ୱେ ପୃଥିବୀର ସମସ୍ତ ଜନଗଣଙ୍କ ପାଇଁ ଏକପ୍ରକାର ସଂହିତା କିପରି ପ୍ରଚଳନ କରାଯାଇ ପାରିବ ସେ ବିଷୟରେ ସହମତି ଆବଶ୍ୟକ । ସାମାଜିକ ନ୍ୟାୟ ଓ ମାନବିକ ଅଧିକାର ପରି ମହତ୍ତର ମୂଲ୍ୟବୋଧର ଆଧାର ଉପରେ ଏକ ଆନ୍ତର୍ଜାତିକ ସଂହିତା ଓ ବିଧିଦ୍ୱାରା ପୃଥିବୀର ସମସ୍ତ ଜନଗଣ ପରିଗ୍ରହିତ ହେଲେ ଏକ ନୂଆ ଯୁଗର ଅୟମାରମ୍ଭ ହେବ । ପୃଥିବୀର ଚିନ୍ତାଶୀଳ ଦାର୍ଶନିକ, ଆଇନଜ୍ଞ, ରାଷ୍ଟ୍ରନୀତିଜ୍ଞ ଓ ମାନବିକ ଅଧିକାରର ପ୍ରବକ୍ତା ଏ କ୍ଷେତ୍ରରେ ପଥ ପ୍ରଦର୍ଶକ ହୋଇପାରିବେ । ସମଗ୍ର ମଣିଷ ଜାତିର ଏକତ୍ୱକୁ ଗୁରୁତ୍ୱ ଦେଇ ଆନ୍ତର୍ଜାତିକ ନୀତି ଓ ବିଧାନକୁ ମାନବିକ ସ୍ପର୍ଶ ଦେଇପାରିବେ । ଏକ ନୂଆ ସାଂସ୍କୃତିକ ପୁନର୍ଜାଗରଣ ଦିଗରେ ଏହା ପଥ ପ୍ରଦର୍ଶକ ହୋଇପାରିବ ।

ଏହି ସମ୍ଭାବନା ହୁଏତ ଏକ ଇଉଟୋପିଆ ପରି ପ୍ରତୀତ ହୋଇପାରେ । ତଥାପି ସାଂପ୍ରତିକ ଯୁଗରେ କଂପ୍ୟୁଟର, ଇଣ୍ଟରନେଟ, ଜେନେଟିକ୍ ଇଞ୍ଜିନିୟରିଂ,

କ୍ଲୋନିଂ ଇତ୍ୟାଦି ଅଭିନବ ଟେକ୍‌ନଲୋଜିମାନ ଯେପରି ବୃଦ୍ଧି ପାଇବାରେ ଲାଗିଛି ତାହା ସମଗ୍ର ବିଶ୍ୱକୁ ଏକ "ସମୁଦାୟ"ରେ ପରିଣତ କରିବାର ଅନୁକୂଳ ପରିବେଶ ଯୋଗାଇଛି । ସୁତରାଂ ଏହି ସ୍ଥିତିରେ ସମଗ୍ର ପୃଥିବୀର ଜନଗଣଙ୍କ ପାଇଁ ଆଚରଣ-ବିଧି ଓ ଦାୟିତ୍ୱବୋଧ କ୍ଷେତ୍ରରେ ସାର୍ବିକ ନୀତି ଓ ବିଧାନ ପ୍ରଣୀତ ହୋଇପାରିବ ।

ସେହିପରି ସାଂସ୍କୃତିକ ଓ ଶୈକ୍ଷିକ କାର୍ଯ୍ୟକ୍ରମ ଜରିଆରେ ସମଗ୍ର ବିଶ୍ୱରେ ମାନବବାଦୀ ଦୃଷ୍ଟିର ପ୍ରସାରପାଇଁ ଆନ୍ତର୍ଜାତିକ କାର୍ଯ୍ୟସୂଚୀ ପ୍ରସ୍ତୁତ କରାଯାଇ ପାରିବ । ପୃଥିବୀର ପ୍ରତ୍ୟେକ ଦେଶରେ ବହୁ ବୁଦ୍ଧିଜୀବୀ, ମାନବଦରଦୀ ତଥା ପ୍ରବୀଣ ଜନନାୟକ ରହିଛନ୍ତି ଯେଉଁମାନେ ମଣିଷଜାତିର ଏକତ୍ୱ ନେଇ ଭାବନ୍ତି ଓ ଏକ ହିଂସା-ଦ୍ୱେଷ-ରହିତ ସୁନ୍ଦର ପୃଥିବୀର ସ୍ୱପ୍ନ ଦେଖନ୍ତି । ଆମ ଜଗତରୁ ସକଳ ଘୃଣା, ଶୋଷଣ ଓ ଅନ୍ୟାୟକୁ ଦୂର କରିବାପାଇଁ ସେମାନେ ନିଜର ପରିସରଟିରେ ବ୍ୟଷ୍ଟି ବା ନ୍ୟୁକ୍ଲିଅସ ହୋଇ କାର୍ଯ୍ୟ କରନ୍ତି । ମାନବିକତାର ସ୍ପର୍ଶରେ ସେମାନେ ସାମାଜିକ ପରିସ୍ଥିତି ଓ ପରିବେଶରେ ଗୁଣାତ୍ମକ ଆନ୍ଦୋଳନ ସୃଷ୍ଟି କରିଥାନ୍ତି । ସେହି ମଣିଷମାନଙ୍କର ସମ୍ମିଳିତ ଓ ସଂଘବଦ୍ଧ ପ୍ରୟାସ ଆମ ସଂସାରର ରୂପରେଖ ଯେ ବଦଳାଇ ପାରିବ ଏହା ଆଶା କରାଯାଇପାରେ । ଅତୀତର ବିଦ୍ୱେଷ ଓ ପ୍ରତିଯୋଗିତା ସ୍ଥାନରେ ସହଯୋଗିତାର ବାତାବରଣ ଅଣାଯାଇପାରିବ । ସହନ-ଶୀଳତା, ବିଚାରଶୀଳ ଦୃଷ୍ଟି ତଥା ଶାନ୍ତିପୂର୍ଣ୍ଣ ସମାଧାନ ପ୍ରତି ଅଙ୍ଗୀକାର ରହିବାଦ୍ୱାରା ଏକ ଅହିଂସ ବିପ୍ଳବର ସୂତ୍ରପାତ ହୋଇପାରିବ । ଯୁଗ ଯୁଗର ହିଂସା ଓ ବିଦ୍ୱେଷ ଦ୍ୱାରା ସମସ୍ୟା ଯେତିକି ଜଟିଳ ହୋଇଛି ଏକ ଅହିଂସାତ୍ମକ ଆଭିମୁଖ୍ୟଦ୍ୱାରା ସମସ୍ୟା ସମାଧାନ କ୍ଷେତ୍ରରେ ବୈପ୍ଳବାତ୍ମକ ସଫଳତା ମିଳିପାରିବ । ଅହିଂସା, ଭ୍ରାତୃତ୍ୱବୋଧ ଓ ସହନଶୀଳତା ମଣିଷର ମାନସିକତାରେ ନୂତନ ଆବେଗ ଓ ସକରାତ୍ମକ ଆଭିମୁଖ୍ୟ ସୃଷ୍ଟି କରିପାରିବ । ବିଶେଷକରି ଶୈକ୍ଷିକ କାର୍ଯ୍ୟକ୍ରମଦ୍ୱାରା ନୂତନ ପୀଢ଼ିର ଜନଗଣଙ୍କ ଭିତରେ ବୈଜ୍ଞାନିକ ଦୃଷ୍ଟିକୋଣ ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ମଣିଷଜାତି ପ୍ରତି ଉତ୍ତରଦାୟୀ ଆଭିମୁଖ୍ୟ ସୃଷ୍ଟି କରିବାପାଇଁ ଯୋଜନାବଦ୍ଧ ଭାବରେ କାର୍ଯ୍ୟକ୍ରମ ଗ୍ରହଣ କଲେ ଏହାର ସୁପରିଣାମ ମିଳିପାରିବ । ନାଗରିକ ଅଧିକାର, ବ୍ୟକ୍ତିମର୍ଯ୍ୟାଦାବୋଧ ଓ ପ୍ରତ୍ୟେକ ବ୍ୟକ୍ତିର ସମୁଚିତ ବିକାଶ ଓ ସୁଖ ସ୍ୱାଚ୍ଛନ୍ଦ୍ୟ ପରି ଆଦର୍ଶଗୁଡ଼ିକୁ କିପରି ସାର୍ବଜନୀନ ଭାବରେ ପ୍ରତ୍ୟେକ ରାଷ୍ଟ୍ରର ସାଂବିଧାନିକ ବ୍ୟବସ୍ଥାରେ ସ୍ୱୀକୃତି ଦିଆଯିବ ଓ ଏହା ସାଧାରଣ ଜୀବନ ପ୍ରବାହରେ ବାସ୍ତବପକ୍ଷେ ପ୍ରତିଫଳିତ ହେବ ସେ କ୍ଷେତ୍ରରେ ଆନ୍ତର୍ଜାତିକ ସ୍ତରରେ ସହମତି, ସଚେତନତା ଓ ବିଚାର ବିମର୍ଷର ଆବଶ୍ୟକତା ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

ମୋଟ ଉପରେ "ମାନବବାଦ" ଏକ ନିରଙ୍କୁଶ ଆଦର୍ଶ ଭାବରେ ସମସ୍ତ ଆଦର୍ଶର ଭିତ୍ତି ହୋଇପାରିବ । ଅବଶ୍ୟ ମଣିଷଜାତି ସବୁ ସମୟରେ ଆହ୍ୱାନ ଓ

ନୂଆ ନୂଆ ପରିସ୍ଥିତିର ସମ୍ମୁଖୀନ ହେଉଥାଏ ଓ ଏକ ମହତ୍ତର ସ୍ଥିତି ପାଇଁ ସ୍ୱପ୍ନ ଦେଖୁଥାଏ । ସେହି ସ୍ୱପ୍ନ ମଣିଷକୁ ଅଭିନିବେଶ ଯୋଗାଏ, ପ୍ରେରଣା ଦିଏ ଯାହାଫଳରେ ସ୍ୱପ୍ନକୁ ସାକାର କରିବାକୁ ସେ ପ୍ରୟାସୀ ହୁଏ । ସେହି ପ୍ରୟାସ ଭିତରୁ ନୂତନ ପନ୍ଥା ଓ ଜୀବନଶକ୍ତି ଆସେ । ଯେକୌଣସି ପରିସ୍ଥିତିର ସମ୍ମୁଖୀନ ହେବାବେଳେ ଏକ ସମ୍ବେଦନଶୀଳ ମାନବିକ ଦୃଷ୍ଟି ଦ୍ୱାରା ପରିଗ୍ରାହିତ ହେଉଥିଲେ ଜୀବନର ଶ୍ରେୟ ପଥରେ ଗୁଣାତ୍ମକ ଉତ୍ତୋରଣ ହେଉଥାଏ । ଏହି ମାନବିକ ଦୃଷ୍ଟିକୁ ଅଗ୍ରଭାଗରେ ରଖି ମଣିଷ ଯଦି ତାର ସମସ୍ତ ଯୋଜନା, ପ୍ରକଳ୍ପ, ଆଭିମୁଖ୍ୟକୁ ରୂପରେଖ ଦେବାକୁ ପ୍ରୟାସୀ ହେବ ତେବେ ଆମ ସଂସାର ଅଧିକ ପ୍ରୀତିମୟ ହୋଇପାରିବ । ମଣିଷର ଅନ୍ତର୍ନିହିତ ସାମର୍ଥ୍ୟ ସାମଗ୍ରିକ ଭାବରେ ମଣିଷଜାତିର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଉତ୍ତରଦାୟୀ ହେବ । ଏହି ଉତ୍ତୋରଣ ମଣିଷକୁ ଅତିମାନବରେ ପରିଣତ କରିପାରିବ । ମାନବିକ ଦୃଷ୍ଟି ସେହି ଉତ୍କର୍ଷ ସାଧନକୁ ସର୍ବଶ୍ରେଷ୍ଠ ଲକ୍ଷ୍ୟ ଭାବରେ ଗ୍ରହଣ କରିଥାଏ ।

